# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**August- 2017**

**୭୪ ଭାଗ ୧ମ ସଂଖ୍ୟା ଶ୍ରାବଣ–ଭାଦ୍ରବ ଅଗଷ୍ଟ – ୨୦୧୭**





ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

**ଅଗଷ୍ଟ-୨୦୧୭**

# ଜାତୀୟ ସଙ୍ଗୀତ



ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

*- ରବୀନ୍ଦ୍ରନାଥ ଠାକୁର*



# ବନ୍ଦେ ମାତରମ୍

ସୁଜଳାମ୍, ସୁଫଳାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋତ୍ସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ॥
ବନ୍ଦେ ମାତରମ୍ ।।।

– ବଙ୍କିମଚନ୍ଦ୍ର ଚାଟାର୍ଜୀ

# ଓଡ଼ିଶାର ଅମର ଶହୀଦ


ଜୟୀ ରାଜଗୁରୁ




ବୀର ସୁରେନ୍ଦ୍ର ସାଏ


ବାଜି ରାଉତ


ଲକ୍ଷ୍ମଣ ନାଏକ




ବିର୍ସା ମୁଣ୍ଡା

# *ସ୍ୱାଧୀନତା ଦିବସ -୨୦୧୭ ଅବସରରେ*
# ଓଡ଼ିଶାର ମାନ୍ୟବର ରାଜ୍ୟପାଳ
# **ଡକ୍ଟର ଏସ୍.ସି. ଜମିର୍‌ଙ୍କ**
# **ବାର୍ତ୍ତା**



ପ୍ରିୟ ଭଉଣୀ ଓ ଭାଇ,

୭୧ତମ ସ୍ୱାଧୀନତା ଦିବସ ଅବସରରେ ଆପଣମାନଙ୍କୁ ମୋର ଆନ୍ତରିକ ସଦିଚ୍ଛା ଓ ଶୁଭକାମନା ଜଣାଉଛି ।

ଆମର ସ୍ୱାଧୀନତା ସଂଗ୍ରାମୀମାନଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଏବଂ ସେମାନେ ସମ୍ମୁଖୀନ ହୋଇଥିବା ଅସରନ୍ତି ଆହ୍ୱାନ ଗର୍ବର ସହିତ ସ୍ମରଣ କରିବା ନିମନ୍ତେ ଏହା ଏକ ସୁଅବସର । ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ବଳିଷ୍ଠ ନେତୃତ୍ୱରେ ଆମ ମାତୃଭୂମିର ସ୍ୱାଧୀନତା ନିମନ୍ତେ ଭାରତର ପ୍ରତି କୋଣ ଅନୁକୋଣରୁ ଅଗଣିତ ନରନାରୀ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ ।

ଏହି ଐତିହାସିକ ଦିବସରେ, ବିଦେଶୀ ଶାସନ କବଳରୁ ଆମ ଦେଶକୁ ମୁକ୍ତି ଦେବାରେ ଅସୀମ ତ୍ୟାଗ ସ୍ୱୀକାର କରିଥିବା ଭାରତର ବିଶିଷ୍ଟ ନେତୃବୃନ୍ଦ ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ମୌଲାନା ଅବୁଲ କଲାମ୍ ଆଜାଦ୍, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ଶହୀଦ୍ ଭଗତ୍ ସିଂ ଏବଂ ଆମର ସମସ୍ତ ଦେଶପ୍ରେମୀମାନଙ୍କୁ ଆମେ ଆମର ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ । ଆମ ରାଜ୍ୟର ସୁଯୋଗ୍ୟ ସନ୍ତାନସନ୍ତତି, ଯାହାଙ୍କର ସ୍ୱାଧୀନତା ସଂଗ୍ରାମରେ ନିଃସ୍ୱାର୍ଥପର ତ୍ୟାଗ ଏବଂ ଅମୂଲ୍ୟ ଅବଦାନ ଆଗାମୀ ପିଢିକୁ ଅନୁପ୍ରାଣିତ କରିବ, ସେମାନଙ୍କର ଅବଦାନକୁ ଆମେ ଆଦୌ ଭୁଲିଯିବା ଉଚିତ୍ ନୁହେଁ । ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, ସହିଦ୍ ଲକ୍ଷ୍ମଣ ନାଏକ, ରଘୁ-ଦିବାକର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳ ଗୌରବ ମଧୁସୂଦନ ଦାସ, ପଣ୍ଡିତ ନୀଳକଂଠ ଦାସ, ଆଚାର୍ଯ୍ୟ ହରିହର, ମା' ରମାଦେବୀ, ଡକ୍ଟର ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକଙ୍କ ପରି ଦେଶପ୍ରେମୀ ଦେଶ ମାତୃକାର ସେବାରେ ସେମାନଙ୍କର ଉତ୍ସର୍ଗୀକୃତ ସେବା ମନୋଭାବ ରଖିଯାଇଛନ୍ତି ।

ଏହି ପବିତ୍ର ଦିବସ ଅବସରରେ, ଆମ ଦେଶର ସୀମା ଓ ସାର୍ବଭୌମତ୍ୱ ସୁରକ୍ଷାରେ ପ୍ରାଣପାତ କରିଥିବା ଆମର ବୀର ସୈନିକମାନଙ୍କୁ ଆମେ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଛୁ । ସେମାନଙ୍କର ଶୋକସନ୍ତପ୍ତ ପରିବାରର ଦୁଃଖଦ ମୁହୂର୍ତ୍ତରେ ଆମର ହୃଦୟ ଆନ୍ଦୋଳିତ । ଦେଶ ସେମାନଙ୍କ ସହିତ ରହିଛି ।

ସ୍ୱାଧୀନତା ପାଇଁ ଭାରତର ସଂଗ୍ରାମର ପୁରୋଭାଗରେ ଓଡ଼ିଶା ରହିଥିଲା । ୧୮୫୭ ବିଦ୍ରୋହର ୪୦ ବର୍ଷ ପୂର୍ବରୁ ଖୋର୍ଦ୍ଧାର ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଏକ ଲୋମହର୍ଷଣକାରୀ ଯୁଦ୍ଧ ହୋଇଥିଲା । ଉକ୍ତ ବୀରତ୍ୱପୂର୍ଣ୍ଣ ବିଦ୍ରୋହ ଯାହାକି, ପାଇକ ବିଦ୍ରୋହ ନାମରେ ଜଣାଶୁଣା, ତାହା ଜନସାଧାରଣଙ୍କର ଅଧିକାର ଏବଂ ସ୍ୱାଧୀନତା ବଜାୟ ରଖିବା ଲକ୍ଷ୍ୟରେ ତୃଣମୂଳ ସ୍ତରରେ ଏକ ସମୂହ ଗଣଆନ୍ଦୋଳନ ଥିଲା ।

ଏହି ଉଲ୍ଲେଖନୀୟ ଘଟଣାର ୨୦୦ବର୍ଷ ପୂର୍ତ୍ତି ଯଥୋଚିତ ଭାବେ ପାଳନ କରିବା ନିମନ୍ତେ ଉକ୍ତ ପାଇକ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ରୂପେ ଘୋଷଣା କରିବା ପାଇଁ ରାଜ୍ୟ ସରକାର କେନ୍ଦ୍ର ସରକାରଙ୍କୁ ସୁପାରିଶ କରିଛନ୍ତି ।

ଏହି ନୂତନ ସହସ୍ରାବ୍ଦୀରେ ଓଡ଼ିଶାର ଅଭିବୃଦ୍ଧି ହେଉଛି ପୁନରୁତ୍‌ଥାନ ଓ ବିକାଶର ଗାଥା ।

ହଜାର ହଜାର ମୂଲ୍ୟବାନ ଜୀବନ ନେଉଥିବା ପ୍ରାକୃତିକ ବିପର୍ଯ୍ୟୟ ପାଇଁ ଜଣାଶୁଣା ରାଜ୍ୟ ଓଡ଼ିଶା, ବିପର୍ଯ୍ୟୟ ପରିଚାଳନାରେ ନିଜକୁ ସୁଦୃଢ଼ କରିପାରିଥିବା ରାଜ୍ୟ ଭାବେ ପରିଗଣିତ ହୋଇପାରିଛି ।

ଜୀବନ ନିର୍ବାହଭିତ୍ତିକ କୃଷିକାର୍ଯ୍ୟ ନିମନ୍ତେ ଜଣାଶୁଣା ଆମ ରାଜ୍ୟ ଓଡ଼ିଶା ଆଜି କୃଷିରେ ଏକ ଅଗ୍ରଣୀ ରାଜ୍ୟଭାବେ ଉଭା ହୋଇଛି । ଆମ ରାଜ୍ୟ ୫ବର୍ଷର ଅବଧି ମଧ୍ୟରେ ରେକର୍ଡ ୪ଥର ପାଇଁ କୃଷିକର୍ମଣ ପୁରସ୍କାର ଲାଭ କରିଛି । ବିଗତ ଦଶନ୍ଧିରେ କୃଷକମାନଙ୍କ ଆୟ ଦ୍ୱିଗୁଣିତ କରିବାରେ ଓଡ଼ିଶା ଏକମାତ୍ର ରାଜ୍ୟ ହୋଇପାରିଛି ।

ନିଜର ଜନସାଧାରଣଙ୍କୁ ଖାଦ୍ୟଶସ୍ୟ ଯୋଗାଇ ଦେବା ପାଇଁ ପଞ୍ଜାବ ଓ ହରିୟାଣା ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ତଥା ଖାଦ୍ୟଶସ୍ୟ ନିଅଣ୍ଟିଆ ରାଜ୍ୟରୁ ଓଡ଼ିଶା ବର୍ତ୍ତମାନ ସାଧାରଣ ବଣ୍ଟନ ବ୍ୟବସ୍ଥା ପ୍ରତି ତୃତୀୟ ସର୍ବାଧିକ ଅବଦାନକାରୀ ରାଜ୍ୟ ଭାବେ ଏବଂ ଦେଶର ଖାଦ୍ୟ ନିରାପତ୍ତାରେ ପ୍ରମୁଖ ଭୂମିକା ନିର୍ବାହ କରିଆସୁଛି ।

ଶିଶୁ ଏବଂ ମାତୃ ମୃତ୍ୟୁହାର କ୍ଷେତ୍ରରେ ଉଦ୍‌ବେଗଜନକ ଚିତ୍ର ଉପସ୍ଥାପିତ କରିଥିବା ଓଡ଼ିଶା ବର୍ତ୍ତମାନ ଶିଶୁ ମୃତ୍ୟୁହାରରେ ସର୍ବୋଚ୍ଚ ହ୍ରାସ ପୂର୍ବକ ଜାତୀୟ ହାରଠାରୁ ନିମ୍ନରେ ଅଛି ।

ସରକାରୀ କର୍ମଚାରୀଙ୍କୁ ଦରମା ଦେବାରେ ସକ୍ଷମ ହେଉନଥିବା ତଥା ଆର୍ଥିକ ଭାବେ ଦୁର୍ବଳ ରାଜ୍ୟରୁ ଓଡ଼ିଶା ଆଜି ଏହାର ଉତ୍କୃଷ୍ଟ ବିତ୍ତ ପରିଚାଳନା ନିମନ୍ତେ ଜଣାଶୁଣା । ବିଗତ ଦଶନ୍ଧିରେ ୮୦ ଲକ୍ଷ ଲୋକ ଦାରିଦ୍ର୍ୟରୁ ମୁକ୍ତି ପାଇବା ସହ ଦାରିଦ୍ର୍ୟ ହାର ୨୪.୬୧ ପ୍ରତିଶତ ହ୍ରାସ ପାଇଛି ।

ଯୋଗାଯୋଗ କ୍ଷେତ୍ରରେ ଏକଦା ପଛୁଆ ଥିବା ରାଜ୍ୟ ଓଡ଼ିଶାର ଅଧୁନା ଦେଶରେ ସର୍ବୋତ୍ତମ ତଥା ବ୍ୟାପକ ସଡକ ସଂଯୋଗୀକରଣ ବ୍ୟବସ୍ଥା ରହିଛି । ଗୋଟିଏ ସମୟରେ ଓଡ଼ିଶାରେ ସ୍କୁଲ ଯାଉନଥିବା ପିଲାଙ୍କ ସଂଖ୍ୟା ୧ ମିଲିୟନ୍‌ରୁ ଉର୍ଦ୍ଧ୍ୱ ଥିଲା । ବର୍ତ୍ତମାନ ଅଧାରୁ ସ୍କୁଲ ଛାଡୁଥିବା ପିଲାଙ୍କ ହାର ୫ ପ୍ରତିଶତରୁ କମ୍ ଅଛି ।

ରାଜ୍ୟର ଶିଳ୍ପାୟନ କ୍ଷେତ୍ରରେ ଓଡ଼ିଶାର ବିଶେଷଭାବେ ପରିଚିତି ନଥିଲା । ବର୍ତ୍ତମାନ ଜନସାଧାରଣଙ୍କ ସ୍ୱାର୍ଥପ୍ରତି ପ୍ରାଥମିକତା ଦେବା ସହ ଏହା ଦେଶର ସର୍ବାଧିକ ଶିଳ୍ପଭିତ୍ତିକ ଅଭିବୃଦ୍ଧି ହାସଲ କରିଥିବା ରାଜ୍ୟମାନଙ୍କ ମଧ୍ୟରୁ ଅନ୍ୟତମ ସାବ୍ୟସ୍ତ ହୋଇପାରିଛି ।

ଆଜି ଓଡ଼ିଶା ଏହାର ସ୍ୱଚ୍ଛତା ଏବଂ ଦୁର୍ନୀତି ବିରୋଧୀ ପଦକ୍ଷେପ ନିମନ୍ତେ ସାରାଦେଶରେ ପରିଚିତ ହୋଇପାରିଛି ।

ବିକାଶ, ପ୍ରଗତି ଏବଂ କଲ୍ୟାଣମୂଳକ କାର୍ଯ୍ୟକ୍ରମକୁ ବ୍ୟାପକ କରି ସମାଜକୁ ପରିବର୍ତ୍ତନ ଦିଗରେ ଆଗେଇ ନେଉଥିବା ୩ଗୋଟି 'ଟି' ଯଥା ଟେକ୍ନୋଲୋଜି (ପ୍ରଯୁକ୍ତିବିଦ୍ୟା), ଟ୍ରାନ୍ସପାରେନ୍ସି (ସ୍ୱଚ୍ଛତା) ଏବଂ ଟିମ୍‌ଓ୍ୱାର୍କ (ଦଳଗତ କାର୍ଯ୍ୟ)ର ପ୍ରୟୋଗ ସହ ଜନସାଧାରଣଙ୍କ ମୌଳିକ ଆବଶ୍ୟକତା ପୂରଣ ଦିଗରେ ଯତ୍ନଶୀଳ ରାଜ୍ୟ ସରକାର ସ୍ୱଚ୍ଛତା, ଉତ୍ତରଦାୟିତ୍ୱ ଏବଂ ସୁଶାସନ ଉପରେ ସର୍ବାଧିକ ଗୁରୁତ୍ୱାରୋପ କରୁଛନ୍ତି ।

ଗ୍ରାମାଞ୍ଚଳର ଗରିବ ଜନସାଧାରଣଙ୍କ ନିମନ୍ତେ ୧୦ ଲକ୍ଷରୁ ଊର୍ଦ୍ଧ୍ୱ ପକ୍କା ଘର ନିର୍ମାଣ ଏବଂ ୪ଲକ୍ଷ ହେକ୍ଟରରୁ ଊର୍ଦ୍ଧ୍ୱ ଅତିରିକ୍ତ ଜଳସେଚିତ ଅଞ୍ଚଳ ସୃଷ୍ଟି ସହ କୃଷକମାନଙ୍କୁ ମାତ୍ର ୧ପ୍ରତିଶତ ସୁଧରେ ଶସ୍ୟଋଣ ଯୋଗାଇ ଦେବାକୁ ରାଜ୍ୟ ସରକାର ଅଧୁନା ଐତିହାସିକ ନିଷ୍ପତ୍ତି ଗ୍ରହଣ କରିଛନ୍ତି । 'ମମତା' ଯୋଜନାରେ ୨୫ଲକ୍ଷରୁ ଊର୍ଦ୍ଧ୍ୱ ମା'ମାନଙ୍କର ସାମିଲ, ଯାହା ଦେଶ ପାଇଁ ଏକ ଉଦାହରଣ, ଆୟ ସୃଷ୍ଟିକାରୀ କାର୍ଯ୍ୟକ୍ରମ ଦ୍ୱାରା ଆର୍ôଥିକ ପ୍ରଗତି ନିମନ୍ତେ ମହିଳା ସ୍ୱୟଂସହାୟକ ଗୋଷ୍ଠୀକୁ ଏକ ପ୍ରତିଶତ ସୁଧହାରରେ ଋଣ ପ୍ରଦାନ, ମାଗଣା ଔଷଧ ଯୋଜନା 'ନିରାମୟ' ଜରିଆରେ ୧.୩ କୋଟିରୁ ଊର୍ଦ୍ଧ୍ୱ ଲୋକଙ୍କ ଅନ୍ତର୍ଭୁକ୍ତି, ସମସ୍ତ ଜିଲ୍ଲା ସଦରମହକୁମା ହସ୍‌ପିଟାଲ୍‌ରେ କ୍ୟାନସର୍ ଚିକିତ୍ସା ସୁବିଧା, ୯ଗୋଟି ସରକାରୀ ମେଡିକାଲ କଲେଜର ମଞ୍ଜୁରୀ, ରାଜ୍ୟରେ ୧୬୦ଗୋଟି 'ଆଦର୍ଶ ବିଦ୍ୟାଳୟ' ପ୍ରତିଷ୍ଠା, ଦେଶରେ ସର୍ବାଧିକ ଆଦିବାସୀ ବାଳିକାମାନଙ୍କୁ ହଷ୍ଟେଲ୍ ରହଣି ସୁବିଧା ପ୍ରଦାନ, ୧୯ ଲକ୍ଷ ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀମାନଙ୍କୁ ୧ହଜାର କୋଟି ଟଙ୍କାର ଛାତ୍ରବୃତ୍ତି ପ୍ରଦାନ, ପିତାମାତାଙ୍କର ଚିନ୍ତା ଦୂର କରିବା ଲକ୍ଷ୍ୟରେ ସେମାନଙ୍କ ପିଲାମାନଙ୍କୁ ଉଚ୍ଚଶିକ୍ଷା ଆହରଣ ନିମନ୍ତେ ୧ ପ୍ରତିଶତ ସୁଧ ହାରରେ ଶିକ୍ଷା ଋଣ ପ୍ରଦାନ ମାଧ୍ୟମରେ ରାଜ୍ୟ ସରକାର ଶିକ୍ଷା, ସ୍ୱାସ୍ଥ୍ୟସେବା ଏବଂ ମହିଳା ସଶକ୍ତିକରଣ କ୍ଷେତ୍ରରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିପାରିଛନ୍ତି ।

ସାମାଜିକ ନିରାପତ୍ତା କ୍ଷେତ୍ରରେ, ମଧୁବାବୁ ପେନ୍‌ସନ୍ ଯୋଜନା ଅଧୀନରେ ୪୩ଲକ୍ଷ ହିତାଧିକାରୀଙ୍କ ଅନ୍ତର୍ଭୁକ୍ତି, ପାଖାପାଖି ୧୯ ଲକ୍ଷ ନିର୍ମାଣ ଶ୍ରମିକଙ୍କ ପଞ୍ଜିକରଣ ଏବଂ ୧୦ ଲକ୍ଷ ଶ୍ରମିକଙ୍କୁ ୪ଶହ କୋଟି ଟଙ୍କାର ସହାୟତା ପ୍ରଦାନ ଏକମାତ୍ର ଅଗ୍ରଣୀ ରାଜ୍ୟ ଭାବେ ଜଙ୍ଗଲ ଅଧିକାର ଅଧିନିୟମ ଅନ୍ତର୍ଗତ ପ୍ରାୟ ୪ଲକ୍ଷ ସତ୍ତ୍ୱାଧିକାର ପ୍ରଦାନ ଏବଂ ୮ଲକ୍ଷ କେନ୍ଦୁପତ୍ର ତୋଳାଳିଙ୍କୁ ବୀମାଭୁକ୍ତ କରିବା ସହ ଶତ ପ୍ରତିଶତ ବୋନସ୍ ପ୍ରଦାନ ରାଜ୍ୟ ସରକାରଙ୍କ ପ୍ରଶଂସନୀୟ ପଦକ୍ଷେପ ।

'ବିଜୁ ସେତୁ' ଯୋଜନାରେ ଯୋଗାଯୋଗ କ୍ଷେତ୍ରରେ ଗୁରୁତ୍ୱବହନ କରୁଥିବା ୫୦୦ ସେତୁ ନିର୍ମାଣ କରାଯାଇଛି ଏବଂ ପଶ୍ଚିମାଞ୍ଚଳ ଓ କେବିକେ ଜିଲ୍ଲାଗୁଡିକୁ ସଂଯୋଗ କରୁଥିବା 'ବିଜୁ ଏକ୍ସପ୍ରେସ୍ ଓ୍ୱେ'ର ନିର୍ମାଣ କାର୍ଯ୍ୟ ଦ୍ରୁତ ଗତିରେ

ଆଗେଇ ଚାଲିଛି । ୨୫ଲକ୍ଷରୁ ଊର୍ଦ୍ଧ୍ୱ ବାସଗୃହକୁ ବିଦ୍ୟୁତ୍ ସଂଯୋଗୀକରଣ ଏବଂ ୫ଶହ ୩୩/୧୧କେଭି ସବ୍‌ଷ୍ଟେସନ୍‌ର ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇ ୭ହଜାରରୁ ଊର୍ଦ୍ଧ୍ୱ ଗ୍ରାମକୁ ବିଦ୍ୟୁତ୍ ସଂଯୋଗୀକରଣ, ସହରାଞ୍ଚଳରେ ହଜାର କିଲୋମିଟରରୁ ଊର୍ଦ୍ଧ୍ୱ କଚ୍ଚା ରାସ୍ତାଗୁଡିକୁ ପକ୍କା ରାସ୍ତାରେ ପରିଣତ, ୧୦ ଲକ୍ଷ ଲୋକଙ୍କୁ ପାନୀୟ ଜଳଯୋଗାଣ ସୁବିଧା ଉପଲବ୍ଧ କରାଉଥିବା ୧୩ଶହ କିଲୋମିଟର ପରିବ୍ୟାପ୍ତ ନୂତନ ପାଇପ୍ ଲାଇନ୍, ଓଡ଼ିଶା ସହରାଞ୍ଚଳ ବାସଗୃହ ନିର୍ମାଣ ଅଭିଯାନ ଜରିଆରେ ସହରାଞ୍ଚଳ ଗରିବ ଲୋକଙ୍କ ପାଇଁ ୬୦ ହଜାର ଗୃହ ନିର୍ମାଣ, ଯୋଗାଯୋଗ, ବିଦ୍ୟୁତିକରଣ ଏବଂ ସହରାଞ୍ଚଳ ଗୃହନିର୍ମାଣ ତଥା ଜଳଯୋଗାଣ କ୍ଷେତ୍ରରେ ରାଜ୍ୟ ସରକାରଙ୍କ କେତେକ ପ୍ରମୁଖ କାର୍ଯ୍ୟକ୍ରମ ।

ଦେଶରେ ଜୀବନ୍ତ ନିର୍ମାଣଜନିତ ପୁଞ୍ଜି ନିବେଶ କ୍ଷେତ୍ରରେ ଆସୋଚାମ୍ (ASSOCHAM) ଦ୍ୱାରା ଏକ ନମ୍ବର ରାଜ୍ୟ ଏବଂ ବିଶ୍ୱବ୍ୟାଙ୍କ୍ ଦ୍ୱାରା ବାଣିଜ୍ୟିକ ସଂସ୍କାର କାର୍ଯ୍ୟକାରୀ କରିବାରେ ଓଡ଼ିଶା ଅଗ୍ରଣୀ ସାବ୍ୟସ୍ତ ହୋଇପାରିଛି । 'ସ୍କିଲ୍‌ଡ ଇନ୍ ଓଡ଼ିଶା' ବ୍ରାଣ୍ଡ୍ ସୃଷ୍ଟି ଉଦ୍ଦେଶ୍ୟରେ ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ ଗଠନ ଏବଂ ଆମର ଦକ୍ଷତା ବିକାଶ ପଦକ୍ଷେପ ସ୍ୱରୂପ ୫ଲକ୍ଷ ଯୁବକଯୁବତୀଙ୍କ ଅନ୍ତର୍ଭୁକ୍ତି ଓ ୧.୫ଲକ୍ଷରୁ ଊର୍ଦ୍ଧ୍ୱ ଯୁବକଯୁବତୀଙ୍କୁ ନିଯୁକ୍ତିଭିତ୍ତିକ ଦକ୍ଷତା ବିକାଶ ପ୍ରଶିକ୍ଷଣ ପ୍ରଦାନ ସହ ଦକ୍ଷତା ବିକାଶ ଏବଂ ନିଯୁକ୍ତି ସୃଷ୍ଟି କ୍ଷେତ୍ରରେ ରାଜ୍ୟ ସରକାର ଉଦ୍ୟମ ଜାରି ରଖିଛନ୍ତି ।

ରାଜ୍ୟ ସରକାର ୯୦ ଦିନର ସ୍ୱଳ୍ପ ସମୟ ଅବଧି ମଧ୍ୟରେ ଭୁବନେଶ୍ୱରସ୍ଥିତ କଳିଙ୍ଗ ଷ୍ଟାଡିୟମ୍‌ଠାରେ ୨୨ତମ ଏସିଆନ୍ ଆଥ୍‌ଲେଟିକ୍ସ ଚମ୍ପିଆନ୍‌ସିପ୍ସ ୨୦୧୭ ସଫଳତାର ସହ ଆୟୋଜନ କରି ବିଶ୍ୱବାସୀଙ୍କ ପ୍ରଶଂସାଭାଜନ ହୋଇପାରିଛନ୍ତି । ଏହି ଅନ୍ତର୍ଜାତୀୟ ଚମ୍ପିଆନ୍‌ସିପ୍ସର ସଫଳତା ଦଳଗତ କାର୍ଯ୍ୟ ଏବଂ ଓଡ଼ିଶାବାସୀଙ୍କ ଅକୁଣ୍ଠ ସହଯୋଗକ୍ରମେ ସମ୍ଭବ ହୋଇପାରିଛି । ଓଡ଼ିଶା–ଏଏଫ୍ଆଇ–ଆଇଏଏଏଫ୍ ହାଇ–ପର୍‌ଫରମାନ୍ସ୍ ଏକାଡେମୀ, ଭୁବନେଶ୍ୱରଠାରେ କଳିଙ୍ଗ ଆନ୍ତର୍ଜାତିକ ସ୍ପୋର୍ଟ୍ସ ସିଟି, କଟକ, ସମ୍ବଲପୁର, ବ୍ରହ୍ମପୁର ଏବଂ ରାଉରକେଲାଠାରେ ସାଟେଲାଇଟ୍ ଷ୍ଟାଡିୟମ୍ ପ୍ରତିଷ୍ଠା ସହ ବିଶ୍ୱ କ୍ରୀଡା ମାନଚିତ୍ରରେ ଓଡ଼ିଶାର ଏକ ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିବାକୁ ରାଜ୍ୟ ସରକାରଙ୍କ ଲକ୍ଷ୍ୟ ଖୁବ୍‌ଶୀଘ୍ର ସାକାର ହୋଇପାରିବ ।

ନିକଟରେ ରାଜ୍ୟ ସରକାର ଅନେକଗୁଡିଏ ଐତିହାସିକ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ରାଜ୍ୟର ୯ଗୋଟି ଜନଜାତି ଅଧ୍ୟୁଷିତ ଜିଲ୍ଲାରେ ଜନଜାତିବର୍ଗଙ୍କ ସାମୂହିକ ବିକାଶ ଲକ୍ଷ୍ୟରେ ରାଜ୍ୟ ସରକାର ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଗଠନ ଦିଗରେ ପଦକ୍ଷେପ ଗ୍ରହଣ କରିଛନ୍ତି । ମ୍ୟୁନିସିପାଲ କାଉନ୍‌ସିଲ୍ ଏବଂ ବିଜ୍ଞାପିତ ଅଞ୍ଚଳ ପରିଷଦରେ ବସବାସ କରୁଥିବା ବସ୍ତିବାସିନ୍ଦାଙ୍କୁ ଭୂମି ଅଧିକାର ପ୍ରଦାନ ଏବଂ ମହାନଗର ନିଗମ ଅଞ୍ଚଳର ବସ୍ତିବାସିନ୍ଦାଙ୍କୁ ସମ୍ପତ୍ତି ଅଧିକାର ପ୍ରଦାନ ନିମନ୍ତେ ରାଜ୍ୟ ସରକାର ଏକ ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କରିଛନ୍ତି ।

ଆଜିର ଏହି ପବିତ୍ର ଦିବସ ଅବସରରେ, ଆସନ୍ତୁ, ଆଗାମୀ କାଲିର ଏକ ସମୃଦ୍ଧ ଓଡ଼ିଶା ତଥା ଦେଶ ଗଠନ ନିମନ୍ତେ ସଂକଳ୍ପବଦ୍ଧ ହେବା ।

**ଜୟ ହିନ୍ଦ୍ ।**

# ସ୍ୱାଧୀନତା ଦିବସ -୨୦୧୭ ଅବସରରେ
# ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀ ନବୀନ ପଟ୍ଟନାୟକଙ୍କ
# ବାର୍ତ୍ତା



ପବିତ୍ର ସ୍ୱାଧୀନତା ଦିବସ ଅବସରରେ ଆପଣମାନଙ୍କୁ ମୋର ଶୁଭେଚ୍ଛା ଜଣାଉଛି ।

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସତ୍ୟ ଓ ଅହିଂସା ଜରିଆରେ ଆମେ ସ୍ୱାଧୀନତା ହାସଲ କରିଥିଲୁ । ଏହି ପବିତ୍ର ଅବସରରେ ମହାତ୍ମା ଗାନ୍ଧୀ, ପଣ୍ଡିତ ନେହେରୁ, ମୌଲାନା ଆଜାଦ, ଡକ୍ଟର ଆମ୍ବେଦକର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ,  ନବକୃଷ୍ଣ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ବୀର ସୁରେନ୍ଦ୍ର ସାଏ, ସହିଦ୍ ଲକ୍ଷ୍ମଣ ନାଏକ, ମା' ରମା ଦେବୀ, ମାଳତୀ ଚୌଧୁରୀ, ଡକ୍ଟର ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ଓ ପାର୍ବତୀ ଗିରିଙ୍କ ପରି ମହାନ୍ ଦେଶଭକ୍ତମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଦେଶ ପାଇଁ ଶହୀଦ୍ ହୋଇଥିବା ଅମର ଜୱାନମାନଙ୍କ ପ୍ରତି ମଧ୍ୟ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଚଳିତ ବର୍ଷ ଆମେ ପାଇକ ବିଦ୍ରୋହର ଦୁଇ ଶହ ବର୍ଷ ପୂର୍ତ୍ତି ପାଳନ କରୁଛୁ । ଏହା ବ୍ରିଟିଶ ବିରୋଧରେ ଆମର ପ୍ରଥମ ସ୍ୱାଧୀନତା ସଂଗ୍ରାମ । ଏହି ଅବସରରେ ମହାନ୍ ସଂଗ୍ରାମୀ ବକ୍ସି ଜଗବନ୍ଧୁ ଏବଂ ଆମର ବୀର ପାଇକମାନଙ୍କ ସ୍ମୃତି ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସ୍ୱାଧୀନତାର ସତୁରୀ ବର୍ଷ ଭିତରେ ଭାରତ ଏକ ଗଣତାନ୍ତ୍ରିକ ଏବଂ ବିକାଶଶୀଳ ଦେଶ ଭାବରେ ସାରା ବିଶ୍ୱରେ ପରିଚୟ ସୃଷ୍ଟି କରିପାରିଛି । ଦେଶର ବିକାଶ ଇତିହାସରେ ଓଡ଼ିଶା ତା'ର ସ୍ଥିତି ମଜବୁତ କରିପାରିଛି ।

ଆମ ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ରମ ଦ୍ୱାରା ଗରିବୀ ଆଜି ୨୫ ପ୍ରତିଶତ କମିଛି । ସାରା ଦେଶରେ ଦାରିଦ୍ର୍ୟତା ହ୍ରାସରେ ଓଡ଼ିଶା ଆଗରେ ରହିଛି । ଏହା ଭାରତ ସରକାରଙ୍କ ନୀତି ଆୟୋଗର ରିପୋର୍ଟ । ଆମ ସରକାରଙ୍କ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ଦ୍ୱାରା ଓଡ଼ିଶାରେ ଆଗାମୀ ପାଞ୍ଚ ବର୍ଷରେ ଗରିବୀ ଆହୁରି ଦ୍ରୁତ ବେଗରେ କମିବ । ୨୦୩୬ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଶହେ ବର୍ଷ ପୂର୍ତ୍ତି ବେଳକୁ ଓଡ଼ିଶାରୁ ଗରିବୀ ସମ୍ପୂର୍ଣ୍ଣ ଭାବରେ ଦୂର ହୋଇପାରିବ । ଏହା ମୋର ପୂର୍ଣ୍ଣ ବିଶ୍ୱାସ ।

ଚାଷ ଆମ ଅର୍ଥନୀତିର ମେରୁଦଣ୍ଡ । ତେଣୁ ଚାଷୀକୁ ତା'ର ହକ୍ ଦେବା ପାଇଁ ଆମ ସରକାର ସବୁବେଳେ ଚାଷୀ ଭାଇ ସାଥିରେ ରହିଛି ଏବଂ ରହିଥିବ ।

ଶିଶୁ ଓ ମାତୃ ମୃତ୍ୟୁହାର, ପୁଷ୍ଟିସାଧନ ଓ ଟିକାକରଣ ପରି ବିଭିନ୍ନ ସାମାଜିକ ସୂଚକାଙ୍କରେ ଆମର ସଫଳତା ବହୁତ ଉତ୍ସାହପ୍ରଦ । ଏସବୁ କ୍ଷେତ୍ରରେ ଜାତୀୟ ହାରଠାରୁ ଆମେ ଭଲ ସ୍ଥିତିରେ ରହିଛୁ । ମିଶନ ଶକ୍ତି କାର୍ଯ୍ୟକ୍ରମ ଆମର ମା'ମାନଙ୍କ ଭିତରେ ଔଦ୍ୟୋଗିକ ଓ ନେତୃତ୍ୱ ନେବା ଦକ୍ଷତାର ବିକାଶ କରିପାରିଛି । ବିପର୍ଯ୍ୟୟ ପରିଚାଳନା ଓ ସାମାଜିକ ନିରାପତ୍ତା କ୍ଷେତ୍ରରେ ଓଡ଼ିଶା ଏକ ମଡେଲ୍ ରାଜ୍ୟ । ସେହିପରି ଭିତ୍ତିଭୂମି ବିକାଶ ଏବଂ ଆମର ବିଭିନ୍ନ ନୀତି ନିର୍ଦ୍ଧାରଣ ଯୋଗୁଁ ରାଜ୍ୟରେ ପୁଞ୍ଜିନିବେଶ ବଢ଼ିଛି ।

ଦକ୍ଷତା ବିକାଶ ଓ ନିଯୁକ୍ତି ସୁଯୋଗର ବ୍ୟାପକତା ସବୁବେଳେ ଆମର ପ୍ରାଥମିକତା ହୋଇ ରହିଆସିଛି । ଗତ ଦୁଇବର୍ଷ ମଧ୍ୟରେ କେବଳ ସରକାରୀ ସ୍ତରରେ ପଚାଶ ହଜାରରୁ ଅଧିକ ନିଯୁକ୍ତି ଦିଆଯାଇଛି । ଗତ ଜୁଲାଇରେ ହୋଇଥିବା ଏସିଆନ୍ ଆଥ୍ଲେଟିକ୍ସ ଚମ୍ପିଆନ୍‌ସିପ୍ସର ସଫଳତା ରାଜ୍ୟରେ କ୍ରୀଡାର ବିକାଶ ପାଇଁ ଅନେକ ସୁଯୋଗ ସୃଷ୍ଟି କରିଛି ।

ଆଦିବାସୀ ଭାଇଭଉଣୀଙ୍କ କଲ୍ୟାଣ ଆମର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ । ଜନଜାତି ବର୍ଗମାନଙ୍କୁ ସେମାନଙ୍କ ବିକାଶରେ ସକ୍ରିୟ ଭାବରେ ଅଂଶଗ୍ରହଣ କରିବା ସୁଯୋଗ ଦେବା ପାଇଁ ୯ଟି ଜନଜାତି ଅଧ୍ୟୁଷିତ ଜିଲ୍ଲାରେ ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଗଠନ କରାଯିବ । ଏହା ଜନଜାତି ବିକାଶ କାର୍ଯ୍ୟକ୍ରମକୁ ଆହୁରି ଆଗେଇ ନେବାରେ ସାହାଯ୍ୟ କରିବ । ସେହିପରି ଗରିବ ଲୋକଙ୍କ କଲ୍ୟାଣ ଆମର ପ୍ରମୁଖତା । ସହରରେ ରହୁଥିବା ବସ୍ତିବାସିନ୍ଦାମାନଙ୍କ କଲ୍ୟାଣ ପାଇଁ ରାଜ୍ୟ ସରକାର ସେମାନଙ୍କୁ ଭୂମି ଅଧିକାର ଓ ସମ୍ପତ୍ତି ଅଧିକାର ଦେବା ପାଇଁ ସ୍ଥିର କରିଛନ୍ତି ।

ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଉନ୍ନତି ପାଇଁ ରାଜ୍ୟ ସରକାର କୋରାପୁଟ ଓ ବାରିପଦାରେ ନୂଆ ସରକାରୀ ମେଡିକାଲ କଲେଜ ଖୋଲିଛନ୍ତି । ଆଗାମୀ ବର୍ଷ ବାଲେଶ୍ୱର ଓ ବଲାଙ୍ଗୀରରେ ସରକାରୀ ମେଡିକାଲ କଲେଜ ଖୋଲାଯିବା ପାଇଁ ପଦକ୍ଷେପ ନିଆଯାଇଛି । ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ରାୟଗଡାର ଆଶାକର୍ମୀ ସୁମିତ୍ରା କରକେରିଆ ଅନ୍ୟମାନଙ୍କ ପାଇଁ ଏକ ଜ୍ୱଳନ୍ତ ଉଦାହରଣ । ସେ ଯେପରି ନିଜେ ରକ୍ତ ଦାନ କରି ଗୋଟିଏ ମା'ର ଜୀବନ ବଞ୍ଚାଇଛନ୍ତି, ସେଥିପାଇଁ ସେ ଆଜି ଅନ୍ୟମାନଙ୍କ ପାଇଁ ଆଦର୍ଶ । ଏହି ସାଧୁ ଉଦ୍ୟମ ପାଇଁ ମୁଁ ତାଙ୍କୁ ଅଭିନନ୍ଦନ ଜଣାଉଛି । ଦୁର୍ନୀତି ବିରୋଧରେ ଶୂନ ସହନଶୀଳତା ଆମ ସରକାରର ଗୁରୁତ୍ୱପୂର୍ଣ୍ଣ ନୀତି । ଏଥିପାଇଁ ଜନସାଧାରଣ ଆମକୁ ସହଯୋଗ କରିଆସିଛନ୍ତି ଏବଂ ଲୋକଙ୍କ ସହଯୋଗ ଜାରି ରହିଲେ ଏହି ସଂଗ୍ରାମ ଆହୁରି ନିଷ୍ପତ୍ତିମୂଳକ ହୋଇପାରିବ ।

ଗରିବ ଲୋକଙ୍କ ଅଧିକାରର ସୁରକ୍ଷା ପାଇଁ ମୋ ସରକାର ପ୍ରତିବଦ୍ଧତାର ସହ କାମ କରୁଛି । ସାଧାରଣ ଲୋକର ସଶକ୍ତିକରଣ ହିଁ ସ୍ୱାଧୀନତାର ସବୁଠାରୁ ବଡ ସଫଳତା । ଏହା ବିକାଶର ଚିତ୍ରକୁ ଆହୁରି ଉଜ୍ଜ୍ୱଳ କରୁଛି । ଆସନ୍ତୁ, ସାଧାରଣ ଲୋକର ସାମାଜିକ, ରାଜନୈତିକ ଏବଂ ଅର୍ଥନୈତିକ ସଶକ୍ତିକରଣ ପାଇଁ ଆମର ଉଦ୍ୟମକୁ ଆହୁରି ଶକ୍ତିଶାଳୀ କରିବା ।

**ଜୟ ହିନ୍ଦ୍ ।**

*ସ୍ୱାଧୀନତା ଦିବସ -୨୦୧୭ ଅବସରରେ*

# ଓଡ଼ିଶାର ମାନ୍ୟବର ଗ୍ରାମ୍ୟ ଉନ୍ନୟନ, ସଂସଦୀୟ ବ୍ୟାପାର ଏବଂ ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ ଶ୍ରୀ ବିକ୍ରମ କେଶରୀ ଆରୁଖଙ୍କ ବାର୍ତ୍ତା



ପବିତ୍ର ସ୍ୱାଧୀନତା ଦିବସ ଅବସରରେ ମୁଁ ଓଡିଶାର ଜନସାଧାରଣଙ୍କୁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ଭାରତବର୍ଷର ସ୍ୱାଧୀନତା ସଂଗ୍ରାମର ଇତିହାସ ଲୁହ ଓ ଲହୁର ଇତିହାସ । ତ୍ୟାଗ ଓ ବଳିଦାନର ଇତିହାସ । ଆମକୁ ସ୍ୱାଧୀନତା ସହଜରେ ମିଳିନାହିଁ । ଏଥିପାଇଁ ଅନେକ ସଂଗ୍ରାମୀଙ୍କୁ ଆତ୍ମ ବିସର୍ଜନ କରିବାକୁ ପଡ଼ିଛି । ଅନେକ ରକ୍ତ ଝରିଛି ଏହି ମାଟିରେ । ଯେଉଁ ମହାନ ଦେଶଭକ୍ତମାନେ ଜାତୀୟ ସଂଗ୍ରାମରେ ସାମିଲ ହୋଇ ନିଜ ଜୀବନକୁ ତିଳ ତିଳ କରି ଦେଶ ଓ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଯାଇଛନ୍ତି, ସେହି ମହାମନୀଷୀମାନଙ୍କୁ ମୁଁ ମୋର ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଉଛି ।

ଆମେ ସମସ୍ତେ ଆମର ଜନ୍ମଭୂମିକୁ ନେଇ ଗର୍ବିତ । ବ୍ରିଟିଶ ଶାସନରୁ ଆମ ଦେଶକୁ ମୁକ୍ତ କରିବା ପାଇଁ ଜାତିର ପିତା ମହାତ୍ମା ଗାନ୍ଧୀ ଯେଉଁ ମାର୍ଗ ବାଛିଥିଲେ, ତାହା ଥିଲା ଭିନ୍ନ ଓ ଅନନ୍ୟ । ଏଥିରେ ତାଙ୍କୁ ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ, ନେତାଜୀ ସୁଭାଷ ବୋଷ, ମୌଲାନା ଆବୁଲ କାଲାମ ଆଜାଦ୍, ଡଃ ଆମ୍ବେଦକର ଏବଂ ଆଉ ଅନେକ ମନୀଷୀଗଣ ସହଯୋଗ କରିଥିଲେ । ଅନେକ ସ୍ୱାଧୀନତା ସଂଗ୍ରାମୀ ଏଥିରେ ପ୍ରାଣବଳି ଦେଇଥିଲେ । ଅନେକ ମଧ୍ୟ ନିର୍ଯାତନା ସହିଥିଲେ । ଏହି ଦୀପ୍ତିମନ୍ତ କ୍ରାନ୍ତିକାରୀ ମୁକ୍ତିଯୋଦ୍ଧାମାନଙ୍କର ଉତ୍ସର୍ଗୀକୃତ ପ୍ରୟାସ, ଅକ୍ଳାନ୍ତ ପରିଶ୍ରମ, ଅସୀମ ତ୍ୟାଗ ଏବଂ ବଳିଦାନ ବଳରେ ପରାଧୀନ ଭାରତବର୍ଷ ସ୍ୱାଧୀନତାର ସୂର୍ଯ୍ୟ ଦେଖିଥିଲା । ସେହି ସଂଗ୍ରାମୀମାନଙ୍କ ଉଦ୍ଦେଶ୍ୟରେ ମୁଁ ମୋର ଆନ୍ତରିକ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସର୍ବଭାରତୀୟ ସ୍ତରରେ ୧୮୫୭ ମସିହାରୁ ସ୍ୱାଧୀନତା ସଂଗ୍ରାମର ସୂତ୍ରପାତ ହୋଇଥିଲା ବେଳେ ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କଲା ପରେ ସେମାନଙ୍କ କବଳରୁ ମୁକ୍ତି ପାଇବା ପାଇଁ ଓଡ଼ିଶାର ଲୋକମାନେ ବିଦ୍ରୋହ କରିଥିଲେ । ଜୟୀ ରାଜଗୁରୁଙ୍କୁ ଭାରତବର୍ଷର ପ୍ରଥମ ଶହୀଦ ଭାବେ ବିବେଚନା କରାଯାଏ । ଖୋର୍ଦ୍ଧା ବିଦ୍ରୋହ ପରେ ୧୮୧୭ ମସିହାରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଇଂରେଜମାନଙ୍କ

ବିରୁଦ୍ଧରେ ହୋଇଥିଲା ପାଇକ ବିଦ୍ରୋହ । ଚଳିତ ବର୍ଷ ଏହି ପାଇକ ବିଦ୍ରୋହର ଦୁଇ ଶହ ବର୍ଷ ପୂର୍ତ୍ତି ଉତ୍ସବ ମହାସମାରୋହରେ ପାଳନ ଅବସରରେ ପାଇକ ବିଦ୍ରୋହକୁ ଦେଶର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଭାବେ ସ୍ୱୀକୃତି ଦେବାକୁ ରାଜ୍ୟ ସରକାର ଦାବୀ କରିଛନ୍ତି । ବୀର ସୁରେନ୍ଦ୍ର ସାଏ, ଲକ୍ଷ୍ମଣ ନାଏକ, ଚାଖୀ ଖୁଣ୍ଟିଆ, ବିର୍ସା ମୁଣ୍ଡା, ରଘୁ-ଦିବାକରଙ୍କ ସ୍ୱାଧୀନତା ସଂଗ୍ରାମ ସମଗ୍ର ଭାରତବର୍ଷକୁ ଅନୁପ୍ରାଣିତ କରିଛି ।

କୁଳବୃଦ୍ଧ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଦାସ, ବିଶ୍ୱନାଥ ଦାଶ, ଡ଼କ୍ଟର ହରେକୃଷ୍ଣ ମହତାବ, ରାଧାନାଥ ରଥ, ରମାଦେବୀ ଓ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକ ପ୍ରମୁଖଙ୍କ ପରି ଓଡ଼ିଶାର ଅନେକ ଦେଶପ୍ରେମୀମାନଙ୍କର ଦେଶର ସ୍ୱାଧୀନତା ସଂଗ୍ରାମ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ରହିଥିଲା । ସେହି ସଂଗ୍ରାମୀମାନଙ୍କର ଅନନ୍ୟ ତ୍ୟାଗ, ସାଧନା ଓ ଶ୍ରମ, ଦେଶପ୍ରୀତି, ବଳିଦାନ ଓ ଆତ୍ମୋତ୍ସର୍ଗ ଆମ ଇତିହାସରେ ଚିରସ୍ମରଣୀୟ ହୋଇରହିଛି । ସେମାନଙ୍କର ନୀତି, ଆଦର୍ଶ ଓ ବ୍ୟକ୍ତିତ୍ୱ ଯୁଗ ଯୁଗ ପାଇଁ ଆମକୁ ଓ ଭବିଷ୍ୟତ ବଂଶଧରମାନଙ୍କୁ ପ୍ରେରଣା ଯୋଗାଉଥିବ । ଯେଉଁମାନଙ୍କ ତ୍ୟାଗ ବଳରେ ଆମେ ସ୍ୱାଧୀନତା ପାଇଛୁ, ଆଜିର ଦିବସରେ ସେମାନଙ୍କର ସ୍ମୃତିଚାରଣ କରିବା ହେବ ସେମାନଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

ଆମ ରାଜ୍ୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱରେ ବିକାଶର ଧାରା ଅବ୍ୟାହତ ରହିଛି । ଆମର ସୌଭାଗ୍ୟ ଯେ, ବିଗତ ପ୍ରାୟ ୧୭ ବର୍ଷ ଧରି ରାଜ୍ୟରେ ଏକ ନିରବଚ୍ଛିନ୍ନ ସ୍ଥିର ଓ ପ୍ରଗତିଶୀଳ ସରକାର ଚାଲିଛି । ଆଜି ପ୍ରଗତି ଆମ ପାଇଁ ପରମ୍ପରାରେ ପରିଣତ ହୋଇଛି । ବିଭିନ୍ନ ଜନହିତକର ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକୁ ସଫଳ ଭାବରେ ରୂପାୟନ କରି ଓଡ଼ିଶାର ଜନସାଧାରଣଙ୍କ ଆଶା ଓ ଆକାଂକ୍ଷା ଆମ ସରକାର ପୂରଣ କରିପାରିଛି । ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଆରମ୍ଭ କରାଯାଇଥିବା ଦାରିଦ୍ର୍ୟ ଦୂରୀକରଣ ଯୋଜନା, କୃଷି ଓ କୃଷକର ବିକାଶ ଏବଂ ବ୍ୟାପକ ଶିଳ୍ପାୟନ ପ୍ରକ୍ରିୟା ଏବଂ ସୂଚନା ଏବଂ ପ୍ରଯୁକ୍ତିବିଦ୍ୟାରେ ଆମ ରାଜ୍ୟର ସାମଗ୍ରିକ ବିକାଶର ଚିତ୍ର ସର୍ବଭାରତୀୟ ସ୍ତରରେ ଆମ ପାଇଁ ଗର୍ବ ଓ ଗୌରବ ଆଣିଛି । ଆମକୁ ଆହୁରି ଆଗକୁ ଯିବାକୁ ପଡ଼ିବ । କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ଶିଳ୍ପ, ଗ୍ରାମ୍ୟ ଉନ୍ନୟନ, ନଗର ଉନ୍ନୟନ, ମହିଳା ଓ ଶିଶୁବିକାଶ, ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ, ଗମନାଗମନ ଆଦି କ୍ଷେତ୍ରରେ ଆମ ରାଜ୍ୟକୁ ଶୀର୍ଷ ସ୍ଥାନରେ ପହଞ୍ଚାଇବା ପାଇଁ ଆଜି ଆମେ ସଂକଳ୍ପ ନେବା ।

ଆସନ୍ତୁ, ଆଜିର ପବିତ୍ର ସ୍ୱାଧୀନତା ଦିବସ ଅବସରରେ ବିକାଶର ନନ୍ଦିଘୋଷକୁ ଆହୁରି ଆଗକୁ ନେଇ ଭାରତବର୍ଷକୁ ସମଗ୍ର ବିଶ୍ୱରେ ପ୍ରତିଷ୍ଠିତ କରି ଆମ ରାଜ୍ୟକୁ ଭାରତର ଏକ ଅଗ୍ରଗଣ୍ୟ ତଥା ସମୃଦ୍ଧ ରାଜ୍ୟରେ ପରିଣତ କରିବା ।

ବନ୍ଦେ ଉତ୍କଳ ଜନନୀ ।

**ଜୟ ହିନ୍ଦ୍ ।**

# ସମ୍ପାଦକୀୟ



ସ୍ୱାଧୀନତା ଦିବସ ଆମକୁ ଅତୀତ ପ୍ରତି ଦୃଷ୍ଟି ଦେଇ ଭବିଷ୍ୟତ ଦିଗରେ ଅଗ୍ରସର ହେବା ନିମନ୍ତେ ଏକ ଅପୂର୍ବ ସୁଯୋଗ ପ୍ରଦାନ କରିଥାଏ । ଭାରତବର୍ଷର ସ୍ୱାଧୀନତା ସଂଗ୍ରାମ ଆମ ପୂର୍ବସୂରୀଙ୍କ ସର୍ବୋଚ୍ଚ ତ୍ୟାଗ ଓ ବଳିଦାନର ଜ୍ୱଳନ୍ତ ନିଦର୍ଶନ । ୭୧ତମ ସ୍ୱାଧୀନତା ଦିବସ ପାଳନ ଅବସରରେ ଭାରତବର୍ଷ ନିମନ୍ତେ ସ୍ୱାଧୀନତା ଆଣିଦେଇଥିବା ଆମର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆମେ ଭକ୍ତିପୂତ ପ୍ରଣାମ ଜଣାଉଛୁ । ଏହି ପବିତ୍ର ଦିବସ ଅବସରରେ ଏକ କୃତଜ୍ଞ ଜାତି ମହାତ୍ମା ଗାନ୍ଧୀ, ପଣ୍ଡିତ ନେହେରୁ, ମୌଲାନା ଆଜାଦ, ଡକ୍ଟର ଆମ୍ବେଦକର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ,  ନବକୃଷ୍ଣ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ବୀର ସୁରେନ୍ଦ୍ର ସାଏ, ସହିଦ୍ ଲକ୍ଷ୍ମଣ ନାଏକ, ମା' ରମା ଦେବୀ,  ମାଳତୀ ଚୌଧୁରୀ, ଡକ୍ଟର ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ଓ ପାର୍ବତୀ ଗିରିଙ୍କ ପରି ମହାନ୍ ଦେଶଭକ୍ତମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଏଥିସହିତ ଦେଶ ମାତୃକାର ସେବାରେ ଶହୀଦ୍ ହୋଇଥିବା ଅମର ଜୱାନମାନଙ୍କ ପ୍ରତି ଆମେ ଆମର ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

ଓଡ଼ିଶା ଆଜି ଗଭୀର ଆତ୍ମବିଶ୍ୱାସ ସହ ଆଗକୁ ବଢୁଛି ।  ବିଭିନ୍ନ ସାମାଜିକ ସୂଚକାଙ୍କରେ ଓଡ଼ିଶା ଅନେକ ବିକଶିତ ରାଜ୍ୟଠାରୁ ଆଗରେ ରହିଛି । ଶିଶୁ ମୃତ୍ୟୁହାର କ୍ଷେତ୍ରରେ ଓଡ଼ିଶା ଜାତୀୟ ହାରଠାରୁ ମଧ୍ୟ ଭଲ କରିଛି । ମହିଳା ସଶକ୍ତିକରଣ ଓ ସାମାଜିକ ସୁରକ୍ଷା କ୍ଷେତ୍ରରେ ଓଡ଼ିଶା ଏକ ଆଦର୍ଶ ରାଜ୍ୟ ହୋଇପାରିଛି ।

ଭିତ୍ତିଭୂମି ବିକାଶ କ୍ଷେତ୍ରରେ ଓଡ଼ିଶା ସାରା ଦେଶରେ ଏକ ଅଗ୍ରଣୀ ରାଜ୍ୟ । ୨୦୦୦ ମସିହାରେ ରାଜ୍ୟରେ ୧୬,୦୦୦ କିଲୋମିଟର ରାସ୍ତା ଥିଲାବେଳେ, ବର୍ତ୍ତମାନ ଏହା ୨୬,୦୦୦ କିଲୋମିଟରରେ ପହଞ୍ଚିଛି । ସଡକ ନିର୍ମାଣ କ୍ଷେତ୍ରରେ ବଜେଟ୍ ପରିମାଣ ୪୦ଗୁଣ ବୃଦ୍ଧି ପାଇଛି । ସବୁ ଜିଲ୍ଲା ସଦରମହକୁମା ରାସ୍ତାକୁ ୪ଲେନ୍ ବିଶିଷ୍ଟ କରାଯାଇଛି । ଗାଁ ଓ ସହର ସବୁଆଡେ ବିକାଶର ଚିହ୍ନ ଆଜି ବାରି ହୋଇପଡୁଛି । ଗ୍ରାମ ସଂଯୋଗୀକରଣ କ୍ଷେତ୍ରରେ କେନ୍ଦ୍ର ସରକାରଙ୍କ ନିକଟରୁ ଓଡ଼ିଶା ପୁରସ୍କୃତ ହୋଇପାରିଛି । ଭିତ୍ତିଭୂମି ବିକାଶ ଆଜି ଲୋକଙ୍କ ଜୀବନଧାରଣ ମାନରେ ଉନ୍ନତି ଆଣିପାରିଛି ।

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦୃଢ ନେତୃତ୍ୱ ଯୋଗୁଁ ନିକଟରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ୨୨ତମ ଏସିଆନ୍ ଆଥଲେଟିକ୍ସ ଚମ୍ପିଆନ୍‌ସିପ୍ସର ଅଭୂତପୂର୍ବ ସଫଳତା ଭାରତୀୟ କ୍ରୀଡା ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବା ସହ ରାଜ୍ୟ ତଥା ଦେଶକୁ ଗୌରବାନ୍ୱିତ କରିପାରିଛି । ଏହା ସହିତ ବିଶ୍ୱ କ୍ରୀଡା ମାନଚିତ୍ରରେ ଓଡ଼ିଶାର ସ୍ଥାନ ଉଜ୍ଜ୍ୱଳ ହୋଇପାରିଛି ।

କୃଷି କ୍ଷେତ୍ରର ସର୍ବାଙ୍ଗୀନ  ବିକାଶ ଉଦ୍ଦେଶ୍ୟରେ ଚଳିତ ୨୦୧୭-୧୮ ବର୍ଷ ପାଇଁ ୧୪୯୩୦ କୋଟି ଟଙ୍କାର ବଜେଟ୍ ବ୍ୟବସ୍ଥା କରାଯାଇଛି । ବିଜୁ କୃଷକ କଲ୍ୟାଣ ଯୋଜନାରେ ବର୍ତ୍ତମାନ  ସୁଦ୍ଧା ରାଜ୍ୟର ୩ ଲକ୍ଷ ୯୧

ହଜାର ୮୩୮ କୃଷକଙ୍କୁ ମୋଟ୍ ୧୯୫.୪୫ କୋଟି ଟଙ୍କାର ସ୍ୱାସ୍ଥ୍ୟ ବୀମା ସୁବିଧା ପ୍ରଦାନ କରାଯାଇଛି । ସ୍ୱଳ୍ପ ସମୟ ମଧ୍ୟରେ ଅଧିକରୁ ଅଧିକ ଚାଷ ଜମିକୁ ପର୍ଯ୍ୟାପ୍ତ ପରିମାଣର ଜଳସେଚନ ସୁବିଧା ଯୋଗାଇ ଦେବା ଉଦ୍ଦେଶ୍ୟରେ ଗଭୀର ନଳକୂପ ଯୋଜନା, ପାର୍ବତୀ ଗିରି ବୃହତ୍ ଉଠା ଜଳସେଚନ ଯୋଜନା, ମୁଖ୍ୟମନ୍ତ୍ରୀ ଆଡ଼ିବନ୍ଧ ଯୋଜନା ଇତ୍ୟାଦି କୃଷକ ହିତୈଷୀ ଯୋଜନା ରାଜ୍ୟରେ କାର୍ଯ୍ୟକାରୀ କରାଯାଇଛି ।

ରାଜ୍ୟବାସୀଙ୍କୁ ଉନ୍ନତମାନର ସ୍ୱାସ୍ଥ୍ୟସେବା ଯୋଗାଇଦେବା ଉଦ୍ଦେଶ୍ୟରେ ୯ଗୋଟି ନୂତନ ମେଡ଼ିକାଲ୍ କଲେଜ ପ୍ରତିଷ୍ଠା ପାଇଁ କାର୍ଯ୍ୟାରମ୍ଭ ହୋଇସାରିଛି । ତନ୍ମଧ୍ୟରୁ ବାରିପଦାସ୍ଥିତ ପଣ୍ଡିତ ରଘୁନାଥ ମୁର୍ମୁ ମେଡ଼ିକାଲ୍ କଲେଜ ଓ ହସ୍‌ପିଟାଲ୍ ଏବଂ କୋରାପୁଟସ୍ଥିତ ଶହୀଦ୍ ଲକ୍ଷ୍ମଣ ନାଏକ ମେଡ଼ିକାଲ୍ କଲେଜ୍ ଓ ହସ୍‌ପିଟାଲ୍‌ରେ ଚଳିତ ଶିକ୍ଷା ବର୍ଷରୁ ଶିକ୍ଷାଦାନ ଆରମ୍ଭ ହୋଇଛି । ଖୁବ୍‌ଶୀଘ୍ର ଅନ୍ୟ ୭ଟି ମେଡ଼ିକାଲ୍ କଲେଜ କାର୍ଯ୍ୟ ସଂପୂର୍ଣ୍ଣ ହେବାକୁ ଯାଉଛି ।

ପାଇକ ବିଦ୍ରୋହର ୨୦୦ ବର୍ଷ ପୂର୍ତ୍ତି ତଥା ବକ୍ସି ଜଗବନ୍ଧୁଙ୍କ ସମ୍ମାନାର୍ଥେ ରାଜ୍ୟ ସରକାର ବକ୍ସି ଜଗବନ୍ଧୁ ନିଶ୍ଚିତ ଜଳଯୋଗାଣ ଯୋଜନା (ବସୁଧା) ଆରମ୍ଭ କରିଛନ୍ତି । ଏହି ଯୋଜନା ଉଭୟ ଗ୍ରାମାଞ୍ଚଳ ଓ ସହରାଞ୍ଚଳବାସୀଙ୍କୁ ପର୍ଯ୍ୟାପ୍ତ ଭାବେ ପାନୀୟ ଜଳ ଯୋଗାଇ ଦେବା ପାଇଁ ଉଦ୍ଦିଷ୍ଟ ।

ଆମର ପାଇକମାନଙ୍କର ସାହସ, ବୀରତ୍ୱ ଓ ଯୁଦ୍ଧ କୌଶଳର ତୁଳନା ନାହିଁ । ୧୮୧୭ରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ପାଇକ ବିଦ୍ରୋହ ଭାରତ ଇତିହାସର ଏକ ସୁବର୍ଣ୍ଣ ଅଧ୍ୟାୟ । ପାଇକ ବିଦ୍ରୋହ ଥିଲା ଓଡ଼ିଆ ଜାତିର ସ୍ୱାଭିମାନର ସ୍ୱର । ଏ ସଂଗ୍ରାମ ଓଡ଼ିଆ ଜାତୀୟତାବାଦ ଓ ଐକ୍ୟର ବାର୍ତ୍ତା ଦେଇଥିଲା । ପାଇକ ବିଦ୍ରୋହ ଭାବେ ଜଣାଶୁଣା ଏହି ପାଇକ ବିପ୍ଳବ ୧୮୫୭ ସିପାହୀ ବିଦ୍ରୋହର ୪୦ ବର୍ଷ ପୂର୍ବରୁ ସଂଗଠିତ ହୋଇଥିଲା । ଜାତି ଓ ବର୍ଣ୍ଣଭିତ୍ତିକ ପ୍ରତିବନ୍ଧକ ସୃଷ୍ଟି କରିଥିବା ବ୍ରିଟିଶ୍ ଇଷ୍ଟ ଇଣ୍ଡିଆ କଂପାନୀର ଦମନମୂଳକ ଶାସନ ବିରୁଦ୍ଧରେ ବାସ୍ତବିକ୍ ଏହା ଏକ ବ୍ୟାପକ, ସୁସଂଗଠିତ ତଥା ଗଣ ଆନ୍ଦୋଳନ ଥିଲା । ପ୍ରତିରୋଧାତ୍ମକ ଏକ ଗଣ ଆନ୍ଦୋଳନକୁ ରୂପ ଦେବାରେ ଏହା ଲକ୍ଷ୍ୟଭିତ୍ତିକ ପ୍ରମୁଖ ଭୂମିକା ନିର୍ବାହ କରିଥିଲା, ଯାହା କି ପରବର୍ତ୍ତୀ ସମୟରେ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ପରିବର୍ତ୍ତିତ ହୋଇଥିଲା । ଏହାର ପ୍ରକୃତିଗତ ତଥା ଚାରିତ୍ରିକ ବୈଶିଷ୍ଟ୍ୟ ଯୋଗୁଁ ବାସ୍ତବ ପକ୍ଷେ ଏହା ପ୍ରଥମ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଥିଲା । ଏପରି ଐତିହାସିକ ସଂଗ୍ରାମର ଗୁରୁତ୍ୱ ଉପଲବ୍ଧି କରି ଓଡିଶା ସରକାରଙ୍କ କ୍ୟାବିନେଟ୍ ଏହି ପାଇକ ବିଦ୍ରୋହକୁ ପ୍ରଥମ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଭାବେ ସ୍ୱୀକୃତି ଦେବା ନିମନ୍ତେ କେନ୍ଦ୍ର ସରକାରଙ୍କୁ ସୁପାରିଶ କରିଛନ୍ତି । ଭାରତ ସରକାର ଏହି ଐତିହାସିକ ଘଟଣାକୁ ସ୍ୱୀକୃତି ପ୍ରଦାନ କରିବା ସହ ଭାରତ ଇତିହାସରେ ଏହାକୁ ଉପଯୁକ୍ତ ସ୍ଥାନ ଦେବା ଉଚିତ । ଏହା ପାଇକ ବିଦ୍ରୋହର ଦୁଇ ଶହ ବର୍ଷ ପୂର୍ତ୍ତି ପାଳନ ପ୍ରତି ଯଥାର୍ଥ ସମ୍ମାନ ହେବ ।

ଆଜି ଆମ ଆଗରେ ଅସଂଖ୍ୟ ଆହ୍ୱାନ । ବ୍ୟକ୍ତିଗତ ତଥା ଗୋଷ୍ଠୀଗତ ସୁବିଧାସୁଯୋଗ ଲାଭର ଊର୍ଦ୍ଧ୍ୱରେ ରହି ପ୍ରତ୍ୟେକ ବ୍ୟକ୍ତି ରାଜ୍ୟ ତଥା ଦେଶର ସର୍ବାଙ୍ଗୀନ ବିକାଶ ଦିଗରେ ଏକାଠି କାର୍ଯ୍ୟ କରିବା ଆଜିର ଆବଶ୍ୟକତା । ସ୍ୱାଧୀନତା ଦିବସ ପାଳନ ଅବସରରେ ଏତିକି ମାତ୍ର ସଂକଳ୍ପ ।

ବନ୍ଦେ ଉତ୍କଳ ଜନନୀ ।

ଜୟ ହିନ୍ଦ୍ ।

ଲେଲିନ୍ ମହାନ୍ତ

ସମ୍ପାଦକ



# ପାଇକ ସଂସ୍କୃତି ଓ ୧୮୧୭ ମସିହାର ପାଇକ ବିଦ୍ରୋହ

ଅଧ୍ୟାପକ ପବିତ୍ର ମୋହନ ବାରିକ

କଳିଙ୍ଗ, ଉତ୍କଳ, ଉଡ୍ର, କଙ୍ଗୋଦ, କୋଶଳ ଆଦି ନାମରେ ପରିଚିତ ଥିବା ଆମର ପ୍ରିୟ ଜନ୍ମଭୂମି ଓଡିଶା ଦିନେ ପାଇକ ସଂପ୍ରଦାୟର ସମର କଳାରେ ନିଜର ପାରଦର୍ଶିତା ପ୍ରଦର୍ଶନ କରି ଆସିଥିଲା । ରାମାୟଣ, ମହାଭାରତ ପରି ଅନ୍ୟାନ୍ୟ ଧାର୍ମିକ ସାହିତ୍ୟରେ ଏହାର ପ୍ରମାଣ କିଛି କମ୍ ଦେଖିବାକୁ ମିଳେ ନାହିଁ । ବ୍ୟୁହ ଓ ମାୟା ରଚନା ଥିଲା ମହାଭାରତ ଯୁଦ୍ଧର ମୁଖ୍ୟ ରଣ କୌଶଳ । ବ୍ୟୁହମାନଙ୍କ ମଧ୍ୟରୁ ଶକଟ ବ୍ୟୁହ ପଦ୍ମବ୍ୟୁହ, ଚକ୍ରବ୍ୟୁହ, ଜଳନ୍ଦର ବ୍ୟୁହ, ଅର୍ଦ୍ଧଚନ୍ଦ୍ର ବ୍ୟୁହ, ସୂଚୀ ଚ୍ୟୁତ, ସେନା ଶୟନ ବ୍ୟୁହ, ଆଦି ଉଲ୍ଲେଖଯୋଗ୍ୟ । ଯୁଦ୍ଧ କ୍ଷେତ୍ରରେ ସୈନ୍ୟ ସଜ୍ଜାକୁ ବ୍ୟୁହ ବୋଲି କୁହାଯାଏ । ମହାଭାରତ ଯୁଦ୍ଧରେ ଶକଟ ବ୍ୟୁହ, ପଦ୍ମବ୍ୟୁହ, ଚକ୍ରବ୍ୟୁହ ଓ ଜଳନ୍ଧର ବ୍ୟୁହ ସଂପର୍କରେ ଉଲ୍ଲେଖ ଅଛି । ଶକଟ ଓ ଜଳନ୍ଧର ବ୍ୟୁହର ସ୍ରଷ୍ଟା କଳିଙ୍ଗର ପାଇକ ବୀରମାନେ । କଳିଙ୍ଗ ରାଜା ମହାଭାରତ ଯୁଦ୍ଧରେ କୌରବମାନଙ୍କର ପକ୍ଷ ସମର୍ଥନ କରି ରଣାଙ୍ଗନରେ ଅବତୀର୍ଣ୍ଣ ହୋଇଥିଲେ । ଗୁରୁ ଦ୍ରୋଣାଚାର୍ଯ୍ୟ କଳିଙ୍ଗ ରାଜାଙ୍କ ପରାମର୍ଶରେ କୁରୁକ୍ଷେତ୍ରରେ ଶକଟ ବ୍ୟୁହ ଓ ଜଳନ୍ଧର ବ୍ୟୁହ ରଚନା କରିବାରେ ସମର୍ଥ ହୋଇଥିଲେ । କଳିଙ୍ଗ ରାଜାଙ୍କ ମୃତ୍ୟୁ ପରେ ମହାଭାରତରେ ଶକଟ ବ୍ୟୁହ ରଚନା ଆଉ ଦେଖିବାକୁ ମିଳେ ନାହିଁ । ଜଳନ୍ଧରୀ ବ୍ୟୁହରେ ପାଇକ ଆକସ୍ମିକ ସ୍ଥାନ ପରିବର୍ତ୍ତନ କରି ଶତ୍ରୁ ନିକଟରେ ଭ୍ରମ ସୃଷ୍ଟି କରିଥାଏ । ମହାଭାରତରୁ ଓଡିଆ ବୀର ପାଇକମାନଙ୍କର ବୀରତ୍ୱ କାହାଣୀ ସ୍ପଷ୍ଟ ପ୍ରମାଣ ମିଳେ ।



ରାମାୟଣରେ ବର୍ଣ୍ଣିତ ପ୍ରଭୁ ଶ୍ରୀ ରାମଚନ୍ଦ୍ର ଭଲ୍ଲୁକ, ବାନର ବନବାସୀମାନଙ୍କ ସହାୟତାରେ ସ୍ୱର୍ଣ୍ଣପୁରୀ ଲଙ୍କାଭୁବନକୁ ବିଜୟ କରିଥିଲେ । ଏହି ଭଲ୍ଲୁକ, ବାନର ବନବାସୀମାନେ ଥିଲେ ଓଡିଶାର ଆଦିବାସୀ ମଗଧ ସମ୍ରାଟ ଦେବାନାଂ ପ୍ରିୟଦର୍ଶୀ ଆଶୋକ ଏମାନଙ୍କୁ ତାଙ୍କ ଓଡିଶାସ୍ଥିତ ଶିଳାଲେଖରେ ଅଟାବିକ ବୋଲି ଉଲ୍ଲେଖ କରିଛନ୍ତି । ରାମାୟଣ ମହାଭାରତ ଗ୍ରନ୍ଥରୁ ପ୍ରମାଣିତ ହୁଏ ପ୍ରାଚୀନ ଓଡିଶାର ସମର କଳା ସମୃଦ୍ଧ, ଅତୀବ ଲୋମହର୍ଷକାରୀ ଓ ଚିତ୍ତାକର୍ଷକ । ସମର କଳାର ଶ୍ରେଷ୍ଠ, ବିଶାରଦ ଥିଲେ ଓଡିଆ ବୀର ପାଇକମାନେ । ପା' ଶିକ୍ଷାରୁ ପାଇକ ଶବ୍ଦର ଉତ୍ପତ୍ତି । ପା' ହେଉଛି ଏକପ୍ରକାର ଯୁଦ୍ଧ କୌଶଳ ବା ଭିନ୍ନ ଧରଣର ଚାଲି ନିର୍ଭୀକ, ଯାହା ଉଡ୍ର ବା କଳିଙ୍ଗ ପାଇକମାନଙ୍କ ନିକଟରେ ବ୍ୟୁହ ରଚନା ସମୟରେ ଏହି ଚାଲିର ଆବଶ୍ୟକତା ରହିଥାଏ । କିଛି ଗବେଷକଙ୍କ ମତରେ ପାଇକ ଶବ୍ଦ ପାଇକଛାରୁ ଉତ୍ପତ୍ତି । ଗଙ୍ଗାରୁ ଗୋଦାବରୀ

ନଦୀ ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ସମୁଦ୍ର ଉପକୂଳ ଶସ୍ୟ ଉତ୍ପନ୍ନ ପାଇଁ ଉପଯୋଗୀ ଥିବାରୁ ଆଦିମାନବ ଏଠାରେ ପ୍ରଥମେ ଶସ୍ୟ ଉତ୍ପାଦନ କରିଥିବାର କୃଷି ବିଜ୍ଞାନୀମାନେ ମତବ୍ୟକ୍ତ କରନ୍ତି । ଏହି ଭୂଖଣ୍ଡ ଉଡ୍ର, କଳିଙ୍ଗ ବା ଉତ୍କଳର ମୁଖ୍ୟ ଜୀବିକା ନିର୍ବାହର ପନ୍ଥା ଥିଲା । କୃଷିର ସୁରକ୍ଷା ପାଇଁ ଯୁଦ୍ଧ କରାଯାଉଥିଲା । ଓଡିଆମାନେ ଲୁଗା କଚ୍ଛା ମାରି ପିନ୍ଧନ୍ତି । କୃଷି କିମ୍ବା ଯୁଦ୍ଧ କାର୍ଯ୍ୟ କରିବା ପାଇଁ ଲୁଗାକୁ ପାଏ ଭାଗ କରି କଚ୍ଛା ମରାଯାଏ, ଯାହାକୁ ପାଇକଚ୍ଛା କୁହାଯାଏ । ଆଜି ମଧ୍ୟ କୃଷକମାନେ ପାଇକଚ୍ଛା ମାରି କୃଷିକାର୍ଯ୍ୟ କରିଥାନ୍ତି । ଉଭୟ ପୁରୁଷ ଓ ନାରୀମାନେ ପାଇକଚ୍ଛା ମାରି ଯୁଦ୍ଧ କରୁଥିବାର ଚିତ୍ର ଭୁବନେଶ୍ୱରସ୍ଥ ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫାମାନଙ୍କରେ ଥିବାର ଦେଖାଯାଏ । ଓଡିଶାର ଅନେକ ପ୍ରାଚୀନ ମନ୍ଦିର ଓ ଦୁର୍ଗମାନଙ୍କରେ ପାଇକଚ୍ଛା ପିନ୍ଧିଥିବା ଯୋଦ୍ଧାମାନଙ୍କର ଚିତ୍ର ଖୋଦିତ ହୋଇଥିବାର ଦେଖାଯାଏ । କେତେକ ବିଦ୍ୱାନ ବ୍ୟକ୍ତି ପାଇକ ଶବ୍ଦ ସଂସ୍କୃତ ପଦାତିକ ଓ ପାର୍ସୀ ପାୟିକ ଶବ୍ଦରୁ ଆନୀତ ବୋଲି ବିଶ୍ୱାସ କରିଥାନ୍ତି । କିନ୍ତୁ ଏହା ନିର୍ଭରଯୋଗ୍ୟ ପ୍ରମାଣ ନୁହେଁ । ପାଇକ ଶବ୍ଦ ଓଡିଆ ଚାଷୀମାନଙ୍କ ମଧ୍ୟରେ ସୁପରିଚିତ । ଏହା ବୀରତ୍ୱ ଓ ନିର୍ଭୀକତାର ଅର୍ଥକୁ ପରିପ୍ରକାଶ କରିଥାଏ । ଆମ ଲୋକକଥାରେ ପ୍ରଚଳିତ ଅଛି – ମାଇପ ଆଗରେ ପାଇକ ଠାଣି ।

ଓଡିଆ ପାଇକମାନେ କେବଳ ପଦାତିକ ନଥିଲେ, ଏମାନେ ଥିଲେ ଚତୁରଙ୍ଗ ସେନା (ପଦାତିକ, ଅଶ୍ୱାରୋହି, ଗଜାରୋହି, ରଥାରୋହି) ସଂସ୍କୃତ ଶବ୍ଦ ପଦାତିକରୁ ପାଇକ ଶବ୍ଦ ସୃଷ୍ଟି ଏହା କହିବା ଠିକ୍ ହେବ ନାହିଁ । ପାଇକ ଏକ ନିର୍ଦ୍ଦିଷ୍ଟ ଜାତି କିମ୍ବା ଧର୍ମ ମଧ୍ୟରେ ଏହା ସୀମିତ ନଥିଲା । ଏହା ଥିଲା ଆତ୍ମ ମର୍ଯ୍ୟାଦା, ସ୍ୱାଭିମାନୀ ଓ ମାଟି ମା' ପାଇଁ ଜୀବନ ଦେବାକୁ ପ୍ରସ୍ତୁତ ଥିବା ସ୍ୱାଧୀନ ଚେତା ବ୍ୟକ୍ତିତ୍ୱ । ବୀରତ୍ୱ, ନିର୍ଭୀକତା ଓ ମାନବିକତା ଥିଲା ଏମାନଙ୍କର ପରିଚୟ ଓ ବ୍ୟକ୍ତିତ୍ୱ । ପାଇକମାନେ ଜାତିର ସୁରକ୍ଷା ଓ ସମୃଦ୍ଧିର ଦାୟିତ୍ୱ ବହନ କରିଥିଲେ । ପାଇକ ସେନା ପରି ଶତ୍ରୁ ସହିତ ଯୁଦ୍ଧ କରୁଥିଲା, କୃଷି କ୍ଷେତ୍ରରେ ଶସ୍ୟ ଉତ୍ପାଦନ କରୁଥିଲା, ସମୁଦ୍ର ବକ୍ଷରେ ବୋଇତ ବାହି ଅନ୍ୟ ଦେଶରେ ବାଣିଜ୍ୟ, ବ୍ୟବସାୟରେ ସଂଶ୍ଳିଷ୍ଟ ଥିଲା । ଏହାର ପ୍ରମାଣ ଗୋପୀନାଥ ଦାସ ବିରଚିତ ଖୁଦୁରୁକୁଣୀ ଓଷା ଓ ଭିକାରୀ ଧୀବରଙ୍କ ଖୁଲଣା ସୁନ୍ଦରୀ ପୁସ୍ତକରେ ମିଳିଥାଏ । ଅନ୍ୟ ଦେଶର ଶାସନରେ ମଧ୍ୟ ଏମାନେ କୃତିତ୍ୱ ବିସ୍ତାର କରିଥିଲେ ଏବଂ ବିଶ୍ୱରେ ପ୍ରଥମ ଉପନିବେଶ ପ୍ରତିଷ୍ଠା କରିଥିବା ଜାତି ଭାବରେ ଆମ୍ଭମାନଙ୍କ ପାଇଁ ଗୌରବ ଆଣି ଦେଇଛନ୍ତି । କୃଷି ଓ ଯୁଦ୍ଧରେ ଜାତି ଭେଦ ନଥିବାରୁ ସମସ୍ତେ ଏକାକାର ହୋଇ ମାଟି ମା' ପାଇଁ ଲଢ଼େଇ କରୁଥିଲେ । କଳିଙ୍ଗର ସାମ୍ରାଜ୍ୟବାଦୀ ସମ୍ରାଟ ମହାମେଘବାହନ ଐର ଖାରବେଳଙ୍କ ପୂର୍ବରୁ ଏ ମାଟିରେ ପାଇକ ସଂସ୍କୃତି ଜନ୍ମଲାଭ କରିସାରିଥିଲା । କଳିଙ୍ଗ ଯୁଦ୍ଧରେ ଅଶୋକଙ୍କ ସୈନ୍ୟଙ୍କ ଦୃଢ଼ ପ୍ରତିରୋଧ କରିଥିଲେ । ଆଟବିକ ସୈନ୍ୟ ବା ଆଦିବାସୀ ସଂପ୍ରଦାୟୀ ଏହି ଅଞ୍ଚଳର ଆଦିବାସୀ ପାଇକ ସେନାର ଏକ ପ୍ରମୁଖ ଅଂଶ ଥିଲେ । ପାଇକ ଅର୍ଥ କେବଳ ଯୁଦ୍ଧରେ ସଂପୃକ୍ତି ରହୁଥିବା ବ୍ୟକ୍ତିମାନଙ୍କୁ ନୁହେଁ ସମସ୍ତ ନାଗରିକମାନଙ୍କୁ ବୁଝାଇଥାଏ । ଏମାନଙ୍କୁ ବିଭିନ୍ନ ଉପାଧି ପ୍ରଦାନ କରାଯାଉଥିଲା । ଅନୁଗୁଳ ରାଜାଙ୍କ ଅଙ୍ଗରକ୍ଷୀ ଭାବେ ନିଯୁକ୍ତି ପାଇଥିବା ୫ ହଜାର ପାଇକମାନଙ୍କ ମଧ୍ୟରୁ ଅଧିକାଂଶ ପାଣ ଓ କେଉଟ ସଂପ୍ରଦାୟର ଥିଲେ । ରାଜା କେଉଟମାନଙ୍କୁ ସଂଗ୍ରାମ ସିଂ, ଖଣ୍ଡା ସିଂ, ଇନ୍ଦ୍ରଜିତ ଓ ପାଣ ପାଇକମାନଙ୍କୁ ବୀର ବାହୁବଳେନ୍ଦ୍ର, ଜୟସିଂ, ବଳିୟାରସିଂ, ପାଲଟା ସିଂ, ଶତ୍ରୁଦଳନ ସିଂ, ମହାମାନସିଂ ପ୍ରଭୃତି ଉପାଧି ପ୍ରଦାନ କରିଥିଲେ । ଓଡିଶାର ଅଧିକାଂଶ ଅଞ୍ଚଳରେ କେଉଟ, ବେହେରା ଓ ପାଣ ଜାତିର ବ୍ୟକ୍ତିମାନେ ବସତି ସ୍ଥାପନ କରୁଛନ୍ତି ଓ ଏମାନେ ପାଇକ ସେନାରେ ପ୍ରମୁଖ ଭୂମିକା ଗ୍ରହଣ କରି ଆସିଥିଲେ । ଯୁଦ୍ଧର ମୁଖ୍ୟ ସମର କଳା ଥିଲା ପା' ବା ଚାଲି । ଏହି ଚାଲିରେ ସୁଦକ୍ଷ ଥିଲେ ପାଣ ଜାତିର ବ୍ୟକ୍ତିବିଶେଷମାନେ । ପାଣ ଜାତିର ବ୍ୟକ୍ତିମାନଙ୍କ ନିକଟରେ ପାଇକ ସୁଲଭ ଗୁଣାବଳୀ ଏବେ ମଧ୍ୟ ଦେଖାଯାଏ । ଗ୍ରାମର ସୁରକ୍ଷା ଦୃଷ୍ଟିରୁ ଏହି ଯୁଦ୍ଧ ପ୍ରିୟ ଜାତି ଗ୍ରାମର ଶେଷ ଭାଗରେ ବାସ କରିଥାନ୍ତି । ଗ୍ରାମର ନିରାପତ୍ତା ଦାୟିତ୍ୱ ବହନ କରିଆସିଥାନ୍ତି । ବେହେରା ଜାତି ବାଡି ଖେଳରେ ସୁନିପୁଣ । ବାଡିଖେଳ ପାଇକମାନଙ୍କ ରଣ କୌଶଳର ଏକ ଅଂଶବିଶେଷ । କେଉଟ ସଂପ୍ରଦାୟର ବ୍ୟକ୍ତିମାନେ ନୌଚାଳନାରେ ଥିଲେ ସିଦ୍ଧହସ୍ତ । ଏମାନେ କଳିଙ୍ଗର ସାଧବ ପୁଅମାନଙ୍କୁ କଳିଙ୍ଗସାଗରରେ ୧୬ଶ ଶତାବ୍ଦୀ

ପର୍ଯ୍ୟନ୍ତ ସୁରକ୍ଷା ପ୍ରଦାନ କରିଆସୁଥିଲେ । ଏହି ତିନିଜାତି ବ୍ୟତୀତ ଅନ୍ୟ ଏକ ଜାତି ଖଣ୍ଡାୟତ ପାଇକ ସେନାରେ ଗୁରୁ ଦାୟିତ୍ୱ ବହନ କରି ଆସୁଥିଲେ । ଖଣ୍ଡାୟତ କହିଲେ କେବଳ ଖଣ୍ଡା ଧାରଣ କରୁଥିବା ବା ପୂଜା କରୁଥିବା ବ୍ୟକ୍ତିମାନଙ୍କୁ ବୁଝାଏ ନାହିଁ ଏବଂ ରାଜାଙ୍କଦ୍ୱାରା ପ୍ରଦତ୍ତ ଖଣ୍ଡ ବା ଅଞ୍ଚଳର ସୁରକ୍ଷା ପ୍ରଦାନ କରୁଥିବା ବ୍ୟକ୍ତିଙ୍କୁ ହିଁ ବୁଝାଏ । ଖ୍ରୀଷ୍ଟପୂର୍ବ ଶତାବ୍ଦୀରୁ ଓଡିଶାରେ ପାଇକ ସେନା ତାଙ୍କ ବୀରତ୍ୱର ପାରାକାଷ୍ଠା ପ୍ରଦର୍ଶନ କରିଥିଲେ ।

ସୋମବଂଶ ଗଙ୍ଗ ବଂଶ ଶାସନ ପରେ ସୂର୍ଯ୍ୟ ବଂଶର ଶାସନ ସମୟରେ ପାଇକମାନେ ଅଧିକ ସଂଗଠିତ ହୋଇପାରିଥିଲେ, ପ୍ରଶାସନିକ ଓ ସାଂଗଠନିକ ଦୃଷ୍ଟିକୋଣରୁ ମଧ୍ୟଯୁଗୀୟ ଆକବରଙ୍କ ରାଜ ଦରବାରର ପ୍ରଖ୍ୟାତ ବିଦ୍ୱାନ ଆବୁଲ ଫାଜଲ ତାଙ୍କ ବିଖ୍ୟାତ ଗ୍ରନ୍ଥ ଆଇନ–ଇ–ଆକବରୀରେ ତିନି ପ୍ରକାର ପାଇକମାନଙ୍କର କଥା ଉଲ୍ଲେଖ କରାଯାଇଅଛି । ପ୍ରଥମ ଭାଗ ପାଇକମାନେ ରାଜ୍ୟରେ ଜଗୁଆଳୀ ବା ପ୍ରହରୀ ରୂପେ କାର୍ଯ୍ୟ କରୁଥିଲେ । ଦ୍ୱିତୀୟ ଭାଗ ପାଇକମାନଙ୍କୁ ବାଣୁଆ କୁହାଯାଉଥିଲା । ବାଣୁଆ ପାଇକମାନେ ରଣକ୍ଷେତ୍ରରେ ଏକ ପ୍ରକାର ମୁଖା ପରିଧାନ କରୁଥିଲେ । ଏମାନେ ଚାଷ ଓ ଅନ୍ୟ ରାଜ୍ୟ ସହ ଯୁଦ୍ଧ ଅଭିଯାନରେ ଯୋଗଦାନ କରିବା ମୁଖ୍ୟ କାର୍ଯ୍ୟ ଥିଲା । ତୃତୀୟ ଶ୍ରେଣୀୟ ପାଇକମାନଙ୍କୁ ଢ଼େଙ୍କିଆ ପାଇକ କୁହାଯାଉଥିଲା । ଏହି ଶ୍ରେଣୀର ପାଇକମାନେ କୃଷି, ଯୁଦ୍ଧ ଓ ନୌବାଣିଜ୍ୟ ସହ ସଂପୃକ୍ତ ଥିଲେ । ଆବୁଲ–ଫାଜଲଙ୍କ ପୁସ୍ତକରୁ ଯାହା ସୂଚନା ମିଳେ କଟକରେ ୧ ଲକ୍ଷ ୫ ହଜାର ପାଇକ ଅବସ୍ଥାନ କରୁଥିଲେ । ଇଂରେଜ ପ୍ରଶାସକ ହଣ୍ଟର ସାହେବ ଉଲ୍ଲେଖ କରିଛନ୍ତି – ଗଜପତିଙ୍କ ସୈନ୍ୟ ବାହିନୀରେ ୫୦,୦୦୦ ନିୟମିତ ସୈନ୍ୟ, ୧୦ ହଜାର ଘୋଡା, ୨,୫୦୦ ହାତୀ ଥିଲେ । ଦିଗମ୍ବର ଶ୍ରୀଚନ୍ଦନ ସ୍ୱରଚିତ ପୁସ୍ତକ ଖୁରୁଧା ଦର୍ପଣରେ ଉଲ୍ଲେଖ କରିଛନ୍ତି ଇଂରେଜମାନେ ଓଡିଶା ଅଧିକାର କରିବା ପୂର୍ବରୁ ଖୋରଧାର ସୈନ୍ୟ ବିଭାଗରେ ୧୧୦ ଦଳ ବେହେରା ୯୪୪ ଦଳେଇ ୮ ହଜାର ପାଇକ ୮୪୦ ଅଶ୍ୱାରୋହି ୪ ଜଣ ସର୍ଦ୍ଦାର ଥିଲେ । ଇତିହାସରୁ ଜଣାଯାଏ, ପ୍ରତ୍ୟେକ ଅଞ୍ଚଳରେ ଗୋଟିଏ ଗୋଟିଏ ପାଇକ ପୀଢ଼ ବା ପାଇକ ଜୋନ ଥିଲା । ପ୍ରତ୍ୟେକ ପୀଢ଼ରେ ଜଣେ–ଜଣେ ମୁଖ୍ୟ ରହିଲେ ସେମାନେ ଦଳବେହେରା ନାମରେ ନାମିତ ଥିଲେ । ପାଇକ ସେନାରେ ବକ୍ସି ବା ପ୍ରଧାନ ସେନାପତିଙ୍କ ପରେ ଦଳବେହେରାମାନଙ୍କର ସ୍ଥାନ ନିରୂପିତ ଥିଲା । ତାଳଚେର, ଅନୁଗୁଳ, ଆଠମଲ୍ଲିକ ଅଞ୍ଚଳରେ ଦଳବେହେରାମାନେ ଗଡନାୟକ ନାମରେ ପରିଚିତ । ସମ୍ବଲପୁର, ବଲାଙ୍ଗୀର, କଳାହାଣ୍ଡି ପ୍ରଭୃତି ପଶ୍ଚିମ ଓଡିଶାର ଅଞ୍ଚଳରେ ଏମାନେ ଗୌନ୍ତିଆ ନାମରେ ପରିଚିତ ଥିଲେ । ଦଶପଲ୍ଲା, ବୌଦ୍ଧ, ନୟାଗଡ ଆଦି ଅଞ୍ଚଳରେ ଏମାନେ ଗଡତିଆ ନାମରେ କଥିତ । ଅନେକ ଦୁର୍ଗକୁ ଭିତ୍ତି କରି ଗଜପତି ରାଜାମାନେ ପାଇକମାନଙ୍କୁ ଦୁର୍ଗାଧିପତି ଓ ଗଡପତିମାନଙ୍କୁ ସେନାପତି, ଚମ୍ପତି, ରାଉତରାୟ, ସାହାଣି, ଦଣ୍ଡପାଟ, ଦଣ୍ଡସେନା, ପଶ୍ଚିମ କବାଟ, ଉତ୍ତର କବାଟ, ଦକ୍ଷିଣ କବାଟ, ପାହାଡ ସିଂ, ଉଦଣ୍ଡରାୟ, ଡିଆଁବାଘ, ବାହୁବଳେନ୍ଦ୍ର ଇତ୍ୟାଦି ଉପାଧିରେ ଭୂଷିତ କରୁଥିଲେ । ଚତୁରଙ୍ଗ ସେନାରେ ମଙ୍ଗରାଜ–ନୌବାହିନୀ, ପାଟଶାଣୀ– ଗଜ ବାହିନୀ, ମହାରଥି–ରଥ ବାହିନୀ, ରାଉତରାୟ–ଅଶ୍ୱବାହିନୀ ଦାୟିତ୍ୱରେ ଥିଲେ । ଅନ୍ୟ ପଦବୀଧାରି ବ୍ୟକ୍ତିମାନେ ପଦାତିକ ବାହିନୀରେ ଅନ୍ତର୍ଭୁକ୍ତ ଥିଲେ । ସମଗ୍ର ଓଡିଶାରେ ବିଭିନ୍ନ ପାଇକ ପୀଢ଼ି ରହିଥିଲା । ସେଠାରେ ମଧ ଗୋଟିଏ ଗୋଟିଏ ଦୁର୍ଗ ଥିଲା । ପାଇକମାନଙ୍କର ତାଲିମ୍ ପାଇଁ ମଧ ବ୍ୟବସ୍ଥା କରାଯାଇଥିଲା । ପାଇକମାନଙ୍କର ତାଲିମ କେନ୍ଦ୍ରକୁ କୁହାଗଲା ପାଇକ ଆଖଡା । ପ୍ରତ୍ୟେକ ଗ୍ରାମରେ ଗୋଟିଏ 'ଖେଟୈକ୍ୟ' ଗୃହ ଥିବା ଆଖଡା ନିର୍ମାଣ କରାଯାଉଥିଲା । ଏହା ଥିଲା ଦୁଇ ପ୍ରକାର । ପ୍ରଥମ ପ୍ରକାର ଖେଟୈକ୍ୟ ଗୃହରେ ନିୟମିତ ଶାରୀରିକ କ୍ରୀଡା ଓ ଓଜନଦାର ଭାରୋତ୍ତଳନ କରାଯାଉଥିଲା ସମସ୍ତ ଶାରୀରିକ ଶିକ୍ଷା ଓ ବ୍ୟାୟାମ ଅଭ୍ୟାସ କରାଯାଉଥିଲା । ଅନ୍ୟ ଏକ ଖେଟୈକ୍ୟ ଗୃହରେ ଗ୍ରାମ ଦେବତୀ କିମ୍ବା ମହାବୀର (ହନୁମାନ) ଙ୍କର ବିଗ୍ରହ ସ୍ଥାପନ କରି ପାଇକମାନେ ସେଠାରେ ଯୁଦ୍ଧ ବିଦ୍ୟା ତଥା ମନ୍ତ୍ର ବିଦ୍ୟା ଶିକ୍ଷାଲାଭ କରୁଥିଲେ । ଗଜପତି ରାଜତ୍ୱ ସମୟରେ ଚାଟ ବା ସାମୟିକ ସେନା ଏବଂ ଭାଟ ବା ସ୍ଥାୟୀ ସେନା ନାମରେ ଦୁଇଟି ସାମରିକ ସଂଗଠନ ଥିଲା । ସ୍ଥାୟୀ ସୈନ୍ୟମାନେ ରାଜକୋଷରୁ ନିୟମିତ ବେତନ ପାଉଥିଲେ । ଗ୍ରାମମାନଙ୍କରେ ଥିବା ଅନ୍ୟ ଏକ ସୈନ୍ୟ ଦଳ ଯୁଦ୍ଧ ବିଦ୍ୟା





ଶିକ୍ଷାଲାଭ କରିଥାନ୍ତି ଓ ଆବଶ୍ୟକ ପଡିଲେ ଅସ୍ତ୍ରଶସ୍ତ୍ର ସହ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହୁଅନ୍ତି । ଏଥିପାଇଁ ସେମାନେ ରାଜାଙ୍କଠାରୁ ନିଷ୍କର ଜମି ଜାଗିରି ପାଇଥିଲେ । ନିଜ ଦୁର୍ଗପତି, ଗଜପତି କିମ୍ବା ଦଳବେହେରାଙ୍କଠାରୁ ନିର୍ଦ୍ଦେଶ ପାଇଲେ ସେମାନେ ଯୁଦ୍ଧକୁ ଆଗେଇ ଆସୁଥିଲେ । ପାଇକ ସଂଗ୍ରହ ସମୟରେ ପରିବାରର ମୁଖ୍ୟଙ୍କ ଅନୁମତି ଗ୍ରହଣ କରାଯାଉଥିଲା । ଗୋଟିଏ ପୁଅ ଥିଲେ ଯୁଦ୍ଧ ପାଇଁ ବାଧ୍ୟ କରାଯାଉନଥିଲା । ପିତା କିମ୍ବା ମାତା ମୃତ୍ୟୁବରଣ କରିବାର ଏକ ବର୍ଷ ପୂରଣ ହୋଇନଥିଲେ ବଡ ଭାଇ ମଧ୍ୟ ଯୁଦ୍ଧ ପାଇଁ ଅଯୋଗ୍ୟ ବିବେଚିତ ହେଉଥିଲା । ବିବାହର ତିନି ବର୍ଷ ପୂରଣ ହୋଇ ନଥିଲେ ଯୁବକ ଯୁଦ୍ଧ ପାଇଁ ଅଯୋଗ୍ୟ ବିବେଚିତ ହେଉଥିଲା । ଯୁବକମାନେ ଯୁଦ୍ଧକୁ ଯିବା ସମୟରେ ପିତା ଓ ବଡ ପୁଅର ଅନୁମତି ନେଉଥିଲେ ।

ବଡ ପୁଅ ଯୁଦ୍ଧକୁ ଗଲେ ମାତାର ଅନୁମତି, ସାନ ଭାଇ ଯୁଦ୍ଧକୁ ଯିବା ସମୟରେ ବଡ ଭାଉଜଙ୍କ ଅନୁମତି ନେବା ସହିତ ଭାଉଜଙ୍କ ଦ୍ୱାରା ପ୍ରସ୍ତୁତ ପ୍ରିୟ ଖାଦ୍ୟ ବିଶେଷ କରି ଲେଉଟା ଚକୁଳି ପିଠା ଖାଇବାର ବ୍ୟବସ୍ଥା ଥିଲା । ଚକୁଳି ପିଠା ଖାଇ ଯାତ୍ରା କଲେ ସର୍ବ ସୁଖରେ ଫେରିବାର ଦୃଢ଼ ବିଶ୍ୱାସ ଥିଲା । କହ୍ନେଇ ଚମ୍ପତିରାୟଙ୍କ ବିରଚିତ ସୁପ୍ରସିଦ୍ଧ ପୁସ୍ତକ 'ପାଇକଖେଦା' ରେ କେଉଁମାନଙ୍କୁ ପାଇକ ସେନାରେ ଗ୍ରହଣ କରାଯିବ ତାହା ଉଲ୍ଲେଖ ଅଛି । ବ୍ରାହ୍ମଣ, ପଣ୍ଡା ଭୀମ ପରିବାର ହେଲେ ମଧ୍ୟ ପାଇକ ହେବା ପାଇଁ ଅଯୋଗ୍ୟ । ଛାମୁକରଣ, ବଇଠିକରଣ, ଦେଉଳକରଣ, ପାଞ୍ଜିଆକରଣ, କୋଠକରଣ ପାଇକ ହୋଇପାରିବେ ନାହିଁ । କହ୍ନେଇ ଚମ୍ପତି ରାୟଙ୍କ ଭାଷାରେ –

ବ୍ରାହ୍ମଣ, ପଣ୍ଡା, ଆବର ଶାସନି
ଭୀମ ସମ ବୀର ହେଉ ପାଇକେ ନ ଘେନ
ଅରଜୁନ ସମ ଲକ୍ଷ୍ୟ ତା' ହାତରେ ଥିବ
ଜୁହାର କରିଣ କାନ୍ଧୁ ହୋଦା ଉତାରିବ ।

କରଣ ଜାତି ଯୁଦ୍ଧରେ ଅଂଶ ଗ୍ରହଣ କରୁ ନଥିଲେ । କିନ୍ତୁ ଛୋପରା କରଣ ଓ ପଟ୍ଟନାୟକ ପ୍ରଭୃତି କର୍ମଚାରୀ ଯୁଦ୍ଧର ଶୃଙ୍ଖଳା ଓ ଯୁଦ୍ଧରେ ପାଇକମାନଙ୍କର ଦକ୍ଷତା ଅନୁଧ୍ୟାନ କରି ଦଣ୍ଡ କିମ୍ବା ପୁରସ୍କାର ନିମନ୍ତେ ରାଜାଙ୍କ ନିକଟରେ ମତବ୍ୟକ୍ତ କରୁଥିଲେ । ପାଇକ ଏକ ନିର୍ଦ୍ଦିଷ୍ଟ କୌଣସି ଏକ ଜାତିର ନଥିଲେ । ସବୁ ବର୍ଗର ବ୍ୟକ୍ତି ପାଇକ ସେନାରେ ନିଯୁକ୍ତ ପାଉଥିଲେ । କହ୍ନେଇ ଚମ୍ପତିରାୟ ପାଇକ ଖେଦାରେ ଉଲ୍ଲେଖ କରିଛନ୍ତି– କୁଳୀନ ହେଉ କିମ୍ବା ନ ହେଉ ପାଇକ ହେବା ପାଇଁ ହେଲେ ଭୋଇ ମୂଳଙ୍କର ଆଦେଶ ଏକାନ୍ତ ଆବଶ୍ୟକ । ତେଣୁ କବିଙ୍କ ଭାଷାରେ –

ଅଛବ ହୋଇଲେ ମଧ୍ୟ ନଥିବ ବିଚାର
ମାତରକ ଭୋଇମୂଳ ଆଦେଶ ହିଁ ସାର ।

ବୟସଭିତ୍ତିରେ ପାଇକମାନଙ୍କୁ ନିଯୁକ୍ତି ମିଳୁଥିଲା । ୨୫ ବର୍ଷ ବୟସରେ ପଦାତିକ, ୩୦ ବର୍ଷ ବୟସରେ ବିହ୍ୱଯୁଦ୍ଧ, ୪୦ ବର୍ଷ ବୟସରେ ରଥାରୋହି, ୪୦ ବର୍ଷ ବୟସରୁ ଉର୍ଦ୍ଧ୍ୱ ବ୍ୟକ୍ତିଙ୍କୁ ଦୁର୍ଗରକ୍ଷୀ ଓ ତହିଁରୁ ଅଧିକ ବୟସର ବ୍ୟକ୍ତିମାନଙ୍କୁ ଗ୍ରାମରକ୍ଷୀ ରୂପେ ନିଯୁକ୍ତି ମିଳିଥାଏ । ଯୁଦ୍ଧକୁ ଯିବାର ସମ୍ବାଦ ପାଇବା ପରେ ପାଇକ ଅସ୍ତ୍ରଶସ୍ତ୍ର ନିକଟକୁ ଯିବା ନିଷେଧ ।

ଯୁଦ୍ଧକୁ ଯିବାର ପୂର୍ବଦିନ ପାଇକ ଚୁଆ ଓ ହଳଦି ଲଗାଇ ଅଡୁଠରେ ସ୍ନାନ କରି ଗ୍ରାମ ଦେବତୀ ଓ ଅନ୍ୟାନ୍ୟ ଦେବାଦେବୀଙ୍କୁ ପୂଜା କରି ଘରକୁ ଫେରେ । ମା' କିମ୍ବା ମାଉସୀ ପୁଅକୁ ହଳଦିରେ ଧୋଇଥାନ୍ତି ଓ ସ୍ତ୍ରୀ ଅଠର ଗୋଟି ଦୁବ ବାନ୍ଧି ବ୍ରତ ଡୋରରେ ଚଣ୍ଡିଙ୍କ ନାମ ଧରି ଅଠର ଗଣ୍ଠି ପକାଇ ବ୍ରତକୁ ଫୁଲ, ଚନ୍ଦନ, ଅଠର ଗୋଟି ମଣ୍ଡା ଓ ଚକୁଳି ପିଠାରେ ପୂଜା କରୁଥିଲେ । ଗୁରୁଜନମାନଙ୍କୁ ସମ୍ମାନ ପ୍ରଦାନ ଓ ପୁରୋହିତଙ୍କ ଆଶୀର୍ବାଦ ଗ୍ରହଣ କରିବା ପରେ ପାଇକ ବ୍ରତ ଧାରଣ କରୁଥିଲେ । ଏହା ପରେ ଅସ୍ତ୍ରଶସ୍ତ୍ରଗୁଡିକ ଧୋଇ, ସିନ୍ଦୂର, କଜ୍ଜ୍ୱଳ, ପାରିଜାତ , ବେଲପତ୍ରରେ ପୂଜା କରି ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରି ଦହିଭାତ ଭୋଜନ କରୁଥିଲେ । ତୃତୀୟା, ତ୍ରୟୋଦଶୀ ତିଥି, ପୁଷ୍ୟା ହସ୍ତୀ, ମୃଗଶିରା ନକ୍ଷତ୍ରେ ଯୁଦ୍ଧ ଯାତ୍ରା ପାଇଁ ଶୁଭଦାୟକ । ଗଜପତିଙ୍କ ସର୍ବୋଚ୍ଚ ସେନାଦକ୍ଷ ବାହିନୀପତି ପାଇକ ସଂଗ୍ରହ ପାଇଁ ଗଡକୁ ଆଦେଶ ଦେଉଥିଲେ । ଭୋଇ ମୂଳ ଗ୍ରାମର ଗଡମାନଙ୍କରୁ ତାଲିମପ୍ରାପ୍ତ ଯୁବକମାନଙ୍କୁ ଆର୍ଥିକ ସାହାଯ୍ୟ ଓ ଚିହ୍ନ ପ୍ରଦାନ କରି ପାଇକ ସଂଗ୍ରହ କରୁଥିଲେ । ଭୋଇ ମୂଳ ନିର୍ବାଚିତ ପାଇକ ଯଦି ଯୁଦ୍ଧକୁ ଯିବା ପାଇଁ ଅନିଚ୍ଛା ପ୍ରକାଶ କରେ ପାଲଟା ସିଂହ ପଦବୀଧାରୀ ବ୍ୟକ୍ତି ଉକ୍ତ ପାଇକକୁ





ମାଡ ମାରି ଗଡରେ ପହଞ୍ଚାଉଥିଲେ । ଭୋଇ ମୂଳ ନିଜ ଦ୍ୱାରା ନିର୍ବାଚିତ ପାଇକଙ୍କୁ ୨୭ଜଣରେ ଗୋଟିଏ ଦଳ ଗଠନକରି ଗଡଠାରେ ପାଇକରାୟଙ୍କ ଅଧୀନରେ ଦେଉଥିଲେ । ଗ୍ରାମମାନଙ୍କରୁ ପାଇକମାନେ ପାଇକରାୟଙ୍କ ପାଖରେ ପହଞ୍ଚିବା ଦିନଠାରୁ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ତାଙ୍କ ନିର୍ଦ୍ଦେଶରେ ଚାଳିତ ହେଉଥିଲେ । ଗଡନାୟକ, ପାଇକରାୟ ଓ ଗ୍ରାମମାନଙ୍କରୁ ସଂଗୃହିତ ପାଇକମାନେ ଗଜପତି ମହାରାଜାଙ୍କ ସେନା ଦକ୍ଷ ବାହିନୀପତିଙ୍କ ଶିବିରରେ ଏକତ୍ରିତ ହେଉଥିଲେ । ଯୁଦ୍ଧ ସମୟରେ ପ୍ରତି ୫ ଦଳ (୨୭ X ୫୧୩୫) ବା ୧୩୫ ଜଣ ପାଇକଙ୍କ ପାଇଁ ଜଣେ ବୈଦ୍ୟ, ୬ଜଣ ପାଚକ, ୧୨ ଜଣ ବାରିକ, ଯୋଗାଡିଆ ୩ଟି ବଳଦ ଗାଡି, ଧ୍ୱଜାଧାରି ୩ଜଣ ଓ ବୋଝିଆ ୨୭ ଜଣକୁ ନେଇ ଗୋଟିଏ ଦଳ ଗଠିତ ହେଉଥିଲା । ୧ ଦଳ ୨୭ ଜଣ ପାଇକ, ୭୦ ଦଳ – ୧ ଭିଆଣ । ଏକ ଭିଆଣ ପାଇକଙ୍କ ପାଇଁ ୮୦ ଜଣ ଗଡ ନାୟକ ନିଯୁକ୍ତି ହେଉଥିଲେ । ଗଡନାୟକମାନେ ସହକାରୀ ସେନାପତି ହେଲେ ମଧ୍ୟ ସେବକର ଭୂମିକା ଗ୍ରହଣ କରିଥାନ୍ତି । ପାଇକମାନଙ୍କ ପାଇଁ ଖାଦ୍ୟ ଯୋଗାଣ, ସ୍ୱାସ୍ଥ୍ୟ ସଂପର୍କରେ ବୁଝୁଥିଲେ ଓ ପାଇମାନଙ୍କ ଘରକୁ ସମ୍ବାଦ ପ୍ରେରଣର ଦାୟିତ୍ୱ ନେଉଥିଲେ । ଭୋଇ ମୂଳ ସୈନ୍ୟ ନିର୍ବାଚନ କରି ପାଇକମାନଙ୍କୁ ପାଇକରାୟଙ୍କ ଅଧୀନରେ ଦେଉଥିଲେ । ପାଇକମାନେ ଆଦେଶ ଅମାନ୍ୟ କଲେ ପାଇକରାୟ ସେମାନଙ୍କୁ କାର୍ଯ୍ୟରୁ ବହିଷ୍କାର କରି 'ହରିକାଠ' ପ୍ରଦାନ କରୁଥିଲେ । ହରିକାଠର ଅର୍ଥ ହେଲା ଜେଲ ଦଣ୍ଡ ବୁଝାଉଥିଲା । କୌଣସି ସେନାପତି ବିଶ୍ୱାସଘାତକ କଲେ ତା'ର ବଂଶକୁ ହରିକାଠ ଓ ସେନାପତିକୁ ଶୂଳିରେ ବସାଯାଉଥିଲା । କୌଣସି ନିର୍ଦ୍ଦିଷ୍ଟ ଆଦେଶ ଉଲଙ୍ଘନ କଲେ ବିଶିଷ୍ଟ କର୍ମଚାରୀଙ୍କୁ କାର୍ଯ୍ୟରୁ ବହିଷ୍କାର କରାଯାଇ ସେମାନଙ୍କ ମୁଖକୁ ବିଭିନ୍ନ ପ୍ରକାର ରଙ୍ଗରେ ସ୍ଥାୟୀ ଚିତ୍ର କରାଯାଇ ସେମାନଙ୍କୁ ଛାଡି ଦିଆଯାଉଥିଲା । ଏମାନେ ଦେଶର କୁତ୍ସିତ ବ୍ୟକ୍ତି ବୋଲି ବିବେଚିତ ହେଉଥିଲେ । ଓଡିଆ ପାଇକମାନଙ୍କର ବେଶ–ପୋଷାକ ଓ ଯୁଦ୍ଧାସ୍ତ୍ରର ସର୍ବ ପ୍ରଥମ ପ୍ରାଚୀନତା ରୂପ ଦେଖିବାକୁ ମିଳେ । ଭୁବନେଶ୍ୱରସ୍ଥ ଉଦୟ ଗିରିର ରାଣୀ ଗୁମ୍ଫାରେ ଖୋଦିତ ଚିତ୍ର ଏହାର ପ୍ରମାଣ । ପାଇକମାନଙ୍କର ପୋଷାକ ସଂପର୍କରେ ବିଭିନ୍ନ ପ୍ରାଚୀନ ସାହିତ୍ୟ, ବିଭିନ୍ନ ମନ୍ଦିରରେ ଖୋଦିତ ଯୁଦ୍ଧରତ ପାଇକମାନଙ୍କର ଚିତ୍ର ସେସମୟରେ ପାଇକମାନଙ୍କର ବେଶ ପୋଷାକ ସଂପର୍କରେ ସୂଚନା ଦିଏ । ପାଇକମାନେ ଉଭୟ ପୁରୁଷ ଓ ସ୍ତ୍ରୀ ପିନ୍ଧାଲୁଗାକୁ ପାଇକଛା ମାରି ପିନ୍ଧୁଥିଲେ । ଯୁଦ୍ଧ ସମୟରେ ଏମାନେ ମୁଣ୍ଡର ଲମ୍ବା କେଶକୁ ଗଣ୍ଠି ପକାଇ ବାନ୍ଧିଦେଉଥିଲେ । ପାଇକମାନେ ହାତରେ ବଳା ଓ ଗୋଡରେ ତୋଡ ପିନ୍ଧୁଥିଲେ । ଶରୀରର ବିଭିନ୍ନ ଅଂଶ ଯଥା ହାତରେ କଙ୍କଣ, ମୁଣ୍ଡରେ ଧଳା ପଗଡି, ବାହୁରେ ବାହୁଟି, ଅଣ୍ଟାରେ ଧଳା ପାଗେଟି, ବେତଣ ବକ୍ଷରେ ମୁକ୍ତାମାଳ, କଟିରେ ଖଣ୍ଡା, ଲଲାଟରେ କସ୍ତୁରୀ ଓ ସିନ୍ଦୂର ଟୋପା, କର୍ଣ୍ଣରେ କୁଣ୍ଡଳ, ଡାହାଣ ହାତରେ ଶର, ଡାହାଣ ଗୋଡରେ ନୂପୁର, ବାମ ହାତରେ ଧନୁ ଆଦି ଧାରଣ କରୁଥିଲେ । ପାଇକମାନଙ୍କର ଲମ୍ବାନିଶ, ଗାଲମୋଟାକଲି, ଛାତିରେ ସାଞ୍ଜୁ ଓ ଅଣ୍ଟାରେ ଦୋକଛା ଥାଏ । ଶକ୍ତିକୁ ଆରାଧନା କରି ପାଇକମାନେ ବିଜୟ ଟୀକା ପିନ୍ଧୁଥିଲେ । ଏହାକୁ ସିନ୍ଦୂର ଶିରୀ କୁହାଯାଏ । ସାରଳା ଦାସଙ୍କ ମହାଭାରତରେ ପାଇକମାନଙ୍କର ବେଶଭୂଷା ସଂପର୍କରେ ବିସ୍ତୃତ ବର୍ଣ୍ଣନା ରହିଛି । ଅଭିମନ୍ୟୁ ସାମନ୍ତ ସିଂହାରଙ୍କର 'ବିଦଗ୍ଧ ଚିନ୍ତାମଣି' କାବ୍ୟର ୬୫ ଛନ୍ଦରେ ଗୋପାଳ ବାଳକମାନଙ୍କର ମାଲ ବିନ୍ଧାରଣ କ୍ରୀଡାର ଯେଉଁ ବର୍ଣ୍ଣନା ରହିଛି ତାହା ପାଇକମାନଙ୍କର ଖେଳକୁ ମନେ ପକାଇ ଦିଏ । ଚତୁରଙ୍ଗ ଓଡିଆ ପାଇକ ସେନା ଭିନ୍ନ ଭିନ୍ନ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ । ଜଣେ ଜଣେ ପାଇକ ଏକାଧିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିଲେ । ବୀର ସର୍ବସ୍ୱ ଗ୍ରନ୍ଥ ଅନୁଯାୟୀ ପାଇକମାନେ ୫୦ ପ୍ରକାରର ଯୁଦ୍ଧାସ୍ତ୍ର ବ୍ୟବହାରରେ ନିପୁଣ ଥିଲେ । ଓଡିଆ ପାଇକମାନେ ସର୍ବାଧିକ ୪୦ଟି ବ୍ୟୁହ ରଚନା ପଦ୍ଧତି ଜାଣିଥିଲେ । ପାଇକମାନେ ଯୁଦ୍ଧରେ ବିଭିନ୍ନ ପ୍ରକାର ପାରମ୍ପରିକ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ । ସେଗୁଡିକ ହେଲା– ତୋପ, ତୋଡାଦାର, ବନ୍ଧୁକ, ଧନୁତୀର, ତାର, ତରବାରୀ, ତେଣ୍ଡା, ଗୁପ୍ତି, କଟାର, ବର୍ଚ୍ଛା, କାତି, ଛୁରୀ, ବାଙ୍କଛୁରୀ ଫାର୍ସା, ମୁଦ୍ଗର, କୁନ୍ତ ଭାଲୀ ଇତ୍ୟାଦି । ପାଇକମାନେ ବ୍ୟବହାର କରୁଥିଲେ ଧ୍ୱଜବନ୍ଧ ଖଣ୍ଡା ନଖ ବନ୍ଧ ଖଣ୍ଡା, ରାଜ ବନ୍ଧଖଣ୍ଡା, ପାନବନ୍ଧ ଖଣ୍ଡା, ଧ୍ୱଂସ ବନ୍ଧ ଖଣ୍ଡା, କୁର୍ମବନ୍ଧ ଖଣ୍ଡା, ଇତ୍ୟାଦି । ଏବେ ମଧ୍ୟ ଖଣ୍ଡାୟତ ସମାଜରେ ଯେଉଁ ପାଇକଙ୍କର ପୁରୁଣା ଅସ୍ତ୍ରଶସ୍ତ୍ର ରହିଛି ତାକୁ ପୂଜାର୍ଚ୍ଚନା କରନ୍ତି । ଦଶହରା





ସମୟରେ ପାଇକମାନଙ୍କର ବଂଶଧରମାନେ ଦଶହରା ପଡିଆରେ ଗୀତ ଗାଇ ଖଣ୍ଡା ଖେଳ କରିଥାନ୍ତି ।

ଉଡ୍ର ବା ଓଡିଶା ଏକ ତନ୍ତ୍ର ପୀଠ ଥିଲା । ଓଡିଆ ପାଇକମାନେ ଯୁଦ୍ଧ କୌଶଳ ସହିତ ମନ୍ତ୍ର ପ୍ରୟୋଗ କରୁଥିଲେ । ମନ୍ତ୍ର ଜପଦ୍ୱାରା ପାଇକମାନଙ୍କର ଏକାଗ୍ରତା ବୃଦ୍ଧି ସହିତ କର୍ମ ସଚେତନତା ସୃଷ୍ଟି ହୋଇଥାଏ । ମନ୍ତ୍ର ଉଚ୍ଚାରଣ ଦ୍ୱାରା ଶରୀରରେ ବାୟୁ ସଞ୍ଚାଳନ ଠିକ୍ ଭାବରେ ହୋଇଥାଏ ଏବଂ ଯୁଦ୍ଧ ପାଇଁ ଶକ୍ତି ପ୍ରଦାନ କରେ । ଉଡ୍ର ପାଇକମାନେ ଜାଣିଥିବା ୨୦ଟି ମନ୍ତ୍ର ବିଭିନ୍ନ ପୋଥିରୁ ସଂଗୃହିତ ହୋଇଅଛି । ପତାକା ବା ଧ୍ୱଜା ପାଇକମାନଙ୍କର ଆତ୍ମ ସମ୍ମାନ ଓ ସ୍ୱାଭିମାନର ପ୍ରତୀକ ଅଟେ । ଯୁଦ୍ଧ କ୍ଷେତ୍ରରେ ଧ୍ୱଜ ଦଣ୍ଡର ବ୍ୟବହାର ପ୍ରାୟ ପ୍ରତ୍ୟେକ ଦେଶରେ ଥିଲା । ଯୁଦ୍ଧ କ୍ଷେତ୍ରରେ ବିପୁଳ ସେନା ବାହିନୀ ମଧ୍ୟରେ କୌଣସି ନିର୍ଦ୍ଦେଶ ଓ ସୂଚନା ଦେବାକୁ ଭିନ୍ନ ଭିନ୍ନ ବିଷୟରେ ଭିନ୍ନ ଶୋଭିତ ଦଣ୍ଡ ବା ପତାକା ବ୍ୟବହାର କରାଯାଉଥିଲା । ଓଡିଆ ପାଇକ ସେନା ଯୁଦ୍ଧରେ ମୀନ କେତନ, ଫରକା ବୀର ଘଣ୍ଟା, ଓଳମାଳ, ଆଲମ୍ବ, ଢ଼ାଗା, ସୁଦଣ୍ଡ, ସୁମଦଣ୍ଡ, ଉଦଣ୍ଡ ପ୍ରଭୃତି ପତାକା ଓ ଦଣ୍ଡର ବ୍ୟବହାର କରୁଥିଲେ । ଏ ସଂପର୍କରେ କହ୍ନେଇ ଚମ୍ପତି ରାୟଙ୍କ ପାଇକ ଖେଦା ପୁସ୍ତକରେ ଉଲ୍ଲେଖ ଅଛି –

କହିବା ଶୁଣ ରଂଜାଇ
ପାଇକର ପଣ ଯହିଁ ଅଛଇ ଯେ
ଜାତି ଟେକ ବୋଲି ତାକୁ କହି, ପାଇକରେ ॥
ବାନା ଗହନ ଅଟଇ
ସାହା ଅଟେ ତାକୁ ମା' ବରୁଣେଇ ଯେ
ନାମ କହିବା ବୁଝାଇ ପାଇକରେ ॥
ଆଦି ଆଲମ୍ବ ନିଶାଣ
ଏମାନେ ଅଟଇ ବାନା ପ୍ରମାଣ ଯେ
ଧ୍ୱଜା ଯେ ଥାଇ ଗହନ ପାଇକରେ ॥
ପଛରେ ଥାଇ ଶଗଡି
ତହିଁରେ ଭିଡଇ ବାନାକୁ ଭିଡି
ଯହିଁ ଥାଏ ସୁନା ଛଡି, ପାଇକରେ ॥
ଢ଼ଗା, ଉଦଣ୍ଡ, ସୁଦଣ୍ଡ
ଆବର ଅଛଇ ସେ ସମଦଣ୍ଡ ଯେ
ଗାଢ଼ ସମରେ ଦୁରୁଦଣ୍ଡ ପାଇକରେ ॥
ଯୋଡା ଯେ ମୀନ ପତାକା
ସମର ଗହଣେ ମହତ ପକା
ଜାଣ ଗୁରୁଜେ ଫରକା ପାଇକରେ ॥
ବାନା ଦଶହାତ ହେବ
ଉକ୍ତ ପାତ ଶୁକ୍ଳ କଳା ମାନ ଥିବ
ମେଘା ତଳେ ଯୋଗ ହେବ, ପାଇକରେ ॥

ଘେରୁଆ ପାଇକ, ଛେକା ପାଇକ, ଡାକୁଆ ପାଇକ, ଅନ୍ଧାରିଆ ପାଇକ, ଛଟୋଇ ପାଇକ, ହାତୀ ନାୟକ ପାଇକ, ଶିକୁଳା ପାଇକ ମୁରୁଣି ଓ ମରୁଡି ପାଇକ, ରୁକା ପାଇକ, ବାଦ୍ୟ ପାଇକ, ଜଳପାଇକ ବା ପୋତ ପାଇକ ଇତ୍ୟାଦି ସମସ୍ତଙ୍କର ଏକତ୍ରିକରଣରେ ପାଇକ ବାହିନୀ ଗଠିତ। ଉଡ୍ର ବା ଓଡିଆ ପାଇକମାନେ ୧୦ ପ୍ରକାର କର୍ମରେ ଦକ୍ଷତା ଅର୍ଜନ କରିଥିଲେ । ୫ଟି କୃଷି କର୍ମ ଯଥା– କର୍ଷଣ, ବପନ , ବେଉଷଣ, କଟା ଓ ପିଟା । ଯଦ୍ଧରେ ୫ଟି କର୍ମ ଯଥା – ପା' ଶିକ୍ଷା ଯୁଦ୍ଧ କୌଶଳ ଶିକ୍ଷା କୁସ୍ତି କସରତ ଶିକ୍ଷା, ଯୁଦ୍ଧ ବାଦ୍ୟ ଶିକ୍ଷା, ପାଇକ ବୋଲି ଶିକ୍ଷା । ପାଇକ ସଂସ୍କୃତି ଓଡିଆ ସାଂସ୍କୃତିକ ଭାବଧାରାକୁ ବହୁ କ୍ଷେତ୍ରରେ ପ୍ରଭାବିତ ଓ ଅନୁପ୍ରାଣିତ କରି ଅଛି । ପାଇକ ନୃତ୍ୟ, ଗୀତ, ସଂଗୀତ କ୍ରୀଡା ଇତ୍ୟାଦି ପରବର୍ତ୍ତୀ ସମୟରେ ଆମ ଲୋକ ଗୀତ, ସଂଗୀତ, ନୃତ୍ୟରେ ରୂପାନ୍ତରିତ ହୋଇଅଛି । ଓଡିଆ ପାଇକର ବୀରତ୍ୱ ଆଦି ବଞ୍ଚି ରହିଛି ଲୋକ କଥା, କିମ୍ବଦନ୍ତୀ, ଆଖ୍ୟାୟିକା ଶିଳାଲେଖ ଓ ତାମ୍ର ଫଳକରେ କାରୁକାର୍ଯ୍ୟ କାସିଆ କପିଳା, କାଞ୍ଚି ଅଭିଯାନ ଓ କଳାପାହାଡ ଆକ୍ରମଣ ଇତ୍ୟାଦି କିମ୍ବଦନ୍ତୀରେ ପାଇକମାନଙ୍କର ବୀରତ୍ୱପୂର୍ଣ କାହାଣୀ ବର୍ଣ୍ଣିତ ଅଛି । କଳିଙ୍ଗ ସମ୍ରାଟ ମହାମେଘବାହନ ଐର ଖାରବେଳଙ୍କ ସାମରିକ ଅଭିଯାନ, କପିଳେନ୍ଦ୍ର ଦେବଙ୍କ ବୀରତ୍ୱପୂର୍ଣ୍ଣ କାହାଣୀ, ପୁରୁଷୋତ୍ତମ ଦେବଙ୍କ ସାମରିକ ଅଭିଯାନ ଇତ୍ୟାଦିରେ ପାଇକମାନଙ୍କର ସଂଘର୍ଷପୂର୍ଣ୍ଣ କାହାଣୀ ଉଲ୍ଲେଖ ଅଛି । ଲୋକଗୀତରେ ପାଇକମାନଙ୍କର ବେଶଭୂଷା, ଅସ୍ତ୍ରଶସ୍ତ୍ର ବ୍ୟବହାର, ପାଇକ ଓଗାଳ, କ୍ଷେତ୍ରୀୟ ବଚନ, ଯୁଦ୍ଧ କୌଶଳ ଇତ୍ୟାଦି ରହିଥାଏ । ପାଇକ ବାଦ୍ୟ

ଆମ ଲୋକ ବାଦ୍ୟକୁ ପ୍ରଭାବିତ କରିଅଛି । ପୁରୀ ସାହିଯାତରେ ବ୍ୟବହୃତ ହେଉଥିବା ବାଦ୍ୟ ପାଇକମାନଙ୍କର ବୀର ବାଦ୍ୟ ଅଟେ । ସାହିଯାତରେ ପ୍ରଚଳିତ ଥିବା ମୁଖ୍ୟ ଚାରି ମେଢ଼ ପର୍ଶୁରାମ ରାବଣ, ଦେବୀ ଓ ନାଗାଙ୍କ ନୃତ୍ୟ ହେଉଛି ପାଇକ ପରମ୍ପରାର ବୀରନୃତ୍ୟ । ସାହିଯାତ ନୃତ୍ୟରେ ଚାଲି ଓ ଠାଣି ବୀର ରସରେ ଆଚ୍ଛାଦିତ । ସାହିଯାତରେ ବ୍ୟବହୃତ ହେଉଥିବା ବାଦ୍ୟ ଚାଙ୍ଗୁ, କାହାଳୀ, ମହୁରୀ, ଭେରୀ, ଯୋଡି ନାଗରା, ଯୋଡି ମହୁରୀ, ତେଲିଙ୍ଗି ବାଜା, ଶିଙ୍ଗା, ଶଙ୍ଖ ଇତ୍ୟାଦି ବାଜିଥାଏ । ଏହି ବାଦ୍ୟ ପାଇକ ବାଦ୍ୟ ଭାବରେ ପରିଚିତ ଓ ଅନ୍ୟ ସାମାଜିକ ଉତ୍ସବରେ ମଧ୍ୟ ବାଜିଥାଏ । ଓଡିଆ ସାହିତ୍ୟରେ ମଧ୍ୟ ପାଇକ ପରମ୍ପରା ଓ ସଂସ୍କୃତି ସଂପର୍କରେ ଅନେକ ଆଲେଖ୍ୟ ଓ ସଂଦର୍ଭ ଉପସ୍ଥାପିତ ହୋଇଅଛି । କହ୍ନେଇ ଚମ୍ପତିରାୟଙ୍କ ରଚିତ ପାଇକ ଖେଦା ଓଡିଶାର ସମର କୌଶଳ, ଯୁଦ୍ଧାସ୍ତ୍ର, କ୍ଷେପଣାସ୍ତ୍ର, ବ୍ୟୁହ ରଚନା ଯୁଦ୍ଧ ଭେଦ, ଚତୁରଙ୍ଗ ସେନା, ସମର ପତାକା, ଯୁଦ୍ଧବାଦ୍ୟ ସଂଗୀତ ଯୁଦ୍ଧରେ ଆହତ ମାନଙ୍କ ପାଇଁ ଚିକିତ୍ସା ବ୍ୟବସ୍ଥା ପାଇକ ଜାତିର ଇତିହାସ, ଯୋଗ୍ୟତା, ଶ୍ରେଣୀ ବିଭାଗ, ଦୁର୍ଗ ଭେଦ ଓ ଯୁଦ୍ଧ ଦଣ୍ଡ ସଂପର୍କରେ ଉଲ୍ଲେଖ ଅଛି । ସାରଳା ଦାସଙ୍କ ଓଡିଆ ମହାଭାରତରେ ପାଇକମାନଙ୍କ ସଂପର୍କରେ ଅନେକ ତଥ୍ୟ ରହିଛି । ପୁରୁଷୋତ୍ତମ ଦାସଙ୍କ କାଞ୍ଚି କାବେରୀ ବ୍ରଜନାଥ ବଡଜେନାଙ୍କର ସମର ତରଙ୍ଗରେ ଯୁଦ୍ଧ ପକ୍ରିୟା ବର୍ଣ୍ଣିତ ଅଛି । ଚଇତି ଘୋଡା ନାଚ, ଛଉନାଚ, ଘୁମୁରା ନାଚରେ ପାଇକମାନଙ୍କର ସାଂସ୍କୃତିକ ପରିଚୟ ମିଳିଥାଏ । ଆଧୁନିକ ଯୁଗର ସୁନାମଧନ୍ୟ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ପାଇକ, ପାଇକବଧୂ ଇତ୍ୟାଦି କବିତା ରଚନା କରିଛନ୍ତି । ଗୋଦାବରୀଶ ମିଶ୍ର ଏହା ଉପରେ ଏକ ନାଟକ ରଚନା କରିଛନ୍ତି, ତାହାହେଲା ଅଠର ଶହ ସତର ଓ କବିତା ଉଠ କଙ୍କାଳ ରଚନା କରିଛନ୍ତି । କବି ସଚ୍ଚି ରାଉତରାୟଙ୍କ କବିତା ବଜାରେ ବଜା ପାଇକ ବଜା ପାଇକ ପରମ୍ପରା ଉପରେ ଆଧାରିତ । ପାଇକ ସଂସ୍କୃତି ଅନନ୍ୟ ଓ ଅସାଧାରଣ । ଏହା ଓଡିଆ ଜାତିର ପରିଚୟ ଓ ସ୍ୱାଭିମାନର ପ୍ରତୀକ । ପାଇକ ସଂସ୍କୃତି ଓଡିଆ ଜାତିର ଗର୍ବ ଓ ଗୌରବ ।

୧୮୦୩ ମସିହାରେ ଇଂରେଜମାନେ ଓଡିଶା ଅଧିକାର କଲେ । ପୂର୍ବ ଚୁକ୍ତି ଅନୁଯାୟୀ ଇଂରେଜମାନେ ଚାରୋଟି ମାହାଲ ପୁରୀ ରାଜା ମୁକୁନ୍ଦ ଦେବ ଦ୍ୱିତୀୟ ଓ ପ୍ରଧାନମନ୍ତ୍ରୀ ଜୟୀ ରାଜଗୁରୁଙ୍କୁ ଫେରାଇବାର ବ୍ୟବସ୍ଥା ଥିଲା କିନ୍ତୁ ଇଂରେଜ କର୍ତ୍ତୃପକ୍ଷ ପୂର୍ବ ଚୁକ୍ତି ଅମାନ୍ୟ କରି ଚାରଟି ମାହଲ ଫେରେଇବାକୁ ଅନିଚ୍ଛା ପ୍ରକାଶ କଲେ । ଏହାଦ୍ୱାରା ରାଜା ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ । ରାଜା ମୁକୁନ୍ଦ ଦେବ ଦ୍ୱିତୀୟ ପରାସ୍ତ ଓ ବନ୍ଦୀ ହେଲେ ଏବଂ ଜୟୀ ରାଜଗୁରୁଙ୍କୁ ମେଦିନିପୁର ଜିଲ୍ଲାର ବାଘି ତୋଟାଠାରେ ଫାସୀ ଦିଆଗଲା । ଖୋର୍ଦ୍ଧା ଇଂରେଜ ସରକାରଙ୍କର ପ୍ରତ୍ୟକ୍ଷ ଶାସନାଧୀନ ହେଲା । ମେଜର ଫ୍ଲେଚର ୧୮୦୫ ମସିହାରେ ଖୋର୍ଦ୍ଧାରେ ଭୂବନ୍ଦୋବସ୍ତ କରାଇଥିଲେ । ଏହି ବନ୍ଦୋବସ୍ତ ଦ୍ୱାରା ବଂଶାନୁକ୍ରମିକ ଭାବରେ ପାଇକମାନେ ଭୋଗ କରି ଆସୁଥିବା ନିଷ୍କର ଜମିକୁ ଇଂରେଜମାନେ ନିଜ ହାତକୁ ନେଲେ । ଖୋର୍ଦ୍ଧା ଇଂରେଜମାନଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ଶାସିତ ହେବାର ପାଇକମାନେ ତାଙ୍କର ସାମରିକ ବୃତ୍ତି ହରାଇଲେ । ପାଇକମାନେ ତାଙ୍କର ନିଷ୍କର ଜମି ହରାଇ ନିସ୍ୱ ହୋଇଗଲେ । ପାଇକ ଓ ସାଧାରଣ ରୟତମାନଙ୍କର ବ୍ୟବସ୍ଥା ଖୋର୍ଦ୍ଧାରେ ଅତି ଶୋଚନୀୟ ହୋଇପଡିଥିଲା । ଇଂରେଜମାନଙ୍କର ଆର୍ଥିକ ନୀତି ଅନେକ ଜନଅସନ୍ତୋଷ ସୃଷ୍ଟି କରିଥିଲା । ଇଂରେଜ ସରକାରଙ୍କର ଏକ ଚାଟିଆ ଲବଣ ନୀତି ଫଳରେ ସାଧାରଣ ଜନତା ବହୁ ଅସୁବିଧାର ସମ୍ମୁଖୀନ ହେଲେ । କଉଡିର ବିମୁଦ୍ରୀକରଣ ମଧ୍ୟ ପାଇକ ବିଦ୍ରୋହ ପାଇଁ ପଥ ଉନ୍ମୁକ୍ତ କରିଥିଲା । ଭୂ ରାଜସ୍ୱ ନୀତି, ଜମିଦାର, ରୟତମାନଙ୍କୁ ଅସନ୍ତୁଷ୍ଟ କରିଥିଲା । ଇଂରେଜ ସରକାରଙ୍କର ପ୍ରଶାସନିକ ନୀତି ଯଥା– ବାରମ୍ବାର ସ୍ୱଳ୍ପ ମିଆଦୀ ବନ୍ଦୋବସ୍ତ କରିବା, ଭୂ ରାଜସ୍ୱ ବାରମ୍ବାର ମାତ୍ରାଧିକ ବୃଦ୍ଧି କରିବା ଏବଂ ପ୍ରାକୃତିକ ବିପର୍ଯ୍ୟୟ ସତ୍ତ୍ୱେ ଖଜଣା ହ୍ରାସ ନ କରିବା ପ୍ରଭୃତି ସାଧାରଣ ଜନତା ମନରେ ଗଭୀର ଅସନ୍ତୋଷ ସୃଷ୍ଟି କରିଥିଲା । ଖୋର୍ଦ୍ଧା ରାଜାଙ୍କର ବକ୍ସି ତଥା ସେନାଦକ୍ଷ ଜଗବନ୍ଧୁ ବିଦ୍ୟାଧର ଭ୍ରମରବରରାୟ ମହାପାତ୍ରଙ୍କର ଜମିଦାରୀ ରୋଢ଼ଙ୍ଗ ଗଡକୁ ଚଞ୍ଚକତା କରି ତାଙ୍କଠାରୁ ଛଡାଇ ନିଆଗଲା । ଉପରୋକ୍ତ ଘଟଣା ୧୮୧୭ ମସିହା ପାଇକ ବିଦ୍ରୋହ ପାଇଁ ଏକ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରି ଥିଲା । ବକ୍ସି ଜଗବନ୍ଧୁ ପୁରୀଠାରେ ଅବସ୍ଥାପିତ ରାଜାଙ୍କୁ ସାକ୍ଷାତ କରି ବିଦ୍ରୋହର ନେତୃତ୍ୱ ନେବା ପାଇଁ ଅନୁରୋଧ

କରିଥିଲେ । ବକ୍ସି ଜଗବନ୍ଧୁଙ୍କର ଆଶା ଥିଲା ଖୋର୍ଦ୍ଧା ରାଜା ବିଦ୍ରୋହର ନେତୃତ୍ୱ ନେଲେ ତାଙ୍କ ଅଧୀନରେ ଥିବା ଗଡଜାତ ରାଜାମାନେ ବିଦ୍ରୋହରେ ଅଂଶ ଗ୍ରହଣ କରିବେ । କିନ୍ତୁ ରାଜା ବିଦ୍ରୋହରେ ନେତୃତ୍ୱ ନେବା ପାଇଁ ଅନିଚ୍ଛା ପ୍ରକାଶ କଲେ । ୧୮୧୭ ମସିହା ମାର୍ଚ୍ଚମାସ ଶେଷ ସପ୍ତାହରେ ଘୁମୁସରରୁ ୪୦୦ ଆଦିବାସୀ କନ୍ଧ ଆସି ଖୋର୍ଦ୍ଧାରେ ପହଞ୍ଚିବା ପରେ ବିଦ୍ରୋହ ଆରମ୍ଭ ହେଲା । ବକ୍ସି ଜଗବନ୍ଧୁଙ୍କୁ ସମର୍ଥନ କରି ଦଳେଇ, ଦଳବେହେରା ଓ ପାଇକମାନେ ବିଦ୍ରୋହରେ ଯୋଗଦାନ କରିଥିଲେ । ବାଣପୁରରେ ବିଦ୍ରୋହୀମାନେ ଥାନା, ସରକାରୀ କାର୍ଯ୍ୟାଳୟ, ଆକ୍ରମଣ କରିବା ସହିତ କୋଷାଗାର ଲୁଣ୍ଠନ କରିଥିଲେ । ବିଦ୍ରୋହୀମାନେ ବାଣପୁରରୁ ଖୋର୍ଦ୍ଧା, ଅଭିମୁଖେ ଯାତ୍ରା କଲେ । ଖୋର୍ଦ୍ଧାରେ ସେମାନେ ସରକାରୀ କାର୍ଯ୍ୟାଳୟରେ ଅଗ୍ନି ସଂଯୋଗ କଲେ ଏବଂ କୋଷାଗାର ଲୁଣ୍ଠନ କଲେ । ବିଦ୍ରୋହ ଦମନ କରିବା ଉଦ୍ଦେଶ୍ୟରେ ଇଂରେଜ କର୍ତ୍ତୃପକ୍ଷ ଲେଫ୍‌ଟନାଣ୍ଟ ଫିଡକସଙ୍କ ନେତୃତ୍ୱରେ ଏକ ସୈନ୍ୟ ଦଳକୁ ଖୋର୍ଦ୍ଧା ପଠାଇ ଥିଲେ ଓ ଅନ୍ୟ ଏକ ସୈନ୍ୟଦଳକୁ ଫାରିସଙ୍କ ନେତୃତ୍ୱରେ ପିପିଲି ଅଭିମୁଖେ ପଠାଇଲେ । ଲେଫ୍‌ଟନାଣ୍ଟ ଟ୍ରାଭିସଙ୍କ ନେତୃତ୍ୱରେ ୬୪ଜଣ ସିପାହୀଙ୍କୁ ନେଇ କଟକର ମାଜିଷ୍ଟ୍ରେଟ ଏଡ୍‌ୱାଡ ଇମ୍ପେ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲେ । ମାଜିଷ୍ଟ୍ରେଟ ଏଡ୍‌ୱାଡ ଇମ୍ପେ ୧୮୧୭ ଏପ୍ରିଲ ୨ ତାରିଖ ଦିନ ଖୋର୍ଦ୍ଧା ନିକଟସ୍ଥ ଗଙ୍ଗପଡାରେ ପହଞ୍ଚିଲେ । ଖୋର୍ଦ୍ଧାରେ ବିଦ୍ରୋହ ଉଗ୍ରରୂପ ଧାରଣ କରିଥିବାର ଜାଣି ଇମ୍ପେ କଟକକୁ ଫେରି ଆସିଲେ । ୧୮୧୭ ମସିହା ଏପ୍ରିଲ ମାସ ୧୨ ତାରିଖ ଦିନ ବହୁ ସଂଖ୍ୟକ କନ୍ଧ ଗେହାରମାନେ ପୁରୀରେ ପ୍ରବେଶ କଲେ । ସେମାନେ ଦାରୋଗାଙ୍କ ସମେତ ଅନେକ ଗୃହରେ ଅଗ୍ନି ସଂଯୋଗ କଲେ । ସମୁଦ୍ର କୂଳସ୍ଥ ଜଜ୍‌ଙ୍କ ବଙ୍ଗଳାକୁ ଆକ୍ରମଣ କରିବା ପାଇଁ ବିଦ୍ରୋହୀମାନେ ଚେଷ୍ଟା କରୁଥିବା ସମୟରେ ସିପାହୀମାନଙ୍କ ଗୁଳିମାଡରେ ଛତ୍ରଭଙ୍ଗ ଦେଲେ । ୧୮୧୭ ମସିହା ଏପ୍ରିଲ ମାସ ୧୪ ତାରିଖ ଦିନ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ୫ ଶହରୁ ଅଧିକ ପାଇକ ତଥା କନ୍ଧ ଚୋହର ପୁରୀରେ ପ୍ରବେଶ କଲେ । ପୁରୀରେ ଇଂରେଜ ସୈନ୍ୟଙ୍କ ସଂଖ୍ୟା ଥିଲା ୧୮୦ । କ୍ୟାପଟେନ ୱାଲିଙ୍ଗଟନ କଟକ ଫେରି ଆସିଲେ । ପୁରୀରେ ପଣ୍ଡା ଓ ସାଧାରଣ ଜନତା ବିଦ୍ରୋହୀମାନଙ୍କ ସହିତ ଯୋଗଦେଲେ । ଖୋର୍ଦ୍ଧାରୁ ୫୦୦ରୁ ଅଧିକ ପାଇକ କିଲା ରୂପାସା ଆଡକୁ ଯାତ୍ରା କଲେ ଏବଂ ଗୋପ ଓ କୁଜଙ୍ଗ ର ପାଇକମାନଙ୍କୁ ବିଦ୍ରୋହରେ ଯୋଗ ଦେବା ପାଇଁ ପ୍ରବର୍ତ୍ତାଇ ଥିଲେ ।

ମରିଚପୁର, ହରୀଶପୁର ଓ ଗୋଲାରର ପୂର୍ବତନ ଜମିଦାରମାନେ ବିଦ୍ରୋହକୁ ସମର୍ଥନ କରିଥିଲେ । ମଲାଙ୍ଗମାନେ ବିଦ୍ରୋହୀମାନଙ୍କ ସହିତ ଯୋଗଦାନ କରିଥିଲେ । ପୁରୋଆ ଜମିଦାରଙ୍କ କଚେରି ଏବଂ କିଲା ରୂପାସା, ତାଳପଦାର ଜମିଦାରମାନଙ୍କର ଅମଲାଙ୍କ ଘରେ ଲୁଣ୍ଠନ କରିଥିଲେ । ବିଦ୍ରୋହୀମାନଙ୍କ ତୁଳନାରେ ଇଂରେଜମାନଙ୍କର ସାମରିକ ଶକ୍ତି ଯଥେଷ୍ଟ ଅଧିକ ଥିଲା । ବିଦ୍ରୋହ ଦମନ କରିବା ପାଇଁ ପାଞ୍ଚଟି କମ୍ପାନୀ ସୈନ୍ୟ କଟକ ଅଣାଯାଇଥିଲା । ଖୋର୍ଦ୍ଧା, ପୁରୀ ଓ ଗୋପରେ ସାମରିକ ଆଇନ ଜାରି କରାଗଲା । ଖୋର୍ଦ୍ଧାର ପୂର୍ବତନ ରାଜା ବିଦ୍ରୋହରେ ନେତୃତ୍ୱ ନେବେ ଏହା ଆଶଙ୍କା କରି ତାଙ୍କୁ ଓ ତାଙ୍କ ପରିବାରବର୍ଗଙ୍କୁ ପୁରୀରୁ କଟକ ଅଣାଯାଇ ଥିଲା । ସୈନ୍ୟମାନଙ୍କ ଘେରରେ କଟକ ଯାଉଥିବା ରାଜା ଇଂରେଜମାନଙ୍କଠାରୁ ଅଲଗା କରିବା ପାଇଁ ପିପିଲିଠାରେ ବିଦ୍ରୋହୀମାନେ ଉଦ୍ୟମ କରିଥିଲେ । ବ୍ରିଟିଶ ସୈନ୍ୟ ଓ ବିଦ୍ରୋହୀମାନଙ୍କ ମଧ୍ୟରେ ସଂଘର୍ଷ ଘଟି ୧୯ ଜଣ ବିଦ୍ରୋହୀ ମୃତ୍ୟୁ ବରଣ କରିଥିଲେ । ପିପିଲି, ଖୋର୍ଦ୍ଧା ପୁରୀରେ ୧୮୧୭ ମସିହା ମେ ମାସ ବେଳକୁ ବିଦ୍ରୋହ ପ୍ରଶମିତ ହୋଇଥିଲା । ବର୍ଷାଋତୁ ଆରମ୍ଭ ହୋଇଥିବାରୁ କୁଜଙ୍ଗ ବିଦ୍ରୋହ ଦମନରେ ବିଳମ୍ବ ଘଟିଥିଲା । ସେପ୍ଟେମ୍ବର ଶେଷ ସୁଦ୍ଧା କୁଜଙ୍ଗ ବିଦ୍ରୋହ ଦମନ ହୋଇଥିଲା ଓ ଅକ୍ଟୋବର ୧୨ ତାରିଖ ଦିନ କୁଜଙ୍ଗର ବିଦ୍ରୋହୀ ରାଜା ଇଂରେଜମାନଙ୍କ ନିକଟରେ ଆତ୍ମସମର୍ପଣ କଲେ । ଇଂରେଜ ସରକାର କଠୋର ହସ୍ତରେ ବିଦ୍ରୋହ ଦମନ କଲେ । ବକ୍ସି ଜଗବନ୍ଧୁ ଓ ତାଙ୍କ ଅନ୍ତରଙ୍ଗ ସହଯୋଗୀମାନେ ଜଙ୍ଗଲକୁ ପଳାୟନ କଲେ ଏବଂ ବିଦ୍ରୋହ ଚାଲୁ ରଖିଲେ । ଖୋର୍ଦ୍ଧାର ସାଧାରଣ ଜନତା ଏବଂ ନୟାଗଡ ଓ ଘୁମୁସୁର ରାଜାମାନଙ୍କର ସହାୟତାରେ ବକ୍ସି ଜଗବନ୍ଧୁ ନିଘଞ୍ଚ ଜଙ୍ଗଲରେ ସୁରକ୍ଷିତ ଆତ୍ମଗୋପନ କରିବାରେ ସମର୍ଥ ହୋଇଥିଲେ । ୧୮୧୮ ମସିହା ଏପ୍ରିଲ ମାସ ବେଳକୁ ବିଦ୍ରୋହୀମାନେ ଡକାୟତି, ଘରପୋଡି, ରାଜସ୍ୱ ଲୁଣ୍ଠନ କାର୍ଯ୍ୟରେ ଲିପ୍ତ ରହିଲେ ।





ଇଂରେଜ ସରକାର ଲକ୍ଷ୍ୟ କଲେ ଆତ୍ମଗୋପନକାରୀ ବିଦ୍ରୋହୀମାନେ ଆତ୍ମସମର୍ପଣ ନକଲେ ଆଇନ ଶୃଙ୍ଖଳା ପରିସ୍ଥିତିରେ ଉନ୍ନତି ଘଟିବ ନାହିଁ । ୧୮୧୭ ମସିହା ଏପ୍ରିଲ ପହିଲାରୁ ୧୮୧୯ ମାର୍ଚ୍ଚ ପହିଲା ପର୍ଯ୍ୟନ୍ତ ଅପରାଧରେ ଲିପ୍ତ ଥିବା ବିଦ୍ରୋହୀମାନଙ୍କୁ କ୍ଷମା ଦିଆଯିବ ବୋଲି ଘୋଷଣା କରାଗଲା । କିନ୍ତୁ ବକ୍ସି ଜଗବନ୍ଧୁ ଓ ତାଙ୍କର ମୁଖ୍ୟ ସହଯୋଗୀମାନଙ୍କ ପାଇଁ ଏହା ଲାଗୁ ହେବ ନାହିଁ । ଯେଉଁମାନେ ସେମାନଙ୍କୁ ଧରାଇ ଦେବେ ସେମାନଙ୍କୁ ପୁରସ୍କାର ପ୍ରଦାନ କରାଯିବା ପାଇଁ ଇଂରେଜ ସରକାର ଘୋଷଣା କଲେ । ଇଂରେଜ ସରକାରଙ୍କର ଏହି ଘୋଷଣା ଦ୍ୱାରା ଅନେକ ବିଦ୍ରୋହୀ ଆତ୍ମସମର୍ପଣ କଲେ । ଇଂରେଜ ସରକାର ଜଗବନ୍ଧୁ ଓ ତାଙ୍କର ପ୍ରମୁଖ ଅନୁଗାମୀମାନଙ୍କର ଭୂସମ୍ପତ୍ତି ବାଜ୍ୟାପ୍ତ କରିଥିଲେ କାରଣ ବିଦ୍ରୋହୀମାନଙ୍କ ମନୋବଳ ଭାଙ୍ଗି ସେମାନଙ୍କୁ ଆତ୍ମସମର୍ପଣ କରିବା ପାଇଁ ବାଧ କରିବା । ବକ୍ସି ଜଗବନ୍ଧୁଙ୍କ ପରିବାରର ସଦସ୍ୟମାନଙ୍କୁ ଇଂରେଜ ସରକାର ବନ୍ଦୀ କରିଥିଲେ । ୧୮୨୫ ମସିହାରେ ବକ୍ସି ଜଗବନ୍ଧୁ ସରକାରଙ୍କ ନିକଟରେ ଆତ୍ମ ସମର୍ପଣ କଲେ । ଦୀର୍ଘ ଆଠ ବର୍ଷ ଧରି ନିରବଚ୍ଛିନ୍ନ ଭାବରେ ବିଦ୍ରୋହ କରି ଆସୁଥିଲେ । ସରକାରଙ୍କଠାରୁ ମାସକୁ ୧୫୦ଟଙ୍କା ଭତ୍ତା ନେଇ କଟକଠାରେ ଅବସ୍ଥାନ କଲେ । ୧୮୨୯ ମସିହା ଜାନୁଆରୀ ୨୪ ତାରିଖ ଦିନ ତାଙ୍କ ସଂଗ୍ରାମୀ ଜୀବନର ଅବସାନ ଘଟିଲା । ସେ କଟକରେ ରହୁଥିବା ସ୍ଥାନର ନାମ ଆଜି ବକ୍ସିବଜାର ନାମରେ ପରିଚିତ । ୧୮୨୬ ମସିହାରେ ବକ୍ସିଜଗବନ୍ଧୁଙ୍କର ଘନିଷ୍ଠ ସହଯୋଗୀ କୃଷ୍ଣଚନ୍ଦ୍ର ବିଦ୍ୟାଧର ଆତ୍ମସମର୍ପଣ କଲେ । ଇଂରେଜ ସରକାର ଗୋପାଳ ଛୋଟରାୟ, ବିଷ୍ଣୁ ପାଇକରାୟ, ରାମ ସିଂ ଓ ନାଥ ପ୍ରଧାନଙ୍କୁ ଦେଶଦ୍ରୋହ ଅପରାଧରେ ମୃତ୍ୟୁଦଣ୍ଡ ପ୍ରଦାନ କରିଥିଲେ । ଅନେକ ବିଦ୍ରୋହୀଙ୍କୁ ଆଜୀବନ କାରାଦଣ୍ଡ ଓ କଳାପାଣିକୁ ନିର୍ବାସନ ଦଣ୍ଡରେ ଦଣ୍ଡିତ କରାଯାଇଥିଲା । ସଚ୍ଚିଦାନନ୍ଦ ପଟ୍ଟନାୟକ ଓ ପର୍ଶୁରାମ ରାଉତରାୟଙ୍କୁ ମଧ୍ୟ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଯାଇଥିଲା । ୧୦୬ ଜଣ ବିଦ୍ରୋହୀ କଳାପାଣି ଦଣ୍ଡରେ ନିର୍ବାସିତ ହୋଇଥିଲେ । ୨୬ ଜଣ ବିଦ୍ରୋହୀଙ୍କୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାଗଲା । ତାପଙ୍ଗଗଡର ଦଳବେହେରା ମାଧବ ଚନ୍ଦ୍ର ରାଉତରାୟ ୧୮୨୭ ମସିହାରେ ୬ ଦିନ ଧରି ଯୁଦ୍ଧ କ୍ଷେତ୍ର କାଣ୍ଡଗୋଦାଠାରେ ଇଂରେଜମାନଙ୍କ ସହିତ ତୁମୁଳ ସଂଗ୍ରାମ କରିଥିଲେ । ତାପଙ୍ଗ ବିଦ୍ରୋହର ନଅ ବର୍ଷ ପରେ ଅରାଙ୍ଗ ଗଡର କୃତିବାସ ପାଟଶାଣୀ ୧୮୩୬ ମସିହାରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଥିଲେ । ୧୮୧୭ ମସିହାରୁ ୧୮୩୬ ମସିହା ପର୍ଯ୍ୟନ୍ତ ପାଇକମାନେ ନିରବଚ୍ଛିନ୍ନ ଭାବରେ ଇଂରେଜ ଶକ୍ତି ବିରୁଦ୍ଧରେ ସଂଗ୍ରାମ କରି ଆସିଥିଲେ । ୧୮୧୭ ମସିହା ପାଇକ ବିଦ୍ରୋହର ବ୍ୟାପକତା ଓ ବିଦ୍ରୋହ ପାଇଁ ପ୍ରସ୍ତୁତ ବିଦ୍ରୋହରେ ଅଂଶ ଗ୍ରହଣ କରିଥିବା ବିଦ୍ରୋହୀମାନଙ୍କର ସାମାଜିକ ସ୍ଥିତି, ସେମାନଙ୍କର ଉଦ୍ଦେଶ୍ୟ, ବିଦ୍ରୋହର ଅଗ୍ରଗତି ସଂପର୍କରେ ଅନୁଶୀଳନ କଲେ ଏହା ସ୍ପଷ୍ଟ ପ୍ରମାଣିତ ହୁଏ ଯେ ପାଇକ ବିଦ୍ରୋହ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ । ଯଥାଶୀଘ୍ର ଏହାକୁ ମାନ୍ୟତା ପ୍ରଦାନ କରିବା ଉଚିତ । ଏଥିପାଇଁ ପ୍ରତ୍ୟେକ ଓଡିଆମାନେ ନିସ୍ୱାର୍ଥପର ଭାବରେ ସଂଗ୍ରାମ ଜାରି ରଖିବା ଆବଶ୍ୟକ । ଏହା ହେବ ପାଇକ ବିଦ୍ରୋହୀମାନଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା – ୭୫୨୦୫୪





# ଜାତୀୟ ମୁକ୍ତି ସଂଗ୍ରାମରେ ଓଡ଼ିଶାର ନାରୀ

**ବିଚକ୍ଷଣା ବିଶ୍ୱାଳ**

ନାରୀ ବିନା ପୁରୁଷ ଅସମ୍ପୂର୍ଣ୍ଣ । ଠିକ୍ ଯେମିତି ଶକ୍ତି ବିନା ଶିବ ଶବ । ମାଙ୍ଗଳିକ କାର୍ଯ୍ୟ, ସାମାଜିକ କଲ୍ୟାଣ, ସାଂସ୍କୃତିକ ଜାଗରଣ ପ୍ରଭୃତିରେ ନାରୀର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ପ୍ରତିଟି ସଫଳତା ପଛରେ ନାରୀଟିର ପ୍ରେରଣାକୁ ଅସ୍ୱୀକାର କରାଯାଇ ନପାରେ । ନାରୀ ପୁରୁଷର ସହଧର୍ମିଣୀ, ସହକର୍ମିଣୀ, ସହମର୍ମିଣୀ । ଗୋଟେ କଥାରେ କହିଲେ, ପୁରୁଷର ସମସ୍ତ କାର୍ଯ୍ୟର ପୂର୍ଣ୍ଣାଙ୍ଗପ୍ରାପ୍ତି ନାରୀଟି ଉପରେ ନିର୍ଭର କରେ । ସେଇଥି ପାଇଁ ବୈଦିକ ଯୁଗରେ ସେମାନଙ୍କୁ ଯଥୋଚିତ ସମ୍ମାନ ଦିଆଯାଉଥିଲା । ସେମାନେ ଥିଲେ ବିଦୁଷୀ । ସମୟକ୍ରମେ ନାରୀର ସାମାଜିକ ସ୍ଥିତି ବଦଳିଲା । ପରମ୍ପରା, କୁସଂସ୍କାର ପୀଡ଼ିତ ସମାଜ ସେମାନଙ୍କୁ ଅଣଦେଖା କଲା । ସମାଜ ହୋଇଗଲା ପୁରୁଷ ପ୍ରଧାନ । ତଥାପି ନାରୀଟି ଜନନୀ, ଜାୟା, ଭଗିନୀ, ପ୍ରେମମୟ ପତ୍ନୀ, ଆଉ କେତେବେଳେ ରୁଦ୍ର ମୂର୍ତ୍ତି ଧାରିଣୀ ଦେବୀ ଦୁର୍ଗା । ସମାଜର ଶତ ପ୍ରତିବନ୍ଧକ ତାକୁ ଅଟକାଇ ରଖି ପାରିନି । ଝାନ୍ସୀରାଣୀ ଲକ୍ଷ୍ମୀବାଈ, ରେଜିଆ ସୁଲତାନା, ରାଣୀ ଶୁକଦେଈ, ଏମାନେ ଯୁଦ୍ଧରେ ପରାକ୍ରମ ଦର୍ଶାଇଛନ୍ତି । ଶତ୍ରୁସହ ସଂଗ୍ରାମ କରିଛନ୍ତି । ଦେଶ ପାଇଁ ଜୀବନକୁ ବାଜି ଲଗେଇ ଦେଇଛନ୍ତି । ଇତିହାସର ସେମାନେ ଗୋଟେ ଗୋଟେ ଉଜ୍ଜ୍ୱଳ ଚରିତ୍ର । ଅନୁରୂପ ଭାବେ ଭାରତୀୟ ମୁକ୍ତି ସଂଗ୍ରାମରେ ନାରୀର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଗୋଟେ ନୀତି ନିଗଡ଼ ବନ୍ଧ ସମାଜରୁ ମୁକୁଳି ସେମାନେ ଯେଉଁ ତ୍ୟାଗ ଦେଶପ୍ରୀତିର ନମୁନା ରଖିଗଲେ ସେଥିପାଇଁ ଇତିହାସ ଗର୍ବିତ । ଜାତୀୟ ମୁକ୍ତି ଯୁଦ୍ଧରେ ପୁରୁଷମାନେ ନାରୀମାନଙ୍କଠାରୁ ଯଥେଷ୍ଟ ଆଗରେ, ମାତ୍ର ସେମାନଙ୍କର ସଂଗ୍ରାମୀ ଜୀବନକୁ ପ୍ରୋତ୍ସାହିତ କରିଛି ଏଇ ନାରୀ । ନିଜେ ମଧ୍ୟ ଏରୁଣ୍ଡି ବନ୍ଧ ଡେଇଁଛି, ମୁକ୍ତି ସଂଗ୍ରାମକୁ ତ୍ୱରାନ୍ୱିତ କରିଛି । ଏ ପରିପ୍ରେକ୍ଷୀରେ ଓଡ଼ିଶାର ନାରୀ ବହୁ ଆଗରେ – ଏହାକୁ ବି ଅସ୍ୱୀକାର କରାଯାଇ ନପାରେ ।

ଏକ ବିଧିବଦ୍ଧ, ସଂଗଠିତ ଇଂରେଜ ବିରୋଧୀ ଯୁଦ୍ଧ ଆରମ୍ଭ ହେଲା ଅସହଯୋଗ ଆନ୍ଦୋଳନ ସମୟରୁ (୧୯୨୦–୧୯୨୧) । ଏହାର ନେତୃତ୍ୱ ନେଲେ ଜାତିର ପିତା ମହାତ୍ମାଗାନ୍ଧୀ । ତାଙ୍କର ନୀତିନିଷ୍ଠ କର୍ତ୍ତବ୍ୟବୋଧ, ଆଦର୍ଶ, ଅନୁଚିନ୍ତନ ବିଶେଷକରି ସତ୍ୟ, ସତ୍ୟାଗ୍ରହ, ଅହିଂସା, ବ୍ରହ୍ମଚର୍ଯ୍ୟ, ଆର୍ଥନୀତିକ ସଂସ୍କାର, ରଚନାତ୍ମକ କାର୍ଯ୍ୟକ୍ରମ ଭାରତୀୟମାନଙ୍କୁ ବିହ୍ୱଳ କରିଦେଲା । ୧୯୨୦–୧୯୪୮ ଗାନ୍ଧୀ ଯୁଗ ନାମରେ ନାମିତ ହେଲା । ଅହିଂସା ନୀତି ଆଧାରିତ ମୁକ୍ତିସଂଗ୍ରାମ ଫଳବତୀ ହେଲା, ବ୍ରିଟନମାନେ ପେଡ଼ିପୁଟୁଳା ବାନ୍ଧି ଘର ବାହୁଡ଼ିଲେ (୧୯୪୭) । ଅସହଯୋଗ, ଆଇନ ଅମାନ୍ୟ (୧୯୩୦), ଭାରତଛାଡ଼ ଆନ୍ଦୋଳନ (୧୯୪୨) ଆଦି ମୁକ୍ତିସଂଗ୍ରାମର ବିଭିନ୍ନ ପର୍ଯ୍ୟାୟ ତ୍ୱରାନ୍ୱିତ ହୋଇଥିଲା ଗାନ୍ଧୀଙ୍କ ନେତୃତ୍ୱରେ । ଶହଶହ ପୁରୁଷ ସତ୍ୟାଗ୍ରହୀ ଏଥିରେ ଯୋଗଦେଲେ । ଏଥିରେ ନାରୀମାନଙ୍କ ଭୂମିକା ବି ଉଲ୍ଲେଖଯୋଗ୍ୟ । ବାସ୍ତବ ଅର୍ଥରେ କହିଲେ ଓଡ଼ିଶାର ନାରୀ ଜାଗରଣ, ସ୍ୱାଧୀନତାର ସକ୍ରିୟ ଅଂଶଗ୍ରହଣ ପଶ୍ଚାତରେ ମହାତ୍ମା ଗାନ୍ଧୀଙ୍କ ପ୍ରେରଣା, ଋଷି ଅରବିନ୍ଦଙ୍କର ଅଗ୍ନିବର୍ଷୀ ଉଦ୍‌ବୋଧନ, ସମାଜ ସଂସ୍କାରବାଦୀଙ୍କ ଭୂମିକା ପ୍ରଶଂସନୀୟ । ଜାତୀୟ ମୁକ୍ତି ସଂଗ୍ରାମରେ ଓଡ଼ିଶାର ପୁରୁଷମାନେ ଥିଲେ ବହୁ ଆଗରେ । ଅନୁରୂପ ଭାବେ ନାରୀ ବାହିନୀ, ଯାହା ଶତାବ୍ଦୀ ଶତାବ୍ଦୀରେ ସମ୍ଭବ ନଥିଲା, ଗାନ୍ଧିଜୀଙ୍କ ଯାଦୁକରୀ ମନ୍ତ୍ରରେ ସମ୍ଭବ ହେଲା । ଏଇଟି ଇତିହାସର ଗୋଟେ ଉଲ୍ଲେଖଯୋଗ୍ୟ ଘଟଣା ।

ଜାତୀୟ ରାଜନୀତିରେ ଗାନ୍ଧିଜୀଙ୍କ ଯୋଗଦାନ ପୂର୍ବର କଥା। ଇଂରେଜ ସରକାରଙ୍କ ନିର୍ଯାତନା, ଶୋଷଣ ଲୁଣ୍ଠନ, କମ୍ପାନୀ କର୍ମଚାରୀଙ୍କ ଅବିଚାର ସୀମା ଟପିଲା। ବ୍ରିଟନପକ୍ଷ ସମର୍ଥକ ରାଜରାଜୁଡ଼ାଙ୍କ ଦୁରାଚାର ବେଠି, ବେଗାରି, ରାଜସ୍ୱ ଏପରିକି ନାନାପ୍ରକାର ବୈଧ ଅବୈଧ ଟିକସ ଆଦାୟ ଲୋକଙ୍କ ଉପରେ ବେଡ଼ି ଉପରେ କୋରଡ଼ା ହେଲା। ଫିରିଙ୍ଗିଙ୍କ ଜୋର୍ ଜୁଲମ ଦେଶବାସୀଙ୍କୁ ଅତିଷ୍ଠ କରିଦେଇଥିଲା। ଇଂରେଜ ବିରୋଧୀ ଅବହାୱା ଅନେକତ୍ର ମୁଣ୍ଡ ଟେକିଥିଲା। ଏ ପରିପ୍ରେକ୍ଷୀରେ ଓଡ଼ିଶା ଥିଲା ସ୍ୱତନ୍ତ୍ର। ଇଂରେଜମାନେ ସମ୍ପୂର୍ଣ୍ଣ ଓଡ଼ିଶା ଅଧିକାର କରିବାର ପଚାଶ ବର୍ଷ ପୂର୍ବରୁ ଦକ୍ଷିଣ ଓଡ଼ିଶାକୁ ଅକ୍ତିଆର କରିଥିଲେ। ସେମାନେ ମୋଗଲବନ୍ଦୀ ଅଞ୍ଚଳ (କଟକ, ପୁରୀ, ବାଲେଶ୍ୱର)କୁ ଅଧିକାର କଲେ ୧୮୦୩ ମସିହାରେ। ଓଡ଼ିଶାବାସୀ ବ୍ରିଟନମାନଙ୍କୁ ମୁହୂର୍ତ୍ତଟିଏ ବରଦାସ୍ତ କରିନଥିଲେ। ଏହାର ନମୁନା ଦକ୍ଷିଣ ଓଡ଼ିଶା ବିଦ୍ରୋହରୁ ମିଳିଥାଏ। ତାହା ମୁକ୍ତି ସଂଗ୍ରାମ ଇତିହାସର ଗୋଟେ ବିଶେଷ ଘଟଣା। ପାଇକ ବିଦ୍ରୋହ (୧୮୧୭)ର ପୂର୍ବବର୍ତ୍ତୀ ବିଦ୍ରୋହ କିଛିମାତ୍ରାରେ ଦୁର୍ବଳ ଥିଲା କିନ୍ତୁ ଜନତାଙ୍କ ଇଂରେଜ ହଟାଅ ମନୋଭାବ ଦୃଢ଼ୀଭୂତ ହେଉଥିଲା। ଜୟୀ ରାଜଗୁରୁ ଖୋର୍ଦ୍ଧା ବିଦ୍ରୋହ (୧୮୦୪)ରେ ଶହୀଦ ହେଲେ। କନିକା କୁଜଙ୍ଗ, ମୟୂରଭଞ୍ଜ, ଘୁମୁସରରେ ବିଦ୍ରୋହାଗ୍ନି ମଧ ପ୍ରଜ୍ୱଳିତ ହୋଇଥିଲା। ପୁଞ୍ଜିଭୂତ ଅସନ୍ତୋଷ ଜ୍ୱାଳାମୁଖୀ ରୂପନେଲା ପାଇକ ବିଦ୍ରୋହରେ। ତାହା ଭାରତର ପ୍ରଥମ ମୁକ୍ତିସଂଗ୍ରାମ। କିନ୍ତୁ ଅନେକ ସିପାହୀ ବିଦ୍ରୋହ (୧୮୫୭)କୁ ପ୍ରଥମ ମୁକ୍ତିସଂଗ୍ରାମ ଆଖ୍ୟା ଦେଇଛନ୍ତି। ଓଡ଼ିଶାର ସଶସ୍ତ୍ର ବିଦ୍ରୋହରେ ବୀରମାନଙ୍କ ଭୂମିକା ଖୁବ୍ ଉଚ୍ଚରେ। ଏଥିରେ ବୀରାଙ୍ଗନାମାନଙ୍କ ଅବଦାନ ଅତି ନଗଣ୍ୟ। ତଥାପି ନାରୀର ପରୋକ୍ଷ ଅବା ପ୍ରତ୍ୟକ୍ଷ ସହଯୋଗ ହେତୁ ସେଇସବୁ ସଶସ୍ତ୍ର ବିଦ୍ରୋହର ସଫଳତା ମିଳିଛି ଏକଥା ଅନସ୍ୱୀକାର୍ଯ୍ୟ। ବାଣପୁର ବିଦ୍ରୋହରେ ହାରାମଣି, ବିର୍ସାମୁଣ୍ଡା ବିଦ୍ରୋହରେ ଶ୍ରୀମତୀ ମଣିମୁଣ୍ଡାଙ୍କର ସଂଗ୍ରାମୀପଣ ମୁକ୍ତି ସଂଗ୍ରାମର ପୂର୍ବାଭାସ ମାତ୍ର।

ପାଇକ ବିଦ୍ରୋହରେ ଭାଗ ନେଉଥିଲେ ଶହଶହ ଦେଶପ୍ରେମୀ। ସେମାନଙ୍କ ମଧ୍ୟରୁ କମ୍ପାନୀ ସରକାର ଅନେକଙ୍କୁ ହତ୍ୟା କଲେ, ଶତାଧିକ ଫାଶି ପାଇଲେ। ଅନେକ ପୁଲିସ ଗୁଳିରେ ମଲେ। ବହୁ ବିଦ୍ରୋହୀ ଦ୍ୱୀପାନ୍ତର ଦଣ୍ଡ ପାଇଲେ। ହେଲେ ଖୋର୍ଦ୍ଧାରେ ବିଦ୍ରୋହାଗ୍ନି ନିର୍ବାପିତ ହେଲାନି। ତାପଙ୍ଗ ଯୁଦ୍ଧ ବା ବାଣପୁର ବିଦ୍ରୋହ ତେଜିଲା। ନେତୃତ୍ୱ ନେଲେ ଦଳବେହେରା। ୧୮୨୭ ମସିହା, ବ୍ରିଟିଶ୍ କର୍ମଚାରୀ ରାଜସ୍ୱ ଆଦାୟ କଲେ ତାପଙ୍ଗରେ, ତାଙ୍କ ଦୁର୍ବ୍ୟବହାର ବୀର ପାଇକଙ୍କ ପାଇଁ ଥିଲା ଦୁର୍ବିସହ। ଖଜଣା ଅସୁଲକାରୀମାନେ ପାଇକ ସର୍ଦ୍ଦାର ଚିନ୍ତାମଣି ରଣସିଂହଙ୍କ ସ୍ତ୍ରୀକୁ ଧମକ ଚମକ ଦେଲେ, ଘରେ ପଶି ଜିନିଷପତ୍ର ନେବାର ଉଦ୍ୟମ କଲେ। ରଣସିଂହଙ୍କର ପତ୍ନୀ ହାରାମଣି ସ୍ୱାମୀଙ୍କ ତେଜରେ ସେ ତେଜିୟାନ, ଦେଖାଇଲେ ପାଇକ ପତ୍ନୀଙ୍କ ପରାକ୍ରମ। ଘର ଭିତରକୁ ପ୍ରବେଶ କଲେ ସେ ତରବାରୀ ଚଳାଇବାର ଧମକ ଦେଲେ। ଆବଶ୍ୟକ ପଡ଼ିଲେ ଫିରିଙ୍ଗି କର୍ମଚାରୀଙ୍କୁ ହତ୍ୟା କରିବାକୁ ପଶ୍ଚାତ୍‌ପଦ ହେବେନି ବୋଲି ସ୍ପଷ୍ଟ କହିଲେ। ଏ ସମ୍ବାଦ ନିମିଷକ ମାତ୍ରେ ପ୍ରସାରିତ ହୋଇଗଲା। ଦଳବେହେରା ଦୁଇଜଣ ପାଇକଙ୍କୁ ଆଦେଶ ଦେଲେ। ହୁକୁମ ପାଇ ଧାଇଁ ଆସିଲେ ଭାଗିରଥି ରଣସିଂହ, ଗୋବର୍ଦ୍ଧନ ବୈରୀଗଞ୍ଜ। ଏମାନେ ଦୁଇ ଦୁର୍ଦ୍ଧର୍ଷ ପାଇକ। ବୈରୀଗଞ୍ଜଙ୍କ ଗୁଳିରେ ଜଣେ, ଦଳବେହେରାଙ୍କ ଖଣ୍ଡା ଚୋଟରେ ନିହତ ହେଲେ ଆଉଜଣେ। ଏମିତି ଦୁଇଜଣ ଇଂରେଜ କର୍ମଚାରୀ ନିହତ ହେଲେ। ଏ କ୍ଷେତ୍ରରେ ହାରାମଣିଙ୍କ ବ୍ରିଟିଶ ବିରୋଧୀ ଚିନ୍ତନ ବେଶ୍ ତାତ୍ପର୍ଯ୍ୟ । ଏମିତି ଶହଶହ ପାଇକ ରମଣୀ ଆପଣା ଆପଣା ସ୍ୱାମୀଙ୍କୁ ମରଣଜୟୀ ହେବାର ପ୍ରେରଣା ଦେଇଛନ୍ତି, ପ୍ରତ୍ୟକ୍ଷ ଅବା ପରୋକ୍ଷରେ। ଏହା ସର୍ବଜନ ସ୍ୱୀକୃତ।

ବିପ୍ଲବୀ ବିର୍ସାମୁଣ୍ଡା। ତାଙ୍କ ନେତୃତ୍ୱରେ ପରିଚାଳିତ ସଶସ୍ତ୍ର ବିଦ୍ରୋହ (୧୮୯୫-୯୯) ଇତିହାସର ଏକ ସ୍ମରଣୀୟ ଘଟଣା। ବିର୍ସା ଆଦିବାସୀ ସମାଜର ଏକ ବିରଳ ବ୍ୟକ୍ତିତ୍ୱ। ସୁନ୍ଦରଗଡ଼ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ ବିର୍ସାମୁଣ୍ଡା। ରାଜପୀଡ଼ନ, ଅତ୍ୟଧିକ ରାଜସ୍ୱ ଦାବୀ ଆଦିବାସୀଙ୍କ ବଞ୍ଚିବା ଦୁର୍ବିସହ କରିଦେଇଥିଲା। ବିର୍ସା ଦେଲେ ବିଦ୍ରୋହର ଆହ୍ୱାନ, ଶହଶହ ଆଦିବାସୀ ଏଥିରେ ଯୋଗଦେଲେ। ବିର୍ସାଙ୍କ ଆହ୍ୱାନ ଥିଲା, ଆଗୁଆ ରାଜଦାନ, ମହାରାଣୀ ରାଜା ଟୁଡୁ ଦାନ ଅର୍ଥାତ୍ ମହାରାଣୀ ଭିକ୍ଟୋରିଆ ଶାସନ ଲୋପ, ଆମ ରାଜ୍ୟ ପ୍ରତିଷ୍ଠା କର ଆମ ରାଜ୍ୟ ଆମର। ବ୍ରିଟିଶ ଆଇନ ମାନିବାକୁ





ଆଦିବାସୀମାନେ ଆଦୌ ପ୍ରସ୍ତୁତ ନଥିଲେ। ଛୋଟନାଗପୁର ଦୁର୍ଭେଦ୍ୟ ଅରଣ୍ୟରେ 'ଏକଟିଡିହ' ପର୍ବତ। ତା'ରି ଉପରେ ଏକ ସ୍ୱାଧୀନ ମୁକ୍ତରାଜ୍ୟ (ଏମ ସମାନ୍ତରାଳ ସରକାର) ଗଠନ କରିଥିଲେ ବିର୍ସା। ଶହଶହ ମୁଣ୍ଡା ଆପଣାର ପାରମ୍ପରିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିଲେ । ଅନାକଳନୀୟ ତାଙ୍କର ଉଦ୍ଦାମତା, ସେମାନେ ଏହି ପାହାଡ଼କୁ ଘେରି ରହିଲେ। ସେଠାକୁ ଫିରିଙ୍ଗି ଫଉଜ ପଶିବାକୁ ସାହସ ସଞ୍ଚାର କରିପାରୁନଥିଲେ। ୧୯୦୦ ମସିହା। ଜାନୁଆରୀ ୯ ତାରିଖ, ବିର୍ସା ଦେଲେ ଉତ୍ତେଜକ ଉଦ୍‌ବୋଧନ। ଆବାଳ ବୃଦ୍ଧ ବନିତା ବିଦ୍ରୋହୀ ଆଦିବାସୀ, ଚାଲିଲେ ଖାଦ୍ୟ ଅସ୍ତ୍ରଶସ୍ତ୍ର ସହ ଡୁମ୍ବାରୀ ପାହାଡ଼ ଉପରକୁ। ପାହାଡ଼ ଗୁହାରେ ରହିଲେ ଶିଶୁ, ମହିଳା । ବିଦ୍ରୋହୀଙ୍କ ଅସ୍ତ୍ରଶସ୍ତ୍ର ସେଇଠାରେ ଗଚ୍ଛିତ ରହିଲା। ମହିଳା ସଂଗ୍ରାମୀଙ୍କ ନେତୃତ୍ୱ ନେଲେ ହାରାମଣି ମୁଣ୍ଡା। ଧନୁଶର, ଫାର୍ଶାଠାରୁ ଆରମ୍ଭ କରି ପଥର ଖଣ୍ଡମାନ ଗଦେଇ ଦିଆଗଲା ପାହାଡ଼ ଉପରେ। ବିଦ୍ରୋହୀମାନଙ୍କର ରେରେକାର ଧ୍ୱନି ବନଭୂମି ପ୍ରକମ୍ପିତ କରିଦେଲା । କମିଶନର ଷ୍ଟ୍ରିଟ୍ ଫିଲ୍ଡ ଫଉଜଙ୍କ ସହ ପହଞ୍ଚିଲେ। ବିଦ୍ରୋହୀମାନଙ୍କୁ ଆତ୍ମସମର୍ପଣ କରିବାକୁ ନିର୍ଦ୍ଦେଶ ଦେଲେ। ହେଲେ ପାହାଡ଼ ଉପରୁ ଚିତ୍କାର ଶୁଭିଲା, ହଟିଯାଅ ପୁଲିସ, ଭାଗୋ ଷ୍ଟ୍ରିଟ୍ ଫିଲ୍ଡ। ଡୁମ୍ବାରୀ ପାହାଡ଼ ଦେଖିଲା ଏକ ଭୟାନକ ଯୁଦ୍ଧ। ରକ୍ତରଞ୍ଜିତ ହେଲା ଶହଶହ ମୁଣ୍ଡା ବିଦ୍ରୋହୀଙ୍କ ତତଲା ଲହୁରେ। ହଜାରିବାଗ ଜେଲରେ ବିର୍ସାଙ୍କ ସହଯୋଗୀ ସୁମନ ମୁଣ୍ଡା, ସୁଖରାମ ମୁଣ୍ଡା, ଡିଙ୍କିଆ ମୁଣ୍ଡା ମୃତ୍ୟୁଦଣ୍ଡ ପାଇଲେ। ବିର୍ସା ଜେଲଖାନାରେ ହଇଜାରେ ମୃତ ବୋଲି ଘୋଷଣା କରାଗଲା। ଏହା ସରକାରଙ୍କ ଚାଲ୍‌ବାଜି! ମହିଳା ମୁଣ୍ଡାଙ୍କ ନେତୃତ୍ୱ ନେଇଥିବା ହାରାମଣିଙ୍କ ସମ୍ପର୍କରେ ଇତିହାସ ନିରବ, ତଥାପି ତାଙ୍କର ତ୍ୟାଗ, ଦେଶପ୍ରେମ କିଛି କମ୍ ନଥିଲା।

ଭାରତର ମୁକ୍ତି ସଂଗ୍ରାମରେ ନେତାଜୀଙ୍କ ଭୂମିକା ଚିରସ୍ମରଣୀୟ। 'ରକ୍ତ ବିନିମୟରେ ସ୍ୱାଧୀନତା' ତାଙ୍କର ରାଜନୀତିକ ଆଦର୍ଶ। ଏଥିପାଇଁ ସେ ବ୍ରତୀ ହୋଇଥିଲେ। ୧୯୪୧ ମସିହା, ଜର୍ମାନରେ ବନ୍ଦୀ ଜୀବନ କଟାଇଥିବା କେତେକ ଭାରତୀୟ ସୈନ୍ୟଙ୍କୁ ନେଇ ସେ 'ଇଣ୍ଡିଆନ ରିଜିୟନ୍' ନାମରେ ଏକ ମୁକ୍ତି ବାହିନୀ ଗଢ଼ିଥିଲେ। ଅନ୍ୟତମ ବଙ୍ଗ ବିପ୍ଳବୀ ରାସ ବିହାରୀ ବୋଷ ଭାରତୀୟ ମୁକ୍ତିବାହିନୀ ଗଠନ କରିଥିଲେ। ଏଥିରେ ଥିଲେ ଜାପାନ ହାଜତରେ ବନ୍ଦୀଥିବା ଭାରତୀୟ ସୈନ୍ୟ। ପରବର୍ତ୍ତୀ ସମୟରେ ଆଇ.ଏନ୍.ଏ.ର ନେତୃତ୍ୱ ନେଲେ ନେତାଜୀ ସୁଭାଷ ବୋଷ। ବହୁ ଓଡ଼ିଆ ତାଙ୍କ ସହ ଯୋଗ ଦେଇଥିଲେ।

ସେସମୟରେ ନାରୀମାନଙ୍କୁ ନେଇ ଏକ ରେଜିମେଣ୍ଟ ଗଠନ କରାଯାଇଥିଲା। ଏହାର ନାମ ରଖାଯାଇଥିଲା 'ରାଣୀ ଝାନ୍‌ସୀ ରେଜିମେଣ୍ଟ'। ଏଥିରେ ଓଡ଼ିଆ ଝିଅ ରଜନୀଙ୍କ ପରି ଆଉ କେତେଜଣ ଯୋଗ ଦେଇଥିଲେ। ଏକଥା ଅଧିକ ଗବେଷଣା ସାପେକ୍ଷ। ଏ ସମସ୍ତ ଊର୍ଦ୍ଧ୍ୱରେ ଗାନ୍ଧିଜୀଙ୍କ ନେତୃତ୍ୱାଧୀନ ମୁକ୍ତି ସଂଗ୍ରାମରେ ଓଡ଼ିଶା ନାରୀମାନଙ୍କର ମଧ୍ୟ ଏକ ସ୍ୱତନ୍ତ୍ର ଭୂମିକା ଥିଲା।

ଊନବିଂଶ ଶତାବ୍ଦୀରେ ଆରମ୍ଭ ହେଲା ସମାଜ ସଂସ୍କାର ପ୍ରକ୍ରିୟା। ଏଥିରେ ରାଜା ରାମମୋହନ ରାୟ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଭୂମିକା ଉଲ୍ଲେଖଯୋଗ୍ୟ। ସମାଜରୁ ଅନ୍ଧବିଶ୍ୱାସ, କୁସଂସ୍କାର ଦୂରକରିବା ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ନାରୀ ମୁକ୍ତି ପାଇଁ ମଧ୍ୟ ସେମାନେ ଦୃଢ଼ ସ୍ୱର ଉଠାଇଥିଲେ। ଏହା ପୂର୍ବରୁ ନାରୀମାନେ ଅପରିକଳ୍ପନୀୟ ବନ୍ଦିନୀ ଜୀବନଯାପନ କରୁଥିଲେ। ସେମାନଙ୍କ ପାଇଁ ଶିକ୍ଷାଦୀକ୍ଷାର ବ୍ୟବସ୍ଥା ନଥିଲା। ପୁରୁଷପ୍ରଧାନ ସମାଜରେ ସେମାନେ ଘରକୋଣରୁ ଗୋଡ଼ କାଢ଼ି ପାରୁନଥିଲେ। ସାମାଜିକ ଅନୁଷ୍ଠାନରେ ବସାଉଠା ସେମାନଙ୍କ ପାଇଁ ଦିବା ସ୍ୱପ୍ନ ଥିଲା। ନାରୀମାନଙ୍କୁ ସାମାଜିକ ମର୍ଯ୍ୟାଦା ପ୍ରଦାନ କରିବାରେ ଗାନ୍ଧିଜୀଙ୍କ ଭୂମିକା ଚିର ଅଭୁଲା। ସେ ବାଧ୍ୟବାଧକତା ବୈଧବ୍ୟ, ବାଲ୍ୟବିବାହ, ପରଦା ପ୍ରଥା, ବହୁ ନାରୀ ବିବାହ, ପରଦା ପ୍ରଥା, ଅସ୍ପୃଶ୍ୟତା ନିବାରଣ ସହିତ ବହୁ ସାମାଜିକ କୁପ୍ରଥାକୁ ବିରୋଧ କରିଥିଲେ। ଓଡ଼ିଶା ସମେତ ସମସ୍ତ ଭାରତୀୟ ନାରୀଙ୍କୁ ନ୍ୟାଯ୍ୟ ଅଧିକାର ପ୍ରଦାନ ତାଙ୍କ ଆଦର୍ଶର ମୂଳ ଲକ୍ଷ୍ୟ ଥିଲା। ନାରୀ ଶିକ୍ଷା, ନାରୀ ସ୍ୱାଧୀନତା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ। ମୁକ୍ତି ସଂଗ୍ରାମରେ ନାରୀମାନଙ୍କ ଯୋଗଦାନକୁ ସେ ପ୍ରୋତ୍ସାହିତ କଲେ। ସେମାନେ ଉତ୍ସାହ ସହକାରେ ମୁକ୍ତିଯୁଦ୍ଧକୁ ଆଗେଇ ନେଲେ।

ଓଡ଼ିଶା ନାରୀ ପଛୁଆ, ଅନ୍ଧବିଶ୍ୱାସୀ, ଅଶିକ୍ଷିତା ଥିଲେ। ସେମାନଙ୍କର ରାଜନୀତି ସହ ସମ୍ପର୍କ ଆଦୌ ନଥିଲା।



ଗାନ୍ଧିଜୀ ପ୍ରଥମ ଥର ଓଡ଼ିଶା ଆସିଲେ (୧୯୨୧)। ଅସହଯୋଗ ଆନ୍ଦୋଳନରେ ବାର୍ତ୍ତା ପ୍ରଚାର କଲେ, ଓଡ଼ିଶାବାସୀଙ୍କୁ ରାଜନୀତିକ ସଚେତନ କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ। କଟକର ବିନୋଦ ବିହାରୀଠାରେ ଗୋଟେ ସଭା ଆୟୋଜନ କରାଯାଉଥିଲା। ଏଥିରେ ୪୦ ଜଣ ମହିଳା ଯୋଗ ଦେଇଥିଲେ। ଗୋଟେ ନାରୀର କର୍ତ୍ତବ୍ୟବୋଧ, ସମାଜର ଅଗ୍ରଗତିରେ ତା'ର ଭୂମିକା ଉପରେ ସେ ଆଲୋକପାତ କରିଥିଲେ। ନାରୀର ସ୍ଥାନ ରୋଷେଇଶାଳରେ ଏ କଥାଟି ପ୍ରାଚୀନ ବର୍ବରତା – ଏହା ମଧ୍ୟ ବ୍ୟକ୍ତ କଲେ। ତାଙ୍କ ଭାଷଣରେ ଗଭୀରଭାବେ ପ୍ରଭାବିତ ହେଲେ ରମାଦେବୀ। ଘଟଣାସ୍ଥଳରେ ଆପଣା ଅଙ୍ଗରୁ ସମସ୍ତ ମୂଲ୍ୟବାନ ଅଳଙ୍କାର ବାହାର କରିଦେଲେ। ଏଗୁଡ଼ିକୁ ତିଲକ ସ୍ୱରାଜ ପାଣ୍ଠିକୁ ଦାନ କରିଦେଲେ। ଜାତୀୟ ମୁକ୍ତି ସଂଗ୍ରାମରେ ରମାଦେବୀ, ମାଳତୀ ଦେବୀ, ଗୋଦାବରୀ ଦେବୀ, ସୁଭଦ୍ରା ଦେବୀ (ସମସ୍ତେ ସମ୍ଭ୍ରାନ୍ତ ବଂଶୀୟା) ଯୋଗଦେଲେ। ଏମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଶହଶହ ମହିଳା ସତ୍ୟାଗ୍ରହୀ ମୁକ୍ତି ସଂଗ୍ରାମକୁ ତ୍ୱରାନ୍ୱିତ କଲେ। ଓଡ଼ିଶାର ନାରୀଶିକ୍ଷା ସେଭଳି ଅଗ୍ରଗତି କରିନଥିଲା। ତଥାପି ଏମାନଙ୍କର ମୁକ୍ତି ସଂଗ୍ରାମରେ ଭୂମିକା ଥିଲା ଆକର୍ଷଣୀୟ। ହଜାର ହଜାର ଓଡ଼ିଆଣୀ ମୁକ୍ତି ଯୁଦ୍ଧକୁ ଆଗେଇ ନେଉଥିଲେ, ପୋଲିସ ନିର୍ଯାତନା, ଜେଲଖାନାକୁ ଭ୍ରୂକ୍ଷେପ କରିନଥିଲେ। ସେମାନେ ବିଭିନ୍ନ ମିଆଦର କାରାକଷଣ ବି ଭୋଗିଥିଲେ। ଦିଲ୍ଲୀ ପରି ମହାନଗରୀରେ ମୁକ୍ତି ସଂଗ୍ରାମକାଳୀନ ନାରୀବନ୍ଦୀଙ୍କ ସଂଖ୍ୟା ଥିଲା ୧୬୮୦। ଏହା ତୁଳନାରେ ଓଡ଼ିଶାର ସଂଖ୍ୟା ବହୁ ଅଧିକ। ଏ କଥାଟି ମଧ୍ୟ ସର୍ବଶ୍ରେଷ୍ଠ ଆଶାବାଦୀଟି ବିଶ୍ୱାସ କରିପାରୁ ନଥିଲା।

ମୁକ୍ତି ସଂଗ୍ରାମକୁ ଜାତୀୟତାବାଦୀ ସାହିତ୍ୟିକ/ ସାହିତ୍ୟିକାମାନେ ବହୁ ଭାବରେ ପ୍ରଭାବିତ କରିଥିଲେ। ନାରୀମାନଙ୍କୁ ଏଥିରେ ସକ୍ରିୟ ଅଂଶଗ୍ରହଣ କରିବାକୁ ତାଙ୍କ ଉଦ୍‌ବୋଧନୀ ଗୀତ ପ୍ରୋତ୍ସାହନ ଦେଲା। ସେହି ଲେଖକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ବାଞ୍ଛାନିଧି ଦାସ, ବୀରକିଶୋର ମହାନ୍ତି, କୁନ୍ତଳା କୁମାରୀ ସାବତଙ୍କର ପରି ଆଉ କେତେଜଣ ଉଚ୍ଚକୋଟୀର ସାହିତ୍ୟିକ। ଗାନ୍ଧିଜୀଙ୍କ ଉଚ୍ଚ ଆଦର୍ଶ ତାଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା। କୁନ୍ତଳା କବିତା ମାଧ୍ୟମରେ ଓଡ଼ିଶାର ଗତଗୌରବ, ହୃତଗୌରବ କଥା ମନେ ପକାଇ ଦେଉଥିଲେ। ତା'ରି ମଧ୍ୟରେ ଉଭୟ ନାରୀ, ପୁରୁଷଙ୍କ ମଧ୍ୟରେ ଦେଶାତ୍ମବୋଧ ସୃଷ୍ଟି କରିଥିଲେ। କୁନ୍ତଳା ନାରୀକୁ ଦାସତ୍ୱ ବନ୍ଧନରୁ ମୁକ୍ତି କରିବା ପାଇଁ ଆହ୍ୱାନ ଦେଇଥିଲେ। ବାଲ୍ୟବିବାହ, ସତୀପ୍ରଥା ବିରୁଦ୍ଧରେ ସ୍ୱରୋତ୍ତଳନ କରିବା ସଙ୍ଗେ ସଙ୍ଗେ ବିଧବାର ପୁନର୍ବିବାହ ସପକ୍ଷବାଦିନୀ ଥିଲେ। ଓଡ଼ିଶାରେ କଂଗ୍ରେସ କାର୍ଯ୍ୟକ୍ରମକୁ ସେ କବିତା, ପ୍ରବନ୍ଧ ମାଧ୍ୟମରେ ପ୍ରୋତ୍ସାହିତ କରିଥିଲେ। ଓଡ଼ିଶାର ନାରୀମାନଙ୍କ ସହିତ ସାଧାରଣ ଅଶିକ୍ଷିତ ମଳିମୁଣ୍ଡିଆଙ୍କୁ ଗଭୀର ଭାବେ ଉଦ୍‌ବୋଧିତ କରିଥିଲେ। ଦେଶାତ୍ମବୋଧକ କବିତା ମଧ୍ୟରେ ଦେଶପ୍ରୀତି ଜାଗରଣ କରିବାରେ ଉତ୍କଳୀୟ ନାରୀ କୁନ୍ତଳା ଅଗ୍ରଗଣ୍ୟା। ଫଳରେ ଓଡ଼ିଶାର ନାରୀମାନେ ସ୍ୱଦେଶୀ ଆନ୍ଦୋଳନରେ ଅଧିକ ସକ୍ରିୟ ଥିଲେ। ଅସହଯୋଗ ଆନ୍ଦୋଳନରେ ବହୁଳ ଭାବେ ଅଂଶଗ୍ରହଣ କରିଥିଲେ।

ଗାନ୍ଧିଜୀ ମାର୍ଚ୍ଚ ମାସ ୧୯୨୧ ମସିହାରେ ଓଡ଼ିଶାରେ ଆସିଥିଲେ। ଉତ୍କଳ କଂଗ୍ରେସ ତରଫରୁ କଟକ, ସତ୍ୟବାଦୀ, ଭଦ୍ରକ, ବ୍ରହ୍ମପୁରରେ ସଭାସମିତିମାନ ଆୟୋଜିତ ହୋଇଥିଲା। ତାଙ୍କ ଛ'ଅ ଦିନ ରହଣି ମଧ୍ୟରେ କଂଗ୍ରେସ କମିଟି ୨୧୦୦୦ ଟଙ୍କା ତିଲକ ସ୍ୱରାଜ ପାଣ୍ଠି ସଂଗ୍ରହ କଲା। ୩୯୦୦୦ କଂଗ୍ରେସର ସଭ୍ୟ ହେଲେ, ଏମାନଙ୍କ ମଧ୍ୟରେ ମହିଳାମାନଙ୍କ ସଂଖ୍ୟା କିଛି କମ୍ ନଥିଲା। ୧୬୦୦୦ ଚରଖାଦ୍ୱାରା ଖଦି କାର୍ଯ୍ୟକ୍ରମ ଆରମ୍ଭ ହେଲା। ବିଦେଶୀ ମଦ ଦୋକାନ ଆଗରେ ମହିଳା ସତ୍ୟାଗ୍ରହୀମାନେ ଧାରଣା ଦେଲେ । ବିଦେଶୀ ବସ୍ତ୍ର ବର୍ଜନ ପାଇଁ ଜନତାଙ୍କୁ ପ୍ରବର୍ତ୍ତାଇଲେ। ଖଦି କାର୍ଯ୍ୟକ୍ରମ, ଚରଖାରେ ସୂତାକାଟିବା ଆଦି ରଚନାତ୍ମକ କାର୍ଯ୍ୟକୁ ତ୍ୱରାନ୍ୱିତ କଲେ। କେତେକ ସ୍ଥାନରେ ସର୍ବସାଧାରଣରେ ବିଦେଶୀ ବସ୍ତୁରେ ଅଗ୍ନି ସଂଯୋଗ କଲେ। ରମାଦେବୀ ତାଙ୍କ ମାମୁଁଘର ଆଗରେ ବିଦେଶୀ ବସ୍ତ୍ରକୁ ପୋଡ଼ିଲେ। ତାଙ୍କ ମାମୁଁ ଏହାର ଫଳ ସମ୍ପର୍କରେ ପଚାରିଲେ, ଫଳ ଭଗବାନଙ୍କ ହାତରେ ବୋଲି ସେ କହିଥିଲେ। ଏ ଉତ୍ତର ତାଙ୍କ ମାମୁଁଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା। ରମାଦେବୀ, ମାଳତୀଦେବୀଙ୍କ ସହ ଶହଶହ ନାରୀ ସତ୍ୟାଗ୍ରହୀ ଯୋଗଦେଲେ, ସେମାନେ ବିଭିନ୍ନ ସ୍ଥାନ ବୁଲିଲେ। ସରକାରୀ ସ୍କୁଲ, କଲେଜ ବର୍ଜନ ପାଇଁ ପରାମର୍ଶ ଦେଲେ,





ଜାତୀୟ ଶିକ୍ଷା ଗ୍ରହଣ ପାଇଁ ଜନଜାଗରଣ ସୃଷ୍ଟି କଲେ । ମହିଳା ସତ୍ୟାଗ୍ରହୀମାନେ ସମ୍ପୂର୍ଣ୍ଣ ଭାବେ ଅହିଂସା ଆନ୍ଦୋଳନ ଚଳାଇଲେ । ସେମାନଙ୍କ କଥାରେ, କାମରେ ବ୍ୟତିକ୍ରମ ନଥିଲା । ଦୂରବର୍ତ୍ତୀ ଗାଁମାନଙ୍କୁ ସେମାନେ କେବେ ଚାଲିଚାଲି ତ କେବେ ଶଗଡ଼ ଗାଡ଼ିରେ ଯାତ୍ରା କଲେ । ସନ୍ଧ୍ୟା ସମୟରେ କଂଗ୍ରେସର ପ୍ରଚାରପତ୍ର ବାଣ୍ଟିଲେ । ବ୍ରିଟନ ପୁଲିସ ସେତେବେଳେ ମହାପ୍ରତାପୀ ଥିଲେ । କେତେବେଳେ ଶଗଡ଼ିଆ ଡରି ସତ୍ୟାଗ୍ରହୀଙ୍କୁ ନେଉନଥିଲା ତ କେଉଁ ଗାଁବାଲା ଖାଇବାକୁ ଗଣ୍ଡେ ଦେଉନଥିଲେ । ଅର୍ଦ୍ଧାହାର, ନତୁବା ସ୍ୱଳ୍ପାହାରରେ ସେମାନେ ଦିନ କାଟୁଥିଲେ, ତଥାପି କର୍ତ୍ତବ୍ୟରୁ ବିରତ ହୋଇନଥିଲେ । ଅସହଯୋଗକାଳୀନ ଓଡ଼ିଶା ନାରୀ ଜାଗରଣ ଖୁବ୍ ଉତ୍ସାହଜନକ ଥିଲା । କେତେକ ରକ୍ଷଣଶୀଳ ପରିବାର ସେମାନଙ୍କର କୁଳ ବଧୂଙ୍କୁ ଏରୁଣ୍ଡି ଡେଇଁବାକୁ ଦେଇଥିଲେ । ସେମାନଙ୍କ ମଧ୍ୟରୁ କେତେକ ମୁକ୍ତି ସଂଗ୍ରାମରେ ଯୋଗଦେବାକୁ ଜିଦ୍ ଧରିଲେ । ଆଉ କିଏ ଅନଶନ ଆରମ୍ଭ କଲେ । ଜଣେ ମାତ୍ର ମହିଳା ଆଧାରମଣି ଦେବୀ ପରିବାର ଉପରେ ତୀବ୍ର ଚାପ ପକାଇଲେ । ଶେଷରେ ତାଙ୍କ ଲକ୍ଷ୍ୟ ସାଧନ କରି ପାରିଥିଲେ । ମୁକ୍ତି ସଂଗ୍ରାମରେ ଯୋଗଦେଇ ସେ ଅନ୍ୟମାନଙ୍କ ଆଖି ଖୋଲି ଦେଇଥିଲେ ।

ଗାନ୍ଧିଜୀ ପୁନର୍ବାର ଓଡ଼ିଶା ଆସିଲେ (୧୯୨୭) । ସେତେବେଳକୁ ଓଡ଼ିଶାର ନାରୀ ସତ୍ୟାଗ୍ରହୀମାନେ ବେଶ୍ ଉତ୍ସାହିତ ଥିଲେ । ଏଥର ବାଲେଶ୍ୱର ଜିଲ୍ଲା ମହିଳାମାନେ ଅଧିକ ଉତ୍ସାହିତ ହେଲେ, ସେମାନଙ୍କ ପରିବାରବର୍ଗଙ୍କୁ ପ୍ରଭାବିତ କରି ମୁକ୍ତି ସଂଗ୍ରାମରେ ଅଧିକ ସକ୍ରିୟ ହେଲେ । ଗାନ୍ଧୀ ସେତେବେଳେ ନାରୀମାନଙ୍କୁ ଦେବୀତୁଲ୍ୟ ଭକ୍ତି କରୁଥିଲେ, ସମ୍ମାନ ଦେଉଥିଲେ । ମହିଳାମାନେ ମଧ୍ୟ ତାଙ୍କୁ ସମ୍ମାନ ଦେଲେ । ବହୁ ଭାବରେ ତାଙ୍କ ଆଦର୍ଶର ଅନୁଗାମିନୀ ହେଲେ । କଂଗ୍ରେସ ଲାହୋର ଅଧିବେଶନରେ ପୂର୍ଣ୍ଣସ୍ୱରାଜ ପ୍ରାପ୍ତି ପ୍ରସ୍ତାବ ଗୃହୀତ ହେଲା । ଗାନ୍ଧିଜୀ ଚଳାଇଲେ ଲବଣ ସତ୍ୟାଗ୍ରହ । ମାର୍ଚ୍ଚ ୧୨, ୧୯୩୦ ମସିହାରେ ଐତିହାସିକ ଦାଣ୍ଡିଯାତ୍ରା ଆରମ୍ଭ ହେଲା । ଗୁଜୁରାଟ ସମୁଦ୍ର କୂଳରେ ଥିବା ଦାଣ୍ଡିଠାରେ ଗାନ୍ଧିଜୀ ତାଙ୍କ ସମର୍ଥକଙ୍କ ସହ ସବିନୟ ଲବଣ ଆଇନ ଭଙ୍ଗ କଲେ । ବାଲେଶ୍ୱର ଉପକୂଳ ଇଞ୍ଚୁଡ଼ି, ଇରମଠାରେ ଲବଣ ଆଇନ ଭଙ୍ଗ ସ୍ଥିରୀକୃତ ହେଲା । ୬ ଏପ୍ରିଲ, ୧୯୩୦ । ଆଚାର୍ଯ୍ୟ ହରିହର ଦାସ, ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଇଞ୍ଚୁଡ଼ିଠାରେ ଲବଣ ଆଇନ ଭଙ୍ଗ ନିଷ୍ପତ୍ତି ହେଲା । କଟକର ସ୍ୱରାଜ ଆଶ୍ରମରୁ ବାହାରିଲା ଶୋଭାଯାତ୍ରା । ମାଳତୀ ଦେବୀ, ରମାଦେବୀ ତାଙ୍କର ବହୁ ମହିଳା ସତ୍ୟାଗ୍ରହୀଙ୍କ ସହ ଏଥିରେ ଯୋଗ ଦେଲେ । ଇଞ୍ଚୁଡ଼ି ପାଲଟିଲା ସତ୍ୟାଗ୍ରହୀଙ୍କ ତୀର୍ଥକ୍ଷେତ୍ର । ବିନା ପ୍ରତିବାଦରେ ସତ୍ୟାଗ୍ରହୀମାନେ କାରାବରଣ କଲେ । କେବଳ ସେତିକି ନୁହେଁ ବିଦେଶୀ ବସ୍ତ୍ର ବର୍ଜନ ବାଲେଶ୍ୱରରେ ଜୋର୍‌ଦାର ହେଲା । ଏଥିରେ ଅଧିକ ମହିଳା ଅଂଶଗ୍ରହଣ କରିଥିବା ଗୋଟେ ବିବରଣୀରୁ ତଥ୍ୟ ମିଳିଥାଏ । ଭଦ୍ରକ ଏହି କାର୍ଯ୍ୟକ୍ରମରେ ଖୁବ୍ ସଫଳତା ପାଇଲା । ସମ୍ଭ୍ରାନ୍ତ ବଂଶୀୟା ସୁଭଦ୍ରା ଦେବୀ (ହରେକୃଷ୍ଣ ମହତାବଙ୍କ ଧର୍ମପତ୍ନୀ)ଙ୍କ ମୁକ୍ତିସଂଗ୍ରାମରେ ସକ୍ରିୟ ଅଂଶଗ୍ରହଣ ଅନେକ ମହିଳାଙ୍କୁ ଉତ୍ସାହିତ କରିଥିଲା । ଜାତୀୟତାବାଦୀ ନିଧିରାମ ବେହେରାଙ୍କ ପତ୍ନୀ ମୂଷୀଦେବୀ, ଅନ୍ୟଜଣେ ଜାତୀୟତାବାଦୀ ଦାମୋଦର କରଙ୍କ ଭଗ୍ନୀ ଅହଲ୍ୟା ଦେବୀ ତାଙ୍କ ସହ ଯୋଗଦେଇଥିଲେ । ଖଦଡ଼, ହରିଜନ କାର୍ଯ୍ୟକ୍ରମ ଅଭୂତପୂର୍ବ ସଫଳତା ପାଇଲା । ହରେକୃଷ୍ଣ ମହତାବ ଭଦ୍ରକରେ 'କର୍ମମନ୍ଦିର'ଟିଏ ଆରମ୍ଭ କଲେ । ଏଥିରେ ଉଭୟ ମହିଳା, ପୁରୁଷଙ୍କ ସହ ବାଳ ସତ୍ୟାଗ୍ରହୀ (ବାନର ସେନା)ମାନେ ଯୋଗଦେଲେ । ପାଠପଢ଼ା, ସାହିତ୍ୟ ଶିକ୍ଷା, ରଚନାତ୍ମକ କାର୍ଯ୍ୟକ୍ରମ ଉପରେ କର୍ମ ମନ୍ଦିରରେ ଅଧିକ ଗୁରୁତ୍ୱ ଦିଆଗଲା, ସଫଳତା ବି ମିଳିଲା ।

ବାଲେଶ୍ୱର ଜିଲ୍ଲାର ଅନ୍ୟ ନାରୀ ସତ୍ୟାଗ୍ରହୀମାନଙ୍କ ମଧ୍ୟରେ ଜାହ୍ନବୀ ଦେବୀ, କୋକିଳା ଦେବୀ, କୃଷ୍ଣପ୍ରିୟା ଦାସ, କ୍ଷେତ୍ରମଣି ଦେବୀ, ଗୋଦାବରୀ ଦେବୀ ପ୍ରମୁଖଙ୍କ ନାମ ବହୁ ପରିଚିତ । କେବଳ ରମାଦେବୀ, ମାଳତୀଦେବୀ, ସୁଭଦ୍ରା ଦେବୀ, ସରଳା ଦେବୀ ନୁହନ୍ତି, ଅନେକ ଆଗଧାଡ଼ିର ନାରୀ ସତ୍ୟାଗ୍ରହୀଙ୍କୁ ପୋଲିସ ବନ୍ଦୀ କରିଥିଲା, ସେମାନେ ବିଭିନ୍ନ ସମୟ ପାଇଁ କାରାକଷଣ ସହିଥିଲେ କିନ୍ତୁ ହତୋତ୍ସାହ ହୋଇନଥିଲେ ।

ଲବଣ ସତ୍ୟାଗ୍ରହ ଉପକୂଳ ଅଞ୍ଚଳ କୁଜଙ୍ଗରେ ମଧ୍ୟ ସଫଳତା ଲାଭକଲା । କଟକଠାରେ ଗୋଟେ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା (୨୨ ଏପ୍ରିଲ ୧୯୩୦) । ଏଥିରେ ସଭାପତି ଆସନରେ ଥିଲେ ନାରୀନେତ୍ରୀ କୁମୁଦିନୀ ଦାସଗୁପ୍ତା ।

ସେଠାରେ ଉପସ୍ଥିତ ନାରୀମାନେ ବହୁ ଭାବରେ ଉତ୍ସାହିତ ହେଲେ। ମେ ୮ ତାରିଖ, ୧୯୩୦ ମସିହା, ଓଡ଼ିଶା ପ୍ରଦେଶ କମିଟି କୁଜଙ୍ଗରେ ଲବଣ ଆଇନ ଭଙ୍ଗ ନିଷ୍ପତ୍ତି ନେଲା। ରମାଦେବୀ, ମାଳତୀଦେବୀ, ନାରାୟଣ ବୀରବର ସାମନ୍ତ ଏହାର ନେତୃତ୍ୱ ନେଲେ। କୁଜଙ୍ଗର ରାଣୀ ପାଟମହାଦେଈ ଏଥିରେ ଯୋଗଦେଲେ। ଜଣେ ମାଜିଷ୍ଟ୍ରେଟଙ୍କ ଉପସ୍ଥିତି ସତ୍ତ୍ୱେ, ଶହଶହ ଉତ୍ସାହିତ ନାରୀ ରମାଦେବୀ, ରାଣୀ ପାଟମହାଦେଈଙ୍କ ସହ ଲବଣ ଆଇନ ଭଙ୍ଗ କଲେ। ଗଞ୍ଜାମରେ ମଧ୍ୟ ଲବଣ ଆଇନ ଭଙ୍ଗ ସଫଳତା ପାଇଲା।

ଭାରତୀୟ ଜାତୀୟ କଂଗ୍ରେସ ଜାନୁଆରୀ ୨୬କୁ ସ୍ୱାଧୀନତା ଦିବସ ରୂପେ ପାଳନକରିବାକୁ ସିଦ୍ଧାନ୍ତ କରିଥିଲା। ଓଡ଼ିଶାର ମହିଳା ସତ୍ୟାଗ୍ରହୀମାନେ ତାହା ପାଳନ କଲେ। ରମାଦେବୀ ସ୍ୱାଧୀନତା ଦିବସ ସତ୍ୟପାଠ କରି ଚୌଧୁରୀବଜାରଠାରେ ଗିରଫ ହେଲେ (୨୬ ଜାନୁଆରୀ ୧୯୩୨)। ଅନୁରୂପ ଭାବେ କିରଣବାଳା ସେନ୍ ତାଙ୍କ ସହ ଆଉ ଦୁଇଜଣ ମହିଳା ସତ୍ୟାଗ୍ରହୀ ବକ୍ସିବଜାର, କଟକଠାରେ, ହାରାମଣି ଦେବୀ (ପୁରୀ), ଗୌରୀଦେବୀ, ଜାହ୍ନବୀଦେବୀ (ବାଲେଶ୍ୱର), ନୀଳମଣି ଦେବୀ, ଶ୍ରଦ୍ଧାମଣି ଦେବୀ (ସାକ୍ଷୀଗୋପାଳ), ଆଶାଲତା ଦେବୀ, ମାଳତୀ ଦେବୀ ଜଗତ୍‌ସିଂହପୁରଠାରେ ଗିରଫ ହୋଇଥିଲେ। ମାଳତୀଦେବୀଙ୍କୁ ତାଙ୍କ ଶିଶୁ ସନ୍ତାନ ସହ ହଜାରୀବାଗ ଜେଲ୍‌କୁ ପଠାଇ ଦିଆଯାଇଥିଲା। ସରଳାଦେବୀ, ଆଶାଲତା ଦେବୀ ପ୍ରତ୍ୟେକ ତିନିଶହ ଟଙ୍କା ଜୋରିମାନାରେ ମୁକୁଳି ଥିଲେ। ରମାଦେବୀ, ଶ୍ରଦ୍ଧାମଣି ଦେବୀ ଏକମାସ ଜେଲଦଣ୍ଡ ଭୋଗିଲେ। କେବଳ ନେତ୍ରୀ ନୁହନ୍ତି, ବହୁ ପରିମାଣରେ ସାଧାରଣ ନାରୀ ସତ୍ୟାଗ୍ରହୀ ବି କାରାବରଣ କରିଥିଲେ। ସେମାନଙ୍କ ମଧ୍ୟରେ କିରଣବାଳା ସେନ୍, କୋକିଳା ଦେବୀ, କୁମୁଦିନୀ ଦେବୀ, ସୁନ୍ଦରମଣି ଦେବୀ, ରାଧାମଣି ଦେବୀ ଅନ୍ତର୍ଭୁକ୍ତ। ଏତଦ୍‌ଭିନ୍ନ କ୍ଷେତ୍ରମଣି ଦେବୀ, କୌଶଲ୍ୟା ଦେବୀ, ଛାୟାଦେବୀ, ପ୍ରିୟମ୍ବଦା ଦେବୀ, ହରପ୍ରିୟା ଦେବୀ, ଆଧାରମଣି ଦେବୀ, ହୀରାମଣୀ ଦେବୀ, ଆଶାଲତା ଦେବୀ, ଶୁଶିଳା ଘୋଷ, ସୁନ୍ଦର ଦେବୀ, ମୋହିନୀ ଦେବୀ, କଲ୍ୟାଣୀ ଦେବୀ, ନିଶାମଣି ଦେବୀ, ମଙ୍ଗଳା ସେନ୍, ଝୁଲେଇ ବେଓ୍ୱା, ଲକ୍ଷ୍ମୀବାଈ ଗିରି ପ୍ରମୁଖ ପୋଲିସ ନିର୍ଯାତନାର ଶିକାର ହୋଇଥିଲେ। ଏହା ସତ୍ତ୍ୱେ ଏମାନେ ହିମାଳୟ ପରି ସୁଦୃଢ଼ ଥିଲେ। ପ୍ରତିଜ୍ଞା ସ୍ୱାଧୀନତା ପ୍ରାପ୍ତି ନଚେତ୍ ଜୀବନପାତ। ଏଇଟି ଓଡ଼ିଆ ନାରୀଙ୍କ ଅପୂର୍ବ ଦେଶପ୍ରେମର ନମୁନା।

ଭାରତଛାଡ଼ ଆନ୍ଦୋଳନ (୧୯୪୨)ରେ ଓଡ଼ିଶାର ଭୂମିକା ମହତ୍ତ୍ୱପୂର୍ଣ୍ଣ। ହଜାର ହଜାର ପୁରୁଷ ନାରୀ ଏଥିରେ ଯୋଗଦେଲେ। ଜେଲଖାନାକୁ ତୀର୍ଥକ୍ଷେତ୍ର ମଣିଲେ। ପୁଲିସ ଲାଠି, ଗୋଇଠାମାଡ଼କୁ ଫୁଲହାର ଭାବି ସ୍ୱାଗତ କଲେ। ଶହଶହ ସଭାସମିତି, ହରତାଳ, ଶୋଭାଯାତ୍ରାମାନ ଚାଲିଲା। ଅଗଷ୍ଟ ବିପ୍ଳବରେ ଗାନ୍ଧିଜୀଙ୍କ କାରାବାସର ବାର୍ତ୍ତା ଓଡ଼ିଶାରେ ପ୍ରଚାର କଲେ ନାରୀନେତ୍ରୀମାନେ। ଏଥିପାଇଁ ୨୪ ଜଣ ଗିରଫ ହେଲେ। ସେମାନଙ୍କ ମଧ୍ୟରେ ରମାଦେବୀଙ୍କ ନାମୋଲ୍ଲେଖଯୋଗ୍ୟ। କାଇପଡ଼ା, କଳାମାଟିଆଠାରେ ପୁଲିସ ସତ୍ୟାଗ୍ରହୀମାନଙ୍କ ଉପରେ ଗୁଳିଚାଳନା କଲା (୨୦ ଅଗଷ୍ଟ, ୧୯୪୨)। ରମାଦେବୀ, ନବକୃଷ୍ଣ ଚୌଧୁରୀ ଘଟଣାସ୍ଥଳରେ ପହଞ୍ଚିଲେ। ଅନ୍ୟତମ ତୁଙ୍ଗ ନାରୀନେତ୍ରୀ ଅନ୍ନପୂର୍ଣ୍ଣା ମହାରଣା। ସେ ସନ୍ନ୍ୟାସୀପୁରଠାରେ ଏକ ସଭାରେ ଭାଷଣ ଦେଉଥିଲେ। ଖବର ପାଇ ତତ୍‌କ୍ଷଣାତ୍ କାଇପଡ଼ା ଚାଲିଲେ। ପୋଲିସ ସତ୍ୟାଗ୍ରହୀ ନେତାଙ୍କୁ ଅଣ୍ଟାରେ ଦଉଡ଼ି ବାନ୍ଧି ଘୋଷାରି ଘୋଷାରି ନେଉଥିଲେ। ଶହଶହ ଜନତା ଏହାକୁ ବିରୋଧ କଲେ, ନେତାଙ୍କୁ ଛାଡ଼ିବାକୁ ଜିଦ୍ ଧରି ବସିଲେ। ଅନ୍ନପୂର୍ଣ୍ଣା, ତାଙ୍କ ବିଶ୍ୱସ୍ତ ସହଯୋଗୀମାନେ ଗିରଫ ନେତାଙ୍କୁ ଛାଡ଼ିଦେବା ପାଇଁ ଦାବୀ କଲେ। ପୁଲିସ କର୍ଣ୍ଣପାତ କଲେନି, ଜନତା ଉତ୍ତ୍ୟକ୍ତ ହେବାରୁ ଆହୁରି କେତେଜଣଙ୍କୁ ବାନ୍ଧି ପକାଇଲେ। ପରିସ୍ଥିତି ଅଣାୟତ୍ତ ହେଲା। ନିଶସ୍ତ୍ର ସତ୍ୟାଗ୍ରହୀଙ୍କ ଉପରକୁ ଉତ୍ତ୍ୟକ୍ତ ପୁଲିସ ଗୁଳି ଚଳାଇଲେ। କେତେଜଣ ସେଇଠି ଟଳି ପଡ଼ିଲେ।

ସାରାଦେଶରେ 'ଅଗଷ୍ଟ ବିପ୍ଳବ' ଜୋରଦାର ହେଲା। ଭଦ୍ରକ ବାସୁଦେବପୁର ଥାନା ଅନ୍ତର୍ଗତ 'ଇରମ'ଠାରେ ଘଟିଲା ନାରକୀୟ ଘଟଣାଟିଏ (୨୮ ସେପ୍ଟେମ୍ବର ୧୯୪୨)। ଇରମଠାରେ ସତ୍ୟାଗ୍ରହୀମାନେ ଲଗାତର ସଭା କରୁଥିଲେ। ସମାନ୍ତରାଳ ସରକାର ବି ଚଳାଇଲେ। ସେମାନେ ବାସୁଦେବପୁର ଥାନା ପୋଡ଼ିବାକୁ ଉଦ୍ୟମ କଲେ। ବାସୁଦେବପୁର ୟୁନିୟନ ପ୍ରେସିଡେଣ୍ଟଙ୍କୁ ଇସ୍ତଫା ଦେବାକୁ ବାଧ୍ୟ କଲେ। ଏଥି ସହିତ ଜମିଦାରମାନଙ୍କୁ ନିଜପକ୍ଷ ସମର୍ଥନ ପାଇଁ ଅନୁରୋଧ କଲେ।





ସେପ୍ଟେମ୍ବର ୨୮, ୧୯୪୨। ଇରମ୍ ମେଳଣ ପଡ଼ିଆରେ ସମବେତ ଥିଲେ ୬୦୦୦ରୁ ୭୦୦୦ ସତ୍ୟାଗ୍ରହୀ। ଇଞ୍ଚିଟିଏ ଜାଗା ଫାଙ୍କା ନଥିଲା। ସେମାନଙ୍କ ମଧ୍ୟରେ ଅନେକ ଥିଲେ ମହିଳା। ହଠାତ୍ ପୁଲିସ ଆସିଲେ, ଘଟଣା କ'ଣ ଜାଣିବା ପୂର୍ବରୁ ୨୯ ଜଣ ପୁଲିସ ଗୁଳିରେ ଟଳିପଡ଼ିଲେ, ଗୁରୁତର ଆହତ ହେଲେ ୫୫ ଜଣ। ଇରମ ପଡ଼ିଆ ସାକ୍ଷୀ, ସେଇ ଯନ୍ତ୍ରଣାକାତର ହୃଦୟ ବିଦାରକ, ବୀଭତ୍ସ ଦୃଶ୍ୟର। ଏଇଟି ଇତିହାସର ଦ୍ୱିତୀୟ ଜାଲିଆନାୱାଲାବାଗ ନରସଂହାର। ଗଣହତ୍ୟାର ଖଳନାୟକ ଡି.ଏସ୍.ପି. କୁଞ୍ଜବିହାରୀ ମହାନ୍ତି। ପୁଲିସ ଗୁଳିରେ ଟଳି ପଡ଼ିଥିଲେ ପରିବେୱା ନାମ୍ନୀ ସତ୍ୟାଗ୍ରହୀ। ଇରମ ପଡ଼ିଆରେ ଠିଆ ହେଇଛି ଶହୀଦ ସ୍ମୃତିସ୍ତମ୍ଭ। ତା'ରି ଛାତିରେ ପରିବେୱା ନାଁଟି ଚିର ଭାସ୍ୱର। ମନେ ପକେଇ ଦେଉଛି ସେହି ଜହ୍ଲାଦ ଫିରିଙ୍ଗି ଫଉଜଙ୍କ ନରସଂହାରକୁ। ସୋନପୁରରେ ଇଂରେଜଙ୍କ ଅତ୍ୟଧିକ ଖଜଣା ଆଦାୟକୁ ଦୃଢ଼ ବିରୋଧ କରାଯାଇଥିଲା। ଏହାର ପ୍ରତିବାଦରେ ଶୋଭାଯାତ୍ରାଟିଏ ବାହାରିଲା। ଆଗରେ ସ୍ଲୋଗାନ ଦେଇ ଚାଲିଲେ ଗୁରୁବାରୀ ମେହେର। ବ୍ରିଟିଶ ଫଉଜ ଗୁଳି ଚଳାଇଲେ। ମହିଳା ସତ୍ୟାଗ୍ରହୀ 'ଗୁରୁବାରୀ' ଶହୀଦ ହେଲେ। କୋରାପୁଟର ଦୁଇ ଆଦିବାସୀ ମହିଳା ପୁଲିସ ନିର୍ଯାତନାର ଶିକାର ହେଲେ (ମେସକାସାନୀ, ସୁବର୍ଣ୍ଣା ଲହରା)। ଏମାନେ ଦେବୁଗାଁ ପୁଲିସ ଷ୍ଟେସନ ଅଞ୍ଚଳର। ତାଙ୍କ ସ୍ୱାମୀ ଅଗଷ୍ଟ ବିପ୍ଳବରେ ସାମିଲ ଥିଲେ। ପୁଲିସ ରାତିଅଧିଆ ଖାନତଲାସୀ ପାଇଁ ସେମାନଙ୍କ ଘରେ ପଶିଲେ। ଏ ଦୁଇ ମହିଳା ଦୃଢ଼ ପ୍ରତିବାଦ କଲେ। ଘଟଣାର କରୁଣାନ୍ତକ ପରିସମାପ୍ତି ଘଟିଲା।

'ଅଗଷ୍ଟ ବିପ୍ଳବ' ସମୟରେ ମାଳତୀଦେବୀ ଅଣ୍ଡରଗ୍ରାଉଣ୍ଡ ଆନ୍ଦୋଳନ ଜାରି ରଖିଲେ। ବିପ୍ଳବୀମାନଙ୍କ ନିକଟକୁ ଗୁପ୍ତ ସନ୍ଦେଶ ପଠାଉଥିଲେ।

ଗଞ୍ଜାମ ଜିଲ୍ଲାର କେତେକ ଦୁଃସାହସୀ ମହିଳା ଭାରତଛାଡ଼ ଆନ୍ଦୋଳନ ସମୟରେ ମଧ୍ୟ ଅପୂର୍ବ ଦକ୍ଷତା ପ୍ରଦର୍ଶନ କଲେ। ଲକ୍ଷ୍ମୀବାଈ, ଚମ୍ପାଦେବୀ, ହେମଲତା ଦେବୀ, ଶୋଭାବତୀ ପଣ୍ଡା, ସୁରଆମ୍ମା, ତରଆମ୍ମା ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟା। ତରଆମ୍ମା ପାରଳାଖେମୁଣ୍ଡିଠାରେ ଭାରତଛାଡ଼ ଆନ୍ଦୋଳନକୁ ଆଗେଇ ନେବାରେ ସହାୟକ ହୋଇଥିଲେ। ତାଙ୍କୁ ପୁଲିସ ବାନ୍ଧିନେଲା। ସେ ଅଢ଼େଇବର୍ଷ କାରାଗାରରେ ରହିଲେ। ଚମ୍ପାଦେବୀଙ୍କୁ ମଧ୍ୟ ଭଞ୍ଜନଗର କାରାଗାରରେ ଛ'ମାସ କାଟିବାକୁ ପଡ଼ିଲା। ସୀତାଦେବୀ ଖାଡ଼ଙ୍ଗା ଗାନ୍ଧିଜୀଙ୍କ ବାର୍ତ୍ତା ପ୍ରଚାର କରିଥିଲେ। ତାଙ୍କର ଜାତୀୟତାବାଦୀ ରଚନା 'ନାରୀ ପୋଷ୍ୟପୁତ୍ର', 'ନାସ୍ତିକ', 'ପ୍ରାଚୀନ ପନ୍ଥା' ଆଦି ରଚନାରେ ସମାଜ ସଂସ୍କାର ବାର୍ତ୍ତା ଅତି ପ୍ରାଞ୍ଜଳ। ପୁରୀ ଜିଲ୍ଲାରେ ବିମଳାଦେବୀ, ମୁକ୍ତାଦେବୀ, ଗୁଣମଞ୍ଜରୀ ଦେବୀ ତାଙ୍କ ପରି ଆଉ କେତେକ ନାରୀ ସତ୍ୟାଗ୍ରହୀ ପୁରୁଷ କାନ୍ଧ ସହ କାନ୍ଧ ମିଳାଇ ଭାରତଛାଡ଼ ଆନ୍ଦୋଳନକୁ ତ୍ୱରାନ୍ୱିତ କରିଥିଲେ। ସାବରମତୀର ଗାନ୍ଧିଜୀଙ୍କ ଶିଷ୍ୟା ସୁନାମଣି ଦେବୀ ଥିଲେ ଆଗଧାଡ଼ିରେ। ସେ ୧୯୪୨ ମସିହାରେ ବନ୍ଦିନୀ ହେଲେ। ୧୯୪୪ରେ ମୁକ୍ତି ପାଇଲେ। ଭାରତର ସମ୍ବିଧାନ ପ୍ରଣୟନ ସଭାକୁ ଓଡ଼ିଶାର ଏକମାତ୍ର ନାରୀ ମୁକ୍ତିଯୋଦ୍ଧା ମାଳତୀ ଦେବୀ ଚୌଧୁରୀ ମନୋନୀତା ହୋଇଥିଲେ। ଏଇଟି ଓଡ଼ିଶା ପାଇଁ ଗର୍ବ ଗୌରବର ବିଷୟ। ଗାନ୍ଧିଜୀଙ୍କ ସତ୍ୟ, ସତ୍ୟାଗ୍ରହ ମନ୍ତ୍ରରେ ଦୀକ୍ଷିତା ଓଡ଼ିଶାର ମହିଳା ମୁକ୍ତି ସଂଗ୍ରାମୀମାନେ ଅମର କୀର୍ତ୍ତି ଅର୍ଜନ କରିଛନ୍ତି।

ଜାତୀୟ ମୁକ୍ତି ସଂଗ୍ରାମରେ ଓଡ଼ିଶାର ନାରୀଙ୍କ ଅବଦାନ ଚିର ସ୍ମରଣୀୟ। ସେମାନଙ୍କ ତ୍ୟାଗ, ତିତିକ୍ଷା, ଦେଶପ୍ରେମର ପଟ୍ଟାନ୍ତର ନାହିଁ। ଓଡ଼ିଶା ଭଳି ଏକ ପଛୁଆ ରାଜ୍ୟରେ ନାରୀ ଜାଗରଣ କିଛି କମ୍ କଥା ନଥିଲା। ଭାରତମାତାଙ୍କୁ ବେଡି ଶୃଙ୍ଖଳ ମୁକ୍ତ କରିବା ପାଇଁ ସେମାନଙ୍କ ପଣ ପ୍ରତିଜ୍ଞା ଜାତୀୟତାବାଦର ସର୍ବଶ୍ରେଷ୍ଠ ନମୁନା। ଶହୀଦର ରକ୍ତସ୍ନାତ ତ୍ୟାଗ କେବେଁ ବିଫଳ ହୁଏନି ? ଇରମ ଗଣହତ୍ୟାର ପରିବେୱା, ଗୁରୁବାରୀ ମେହେର (ସୋନପୁର), ଦୁଇ ଆଦିବାସୀ ମୁକ୍ତି ସଂଗ୍ରାମୀଙ୍କ ପତ୍ନୀ ମେସକାସିନୀ, ସୁବର୍ଣ୍ଣା ଲହରା (କୋରାପୁଟ)ଙ୍କ ତ୍ୟାଗ ଫଳବତୀ ହେଲା। ଉଡ଼ିଲା ସ୍ୱାଧୀନ ଭାରତର ତ୍ରିରଙ୍ଗା, ବନ୍ଦେ ମାତରମ୍ ଧ୍ୱନି ପ୍ରତିଧ୍ୱନିତ ହେଲା, ମୁଖରିତ ହେଲା ଗଗନ ପବନ। ଦେଶସେବାରେ ନିଜ ଜୀବନକୁ ବାଜି ଲଗେଇ ଦେଇଥିବା ସେଇସବୁ ପ୍ରାତଃ ସ୍ମରଣୀୟାଙ୍କ ପାଇଁ ଏ ଜାତିର କୋଟି କୋଟି ପ୍ରଣାମ।

ସା/ପୋ: ଗଙ୍ଗାକୂଳ
କେନ୍ଦ୍ରାପଡ଼ା – ୭୫୪୨୨୩





# ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ଓ କନିକାର ପ୍ରଜାମେଳି

**ହୃଦାନନ୍ଦ ବେହେରା**

ମହାତ୍ମା ଗାନ୍ଧୀଙ୍କ ଜାତୀୟ ରାଜନୀତିରେ ଯୋଗଦାନ ଭାରତର ସ୍ୱାଧୀନତା ଆନ୍ଦୋଳନରେ ବହୁ ପରିବର୍ତ୍ତନ ଆଣିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଣେ ଅବସରପ୍ରାପ୍ତ ଇଂରେଜ ଆଲାନ୍ ଅକ୍ଟାଭିଆନ୍ ହ୍ୟୁମ୍‌ଙ୍କ ଦ୍ୱାରା ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ହୋଇଥିଲା । ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠା ସମୟରେ କେତେଜଣ ନରମପନ୍ଥୀ ନେତା କଂଗ୍ରେସ ସହିତ ସଂପୃକ୍ତ ରହି କଂଗ୍ରେସର କାର୍ଯ୍ୟଧାରାକୁ ଆଗେଇ ନେବାକୁ ଚେଷ୍ଟା ଜାରି ରଖିଥିଲେ । ଦାଦାଭାଇ ନାରୋଜୀ, ଉମେଶ ଚନ୍ଦ୍ର ବାନାର୍ଜୀ ଆଦି ନେତୃସ୍ଥାନୀୟ ବ୍ୟକ୍ତି ନିଜକୁ କଂଗ୍ରେସର କାର୍ଯ୍ୟକଳାପ ସହିତ ଜଡ଼ିତ କରି କଂଗ୍ରେସର କାର୍ଯ୍ୟପନ୍ଥାକୁ ପ୍ରତ୍ୟକ୍ଷଭାବେ ଆଗେଇ ନେବାକୁ ଚେଷ୍ଟା କରୁଥିଲେ । ଏହି ନେତାମାନେ ପ୍ରାର୍ଥନା, ଦାବୀପତ୍ର ଓ ସମାଲୋଚନା ମାଧ୍ୟମରେ ନିଜର କାର୍ଯ୍ୟପନ୍ଥା ଚାଲୁ ରଖିଥିଲେ । କିନ୍ତୁ କଂଗ୍ରେସର ଏଭଳି କାର୍ଯ୍ୟପନ୍ଥାକୁ ତତ୍କାଳୀନ କେତେଜଣ ଯୁବ ନେତୃତ୍ୱ ପସନ୍ଦ ନ କରି ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଭିନ୍ନ ଅନୁଷ୍ଠାନ ଗଢ଼ି ଜନଆନ୍ଦୋଳନ କରିବାକୁ ଶ୍ରେୟ ମଣିଥିଲେ । ଲାଲା ଲାଜପତ୍ ରାୟ, ବାଳ ଗଙ୍ଗାଧର ତିଳକ ଓ ବିପିନ୍ ଚନ୍ଦ୍ର ପାଲ ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ । ସେତେବେଳେ କଂଗ୍ରେସର ଏହି ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଚରମପନ୍ଥୀ ନେତା ବୋଲି କୁହାଯାଉଥିଲା । କଂଗ୍ରେସର ଚରମ ପନ୍ଥୀ ନେତାମାନଙ୍କର ମୁଖ୍ୟ ଲକ୍ଷ୍ୟ ଥିଲା, ଇଂରେଜ ସରକାରଙ୍କ ଦମନ ନୀତିକୁ ବିରୋଧ କରି ଗଣ ଆନ୍ଦୋଳନ ଜରିଆରେ ନିଜର ଅସନ୍ତୋଷ ଜାରି ରଖିବା । ୧୯୦୬ରୁ ୧୯୧୯ ପର୍ଯ୍ୟନ୍ତ ସମୟକୁ ଚରମପନ୍ଥୀ ଯୁଗ ବୋଲି କୁହାଯାଏ ।

ଯେଉଁ ସମୟରେ ଭାରତୀୟ ଜାତୀୟ କଂଗ୍ରେସ ବହୁ ଉତ୍‌ଥାନ ପତନ ନେଇ ଗତି କରିଚାଲିଥିଲା, ଠିକ୍ ସେହି ସମୟରେ ଗାନ୍ଧିଜୀ ଜାତୀୟ ରାଜନୀତିରେ ପ୍ରବେଶ କରିଥିଲେ । ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱକୁ ତତ୍କାଳୀନ କଂଗ୍ରେସ ନେତୃମଣ୍ଡଳୀ ମାନି ନେଇଥିଲେ ଓ ତାଙ୍କରି ଚିନ୍ତାଧାରାରେ କଂଗ୍ରେସର କାର୍ଯ୍ୟଧାରା ପରିଚାଳିତ ହେବାକୁ ଲାଗିଲା । ସେ ଭଲଭାବେ ଜାଣିଥିଲେ ଶକ୍ତିଶାଳୀ ବ୍ରିଟିଶ୍ ସରକାରଙ୍କୁ ପ୍ରତ୍ୟକ୍ଷ ଯୁଦ୍ଧରେ ପରାସ୍ତ କରିବା ସମ୍ଭବ ନୁହେଁ । ତେଣୁ ସେ ମାନସିକ ସ୍ତରରେ ସରକାରଙ୍କୁ ଦୁର୍ବଳ କରିବା ପାଇଁ ରଣନୀତି ପ୍ରସ୍ତୁତ କରିଥିଲେ । ଅସହଯୋଗ ଓ ଅହିଂସାକୁ ସେ ନିଜର ହତିଆର ରୂପେ ବ୍ୟବହାର କରିବାକୁ ସ୍ଥିର କଲେ । ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ପରେ ଗାନ୍ଧିଜୀ ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଥିଲେ ଓ ବ୍ରିଟିଶ୍ ସରକାର ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନର ଡାକରା ଦେଇଥିଲେ । ଏହି ଆନ୍ଦୋଳନର ମୁଖ୍ୟ ଲକ୍ଷ୍ୟ ଥିଲା ଇଂରେଜ ସରକାରଙ୍କୁ ସବୁ କ୍ଷେତ୍ରରେ ଅସହଯୋଗ କରିବା । ଗାନ୍ଧିଜୀଙ୍କର ଏହି ଆନ୍ଦୋଳନ ଡାକରା ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ଋଦ୍ଧିମନ୍ତ କରିଥିଲା ।

ଗାନ୍ଧିଜୀଙ୍କର ଏହି ଡାକରାକୁ ଓଡ଼ିଶାର ଜନସାଧାରଣ ସହଜରେ ଗ୍ରହଣ କରି ନେଇଥିଲେ । ଅସହଯୋଗ ଆନ୍ଦୋଳନର କାର୍ଯ୍ୟପନ୍ଥାକୁ ଓଡ଼ିଶାର ତତ୍କାଳୀନ କଂଗ୍ରେସ ନେତୃମଣ୍ଡଳୀ ବିଧିବଦ୍ଧଭାବେ ପାଳନ କରିବାକୁ ସ୍ଥିର କରିଥିଲେ । ଓଡ଼ିଶାରେ ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ ଆଦି ନେତୃମଣ୍ଡଳୀ ସେତେବେଳେ ଜାତୀୟ କଂଗ୍ରେସର ମଙ୍ଗ ଧରିଥିଲେ ଓ ଏମାନଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ସାରା ଓଡ଼ିଶାରେ ଖେଳି ଯାଇଥିଲା ।





୧୯୨୦ ମସିହାରେ କଲିକତାଠାରେ ହେଉଥିବା କଂଗ୍ରେସ ଅଧିବେଶନରେ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନକୁ କଂଗ୍ରେସର ସଭ୍ୟମାନେ ବହୁ ମତରେ ଗୃହୀତ କରାଇଥିଲେ । ଏହି ଅଧିବେଶନରେ ଓଡ଼ିଶାରୁ ଗୋପବନ୍ଧୁ ଦାସ ଯୋଗ ଦେଇଥିଲେ । ଗୋପବନ୍ଧୁ କଲିକତାରୁ ଫେରିଲା ପରେ ଓଡ଼ିଶାରେ ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହୋଇଥିଲା ଓ ଅସହଯୋଗ ବାର୍ତ୍ତାର ପ୍ରଚାର ନିମନ୍ତେ ତତ୍କାଳୀନ କଂଗ୍ରେସ ନେତୃମଣ୍ଡଳୀଙ୍କୁ ସେ ବିଭିନ୍ନ ଜିଲ୍ଲାର ଦାୟିତ୍ୱ ମଧ୍ୟ ଅର୍ପଣ କରିଥିଲେ ।

ଓଡ଼ିଶାରେ ଅସହଯୋଗ ଆନ୍ଦୋଳନକୁ ବୃଦ୍ଧିମନ୍ତ କରିବା ନିମନ୍ତେ ମହାତ୍ମା ଗାନ୍ଧୀ ଓଡ଼ିଶା ଆସି ବିଭିନ୍ନ ସ୍ଥାନରେ ସଭା ସମିତି କରି ଜନସଚେତନତା ସୃଷ୍ଟି କରାଇଥିଲେ । କଟକର କାଠଯୋଡ଼ି ନଦୀ ବାଲିରେ ଏକ ବିଶାଳ ଜନସମୁଦ୍ରକୁ ଉଦ୍‌ବୋଧନ ଦେଇ ଅସହଯୋଗର ବାର୍ତ୍ତାକୁ ପ୍ରଚାର କରିଥିଲେ । କେବଳ କଟକ ନୁହେଁ, ଭଦ୍ରକ, ପୁରୀ, ବ୍ରହ୍ମପୁର ପ୍ରଭୃତି ସ୍ଥାନରେ ମଧ୍ୟ ସଭା କରି ଲୋକମାନଙ୍କ ମନରେ ନବ ଉନ୍ମାଦନା ଭରି ଦେଇଥିଲେ । ଗାନ୍ଧୀଙ୍କ କଥାରେ ଅନୁପ୍ରାଣିତ ହୋଇ ଓଡ଼ିଶାର ଜନସାଧାରଣ 'ତିଳକ ସ୍ୱରାଜ୍ୟ ପାଣ୍ଠି'କୁ ବହୁ ପରିମାଣରେ ଅର୍ଥ ଦାନ କରିଥିଲେ । ନାରୀମାନେ ମଧ୍ୟ ନିଜ ନିଜର ଅଳଙ୍କାର ଦାନ କରିବାକୁ ପଛାଇ ନଥିଲେ । ଓଡ଼ିଶାର ନାରୀମାନେ ମହାତ୍ମା ଗାନ୍ଧୀଙ୍କୁ ଶଙ୍ଖଧ୍ୱନିରେ ସ୍ୱାଗତ କରିଥିଲେ । ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଓଡ଼ିଶାରେ ଯେଉଁ ଶିକ୍ଷାନୁଷ୍ଠାନମାନ ଇଂରେଜ ସରକାରଙ୍କ ଦ୍ୱାରା ପରିଚାଳିତ ହେଉଥିଲା, ସେହି ଶିକ୍ଷାନୁଷ୍ଠାନଗୁଡ଼ିକୁ ବର୍ଜନ କରାଯାଇଥିଲା । ସମ୍ବଲପୁର, କଟକ, ବାଲେଶ୍ୱର, ପୁରୀ ଜିଲ୍ଲାର ଛାତ୍ରମାନେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ଏଣୁ ଓଡ଼ିଶାରେ ଶିକ୍ଷାର ପ୍ରସାର ନିମନ୍ତେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ନେତୃମଣ୍ଡଳୀ ଚିନ୍ତା କରୁଥିଲେ । ପ୍ରଥମେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଦ୍ୱାରା ପୁରୀ ଜିଲ୍ଲାର ସତ୍ୟବାଦୀଠାରେ ଏକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲା । ପରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଜାତୀୟ ବିଦ୍ୟାଳୟମାନ ସ୍ଥାପିତ ହୋଇଥିଲା । ଜିଲ୍ଲା ସର୍କଲ ସ୍କୁଲଗୁଡ଼ିକରୁ ଛାତ୍ରମାନେ ଅଧ୍ୟୟନ ତ୍ୟାଗ କରି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ଅସହଯୋଗ ଆନ୍ଦୋଳନକାରୀଙ୍କୁ ଶିକ୍ଷା ଦେବାପାଇଁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଆଶ୍ରମମାନ ଗଢ଼ି ଉଠିଥିଲା । ତନ୍ମଧ୍ୟରୁ କଟକର 'ସ୍ୱରାଜ ଆଶ୍ରମ' ଅନ୍ୟତମ । ଏହି ଆଶ୍ରମରେ ଆନ୍ଦୋଳନରତ କର୍ମୀମାନଙ୍କୁ ଶିକ୍ଷା ଦିଆଯାଉଥିଲା । ଏହିଭଳି ଭାବେ ଜଗତସିଂହପୁରରେ 'ଅଳକା ଆଶ୍ରମ', ବାଲେଶ୍ୱରରେ 'ସ୍ୱରାଜ୍ୟ ମନ୍ଦିର' ପ୍ରତିଷ୍ଠା ହୋଇଥିଲା । ଅସହଯୋଗ ଆନ୍ଦୋଳନର ମର୍ମ ଅର୍ଥ ବୁଝିଲା ପରେ ଅନେକ ଓଡ଼ିଆ ସରକାରୀ କର୍ମଚାରୀ ନିଜ ନିଜର ଚାକିରିର ମୋହ ତ୍ୟାଗ କରିଦେଇଥିଲେ । ସର୍ବପ୍ରଥମେ ଗୋପବନ୍ଧୁ ଚୌଧୁରୀ ଡେପୁଟି ମାଜିଷ୍ଟ୍ରେଟ୍ ପଦବୀରୁ ଇସ୍ତଫା ପ୍ରଦାନ କରିଥିଲେ । ପରେ ପରେ ଅନେକ ବିଭିନ୍ନ ପଦ ପଦବୀରେ ଥିବା ବଳିଷ୍ଠ ବ୍ୟକ୍ତି ବିଶେଷ ସରକାରୀ ଚାକିରିରୁ ଇସ୍ତଫା ଦେଇ ଅସହଯୋଗ ଆନ୍ଦୋଳନରେ ନିଜକୁ ସାମିଲ କରିଥିଲେ । ପରେ ଏହି ନେତାମାନଙ୍କ ମଧ୍ୟରୁ ଅନେକ କଂଗ୍ରେସର ଆଗଧାଡ଼ିର ନେତା ହୋଇଥିଲେ ।

ଅସହଯୋଗ ଆନ୍ଦୋଳନକୁ ସମର୍ଥନ କରି ବିଦେଶୀ ଦ୍ରବ୍ୟ ପରିତ୍ୟାଗ କରିବା ପାଇଁ ଓଡ଼ିଶାବାସୀ ବଦ୍ଧପରିକର ହେଲେ । ଏପରିକି ପୁରୀ ଓ କଟକଠାରେ ବିଦେଶୀ ବସ୍ତ୍ରଗୁଡ଼ିକରେ ନିଆଁ ଲଗାଇ ପୋଡ଼ି ଦିଆଯାଇଥିଲା । ବିଦେଶୀ ମଦକୁ ମଧ୍ୟ ଓଡ଼ିଶାରେ ବାରଣ କରାଯାଇଥିଲା । ଇଂରେଜମାନଙ୍କ ଦ୍ୱାରା ପ୍ରସ୍ତୁତ ଦ୍ରବ୍ୟକୁ ଗ୍ରହଣ ନ କରିବା ପାଇଁ ଓଡ଼ିଶାବାସୀ ସିଦ୍ଧାନ୍ତ ନେଇଥିଲେ । ଓଡ଼ିଶାବାସୀଙ୍କର ବିଦେଶୀ ଦ୍ରବ୍ୟ ବର୍ଜନର ପ୍ରଭାବ ସିଧାସଳଖ ଭାବେ ବ୍ରିଟିଶ୍ ସରକାରଙ୍କ ଉପରେ ଏକ ଶକ୍ତ ମାଡ଼ ସହିତ ସମାନ ହୋଇଥିଲା । ଅସହଯୋଗ ଆନ୍ଦୋଳନରେ ନେତୃତ୍ୱ ନେଉଥିବା ଗୋପବନ୍ଧୁ ଦାସ କୋର୍ଟ କଚେରିକୁ ବର୍ଜନ କରିବା ନିମନ୍ତେ ଓକିଲାତି ଛାଡ଼ି ଦେଇଥିଲେ । ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଓକିଲାତିକୁ ପେଷା ରୂପେ ଧରିଥିବା ଭାଗିରଥି ମହାପାତ୍ର, ମହେନ୍ଦ୍ରନାଥ ବର୍ମା ପ୍ରଭୃତି ଓକିଲାତି ସେବାରୁ ନିବୃତ୍ତ ରହି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ବହୁ ଶିକ୍ଷିତ ବ୍ୟକ୍ତି ଅସହଯୋଗ ଆନ୍ଦୋଳନରେ ସାମିଲ ହେବାରୁ ଓଡ଼ିଶାର ସର୍ବସାଧାରଣ ଅସହଯୋଗ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥିଲେ । ଓଡ଼ିଶାରେ ବିଭିନ୍ନ ସ୍ଥାନରେ ଖୋଲାଯାଇଥିବା ମଦ ଦୋକାନଗୁଡ଼ିକ ବନ୍ଦ ହୋଇଗଲେ ବ୍ରିଟିଶ୍ ସରକାରଙ୍କର





ରାଜସ୍ୱ ହାନି ହେବ ବୋଲି ଅସହଯୋଗ ଆନ୍ଦୋଳନକାରୀମାନେ ଜାଣିଥିଲେ । ତେଣୁ ଆନ୍ଦୋଳନକାରୀମାନେ ମଦ୍ୟପାନ ନ କରିବା ନିମନ୍ତେ ଜନସାଧାରଣଙ୍କୁ ବୁଝାଉଥିଲେ । ମଦ ଦୋକାନ ବନ୍ଦ କରିବା ନିମନ୍ତେ ଦୋକାନ ଆଗରେ ଧାରଣା ଦେଉଥିଲେ ଓ ମଦ୍ୟପାନର କୁପରିଣାମ ସମ୍ବନ୍ଧରେ ଜନସଚେତନତା ସୃଷ୍ଟି ମଧ୍ୟ କରୁଥିଲେ । ଓଡ଼ିଶାରେ ଏହାର ସୁଫଳ ବେଶ୍‌ଭାବେ ଅନୁଭୂତ ହୋଇଥିଲା ।

ମହାତ୍ମା ଗାନ୍ଧୀଙ୍କ ଆଦର୍ଶ ଓ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ତୀବ୍ରତର ହୋଇଥିଲା । ଫଳରେ ବ୍ରିଟିଶ୍ ସାମ୍ରାଜ୍ୟ ଏହି ଆନ୍ଦୋଳନକୁ ଦମନ କରିବା ନିମନ୍ତେ ଅତ୍ୟାଚାରୀ ଓ ପ୍ରଜାପୀଡ଼କ ହୋଇ ଉଠିଥିଲେ । ଏହି ସମୟରେ ଉତ୍ତର ପ୍ରଦେଶର ଗୋରଖପୁର ଜିଲ୍ଲାର ଚୌରୀଚୌରା ନାମକ ସ୍ଥାନରେ ଏକ ଦୁଃଖଦ ଘଟଣା ଘଟିଥିଲା । ଏକ କୃଷକ ଶୋଭାଯାତ୍ରା ଉପରକୁ ବିନା ଦୋଷରେ ପୋଲିସ୍ ଗୁଳିଚାଳନା କରିଥିଲେ । ଫଳରେ ଲୋକମାନେ ଉତ୍କ୍ଷିପ୍ତ ହୋଇ ସେଠାରେ ଥିବା ଥାନାରେ ଅଗ୍ନି ସଂଯୋଗ କରିଦେବାରୁ ୨୨ ଜଣ ପୋଲିସ୍ କର୍ମଚାରୀଙ୍କର ମୃତ୍ୟୁ ଘଟିଥିଲା । ଗାନ୍ଧିଜୀ ଉକ୍ତ ଘଟଣାରେ ମ୍ରିୟମାଣ ହୋଇ ପଡ଼ିଥିଲେ ଓ ତାଙ୍କର ସ୍ଥିରୀକୃତ ଅସହଯୋଗ ଆନ୍ଦୋଳନକୁ ସ୍ଥଗିତ କରିଦେଇଥିଲେ । ଗାନ୍ଧିଜୀଙ୍କ ଏହି ସିଦ୍ଧାନ୍ତକୁ ତତ୍କାଳୀନ କଂଗ୍ରେସର କେତେକ ନେତୃତ୍ୱ ଘୋର ବିରୋଧ କରିଥିଲେ । ଗାନ୍ଧିଜୀଙ୍କ ସିଦ୍ଧାନ୍ତକୁ ସମର୍ଥନ ଜଣାଇ ତତ୍କାଳୀନ ଓଡ଼ିଶାର କଂଗ୍ରେସ ନେତୃମଣ୍ଡଳୀ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନକୁ ସ୍ଥଗିତ କରିଥିଲେ ।

ଓଡ଼ିଶାରେ ଆନ୍ଦୋଳନ ଦବି ଯିବା ଦେଖି ଓଡ଼ିଶା ଶାସନ ଦାୟିତ୍ୱରେ ଥିବା ଇଂରେଜ କର୍ମଚାରୀମାନେ ଖୁସି ମନାଇଥିଲେ । ବିଭିନ୍ନ ଦଫା ଲଗାଇ ଓଡ଼ିଶାର ନେତାମାନଙ୍କୁ ଗିରଫ କରି ଜେଲ ପଠାଉଥିଲେ । ନେତାମାନେ ଗିରଫ ହେବା ଦ୍ୱାରା ପୁରୀ, ବାଲେଶ୍ୱର, କଟକ ପ୍ରଭୃତି ସ୍ଥାନମାନଙ୍କରେ ଲୋକମାନେ ଉତ୍କ୍ଷିପ୍ତ ହୋଇ ପୋଡ଼ାଜଳା ଆରମ୍ଭ କରିଦେଇଥିଲେ । ଅସହଯୋଗ ଆନ୍ଦୋଳନ ସମୟରେ କନିକାର ପ୍ରଜାମେଳି ଏକ ଘଟଣାବହୁଳ ଅଧ୍ୟାୟ । କନିକାର ଜନସାଧାରଣ ଅସହଯୋଗ ଆନ୍ଦୋଳନକୁ ସମର୍ଥନ କରି କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ବିରୁଦ୍ଧରେ ଏକ ଆନ୍ଦୋଳନ ଆରମ୍ଭ କରିଥିଲେ । ଏହି ଜନ ଅସନ୍ତୋଷକୁ କନିକାର ପ୍ରଜାମେଳି ବୋଲି କୁହାଯାଏ । କନିକାର ରାଜା ମଧୁସୂଦନ ଦାସଙ୍କର ଅତ୍ୟନ୍ତ ଘନିଷ୍ଠ ଥିଲେ । ବହୁ ପୂର୍ବରୁ ମଧୁସୂଦନ ଦାସ କେନ୍ଦ୍ରୀୟ କଂଗ୍ରେସ କମିଟି କାର୍ଯ୍ୟଧାରାରେ ଅସନ୍ତୁଷ୍ଟ ହୋଇ ନିଜକୁ କଂଗ୍ରେସଠାରୁ ଦୂରେଇ ରଖିଥିଲେ । ମଧୁସୂଦନଙ୍କର କନିକାର ରାଜା ଘନିଷ୍ଠ ଥିବାରୁ ସରକାରୀ ମହଲରେ ରାଜାଙ୍କର ଯଥେଷ୍ଟ ପ୍ରତିପତ୍ତି ଥିଲା । ଫଳରେ ସେ ବ୍ରିଟିଶ୍ ସରକାରଙ୍କଠାରୁ ବହୁତ ସୁବିଧା ସୁଯୋଗ ପାଇପାରୁଥିଲେ । କନିକାର ରାଜା ଦିନେ ଓଡ଼ିଶା ନେତୃତ୍ୱର ମଙ୍ଗ ଧରିବେ ବୋଲି ଚିନ୍ତା କରାଯାଉଥିଲା, କିନ୍ତୁ ସେହି ରାଜା ପର ମୁହୂର୍ତ୍ତରେ ବ୍ରିଟିଶ୍ ସରକାରଙ୍କ ସହଯୋଗରେ ପ୍ରଜାପୀଡ଼କ ହୋଇ ପଡ଼ିଥିଲେ । ଏପରିକି ପ୍ରଜାମାନଙ୍କ ଉପରେ ୬୪ ପ୍ରକାର 'କର' ମଧ୍ୟ ବସାଇଥିଲେ । ଜମିର ଘରୋଇ ବନ୍ଦୋବସ୍ତ କରାଇ ନିଜ ଇଚ୍ଛା ଅନୁସାରେ ଖଜଣା ଆଦାୟ କରିବାକୁ କୁଣ୍ଠାବୋଧ କଲେନାହିଁ । ବିଭିନ୍ନ ପ୍ରକାର କର ଓ ଖଜଣା ବଢ଼ାଇ ଦେବା ଦ୍ୱାରା କନିକା ଅଞ୍ଚଳରେ ଜନ ଅସନ୍ତୋଷ ଆରମ୍ଭ ହୋଇ କନିକାର କୋଣ ଅନୁକୋଣକୁ ବ୍ୟାପି ଯାଇଥିଲା । ବଡ଼ ବଡ଼ ଚାଷୀମାନେ ଆନ୍ଦୋଳନର ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

କନିକାର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଦିବାକର ପଟ୍ଟନାୟକ ଓ ଯଦୁମଣି ମଙ୍ଗରାଜଙ୍କୁ କନିକାରେ ଅସହଯୋଗର ବାର୍ତ୍ତା ପ୍ରଚାର କରିବା ନିମନ୍ତେ ଦାୟିତ୍ୱ ଦିଆଯାଇଥିଲା । କନିକା ଅଞ୍ଚଳର ପ୍ରଜାମାନେ ସ୍ୱଇଚ୍ଛାରେ କଂଗ୍ରେସରେ ସାମିଲ ହେଉଥିଲେ । ଲୋକମାନେ ଖଜଣା ଦେଉନାହାନ୍ତି ବୋଲି ସରକାରଙ୍କୁ ଜଣାଇ ଦିଆଯାଇଥିଲା । ତତ୍କାଳୀନ ବିହାର-ଓଡ଼ିଶାର ଶାସକ ପ୍ରକୃତ କଥାକୁ ନ ବୁଝି ରାଜାଙ୍କର କଥାରେ ବିଶ୍ୱାସ କରିଥିଲେ ଓ ଜୋର ଜବରଦସ୍ତ ଆନ୍ଦୋଳନକୁ ଦବାଇ ଦେବାକୁ ସ୍ଥିର କରିଥିଲେ । ପ୍ରଥମେ ସରକାରଙ୍କ ତରଫରୁ ୧୪୪ଧାରା ଲାଗୁ କରାଯାଇଥିଲା । କଂଗ୍ରେସ କର୍ମୀମାନେ କନିକା ଅଞ୍ଚଳକୁ ପ୍ରବେଶ କରିବାର ସୁଯୋଗ ପାଇଲେ ନାହିଁ । ସେତେବେଳେ କନିକା ଅଞ୍ଚଳକୁ ଦୁଇ ଭାଗରେ ବିଭକ୍ତ କରାଯାଇ ଯଥା– 'ଛମୁକା' ଓ 'ପାଞ୍ଚମୁକା' କୁହାଯାଉଥିଲା । କନିକାର ସୀମା ମଧ୍ୟରେ ଥିବା କେନ୍ଦ୍ରାପଡ଼ା ସବ୍‌ଡିଭିଜନ୍ ଅନ୍ତର୍ଗତ କନିକା ଅଞ୍ଚଳକୁ 'ଛମୁକା' ଓ ଭଦ୍ରକରେ ଥିବା କନିକା

ଅଞ୍ଚଳକୁ 'ପାଞ୍ଚମୁକା' କୁହାଯାଉଥିଲା । ବିଶେଷ କରି ଛମୁକା ଅଞ୍ଚଳରେ ପ୍ରଜା ଆନ୍ଦୋଳନ ତୀବ୍ରତର ହୋଇଥିଲା । କନିକା ଅଞ୍ଚଳରେ କଂଗ୍ରେସ ଅଫିସ୍‌କୁ ରଖେଇ ଦିଆଗଲାନାହିଁ । ରାଜାଙ୍କ ନିର୍ଦ୍ଦେଶାନୁସାରେ ରାଜକର୍ମଚାରୀମାନେ କଂଗ୍ରେସ କର୍ମୀମାନଙ୍କୁ ନିର୍ମମ ଭାବେ ନିର୍ଯାତନା ଦେଉଥିଲେ । ଫଳରେ ଜନ–ଅସନ୍ତୋଷ ଆହୁରି ତୀବ୍ରତର ହେବାକୁ ଲାଗିଲା । କନିକା ରାଜାଙ୍କର ଏତାଦୃଶ କାର୍ଯ୍ୟ ଓ ସେଠାକାର ଜନଅସନ୍ତୋଷ ବିଷୟ ବାହାରକୁ ଆସିପାରୁ ନଥିଲା । ଏପରିକି ରାଜକନିକାରେ ଥିବା କଂଗ୍ରେସ କାର୍ଯ୍ୟାଳୟକୁ ଉଠାଇ ଦିଆଯାଇଥିଲା ।

କନିକାର ଜନଅସନ୍ତୋଷ ଓ ରାଜକର୍ମଚାରୀମାନଙ୍କର ପ୍ରଜାମାନଙ୍କ ପ୍ରତି ଅତ୍ୟାଚାର ସମ୍ବନ୍ଧରେ ପଣ୍ଡିତ ଗୋପବନ୍ଧୁ ଦାସ 'ସମାଜ'ରେ ଏକ ଲେଖା ପ୍ରକାଶ କରିବାରୁ ସାରା ଓଡ଼ିଶାର ଲୋକମାନେ କନିକାର ତତ୍‌କାଳୀନ ଅବସ୍ଥା ସମ୍ବନ୍ଧରେ ଜାଣିପାରିଲେ । କନିକାର ଏହି ପ୍ରଜାମେଳିକୁ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଅସହଯୋଗ ଆନ୍ଦୋଳନର ରୂପ ଦେଇ ସରକାରଙ୍କୁ ଆନ୍ଦୋଳନ ଦମନ କରିବାକୁ ସାହାଯ୍ୟ ମାଗିଥିଲେ । ତେଣୁ ଇଂରେଜ ସରକାର ସେହି ସମୟର ପୋଲିସ୍ ସୁପରିନ୍‌ଟେଣ୍ଡେଣ୍ଟ୍ ଶ୍ରୀ ଶ୍ରୀକୃଷ୍ଣ ମହାପାତ୍ରଙ୍କୁ କିଛି ଫୌଜ ଦେଇ ଆନ୍ଦୋଳନକୁ ଦମନ କରିବାକୁ ପ୍ରେରଣ କରିଥିଲେ । ଏହି କଥା କନିକାର 'ଛମୁକା' ଅଞ୍ଚଳରେ କ୍ଷଣିକ ମୁହୂର୍ତ୍ତରେ ବ୍ୟାପି ଯାଇଥିଲା । ଲୋକମାନେ ଏକତ୍ରିତ ହେବା ପୂର୍ବରୁ ପୋଲିସ୍ ଅତ୍ୟାଚାର ଆରମ୍ଭ କରିଦେଇଥିଲା । ପୋଲିସ୍ ଏକତ୍ରିତ ହେଉଥିବା ଲୋକଙ୍କ ଉପରେ ଆଖିବୁଜା ଗୁଳି ଚଳାଇଥିଲେ । ପୋଲିସ୍‌ର ଗୁଳିରେ ବର୍ତ୍ତନୀ ଅଞ୍ଚଳର ବିଶୁନି ମଡ଼ିଆଳ ନାମକ ଜଣେ ବ୍ୟକ୍ତି ସେହି ସ୍ଥାନରେ ଟଳି ପଡ଼ିଥିଲେ । ଏହି ଗୁଳିକାଣ୍ଡ ପରେ ପୋଲିସ୍ ଲୋକମାନଙ୍କୁ ଗୋଡ଼େଇ ଗୋଡ଼େଇ ନିର୍ମମ ପ୍ରହାର କରିଥିଲେ । ଅନ୍ୟ ଜଣେ ବ୍ୟକ୍ତି ବାସୁଦେବ ସେଠୀ ମଧ୍ୟ ପୋଲିସ୍ ଗୁଳିରେ ସେହିଦିନ ସେହିଠାରେ ମୃତ୍ୟୁବରଣ କରିଥିଲେ । ପୋଲିସ୍‌ର ଦମନଲୀଳା ଦେଖି ଲୋକମାନେ ଛତ୍ରଭଙ୍ଗ ଦେଇ ପଳାୟନ କରିଥିଲେ । ଅନେକ ଲୋକ ପୋଲିସ୍ ଡରରେ ଆତ୍ମଗୋପନ କରିଥିଲେ । ଆନ୍ଦୋଳନର ମୁଖ୍ୟ ୧୨୬ ଜଣଙ୍କୁ ଜେଲ୍‌ଦଣ୍ଡ ଦିଆଯାଇଥିଲା । ସେମାନଙ୍କ ହାତରେ ହାତକଡ଼ି ପକାଇ ଚଲାଇ ଚଲାଇ ଚାନ୍ଦବାଲି ଭଦ୍ରକ ବାଟ ଦେଇ କେନ୍ଦ୍ରାପଡ଼ା ନିଆଯାଇଥିଲା । ସେମାନଙ୍କୁ କେନ୍ଦ୍ରାପଡ଼ା ନିଆଯାଇଥିଲେ ମଧ୍ୟ ସେମାନଙ୍କର ବିଚାର କନିକା ରାଜ ଉଆସରେ କରାଯାଇଥିଲା । କନିକା ପ୍ରଜାମେଳିକୁ ସମର୍ଥନ କରି ବାଲେଶ୍ୱରଠାରେ ପ୍ରଦେଶ କଂଗ୍ରେସ କମିଟିରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । କନିକାରେ ଘଟୁଥିବା ଅତ୍ୟାଚାରର ଅନୁସନ୍ଧାନ ପାଇଁ ସଭାରେ ସର୍ବସମ୍ମତ ମତପ୍ରକାଶ ପାଇଥିଲା । କନିକାର ପ୍ରଜାମେଳିକୁ ପଣ୍ଡିତ ଗୋପବନ୍ଧୁ ଦାସ ଓ ଶ୍ରୀ ଭାଗିରଥୀ ମହାପାତ୍ର ସମର୍ଥନ କରୁଥିବାରୁ ସେମାନଙ୍କୁ ମଧ୍ୟ ଗିରଫ ହେବାକୁ ପଡ଼ିଥିଲା । ଏହି ଗିରଫକୁ ବିରୋଧ କରି ସାରା ଓଡ଼ିଶାର ଜନସାଧାରଣ ତାତି ଉଠିଥିଲେ । କନିକାରେ ରାଜା ଓ ଇଂରେଜ ସରକାରଙ୍କ ଦ୍ୱାରା ଘଟିଥିବା ଅତ୍ୟାଚାର ଓଡ଼ିଶାର ଅସହଯୋଗ ଆନ୍ଦୋଳନର ଏକ ଦୁଃଖଦ ଘଟଣା ଅଟେ । କନିକାର ପ୍ରଜାମେଳି ଅସହଯୋଗ ଆନ୍ଦୋଳନ ଯୋଗୁଁ ସଂଗଠିତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ମହାତ୍ମା ଗାନ୍ଧୀଙ୍କ ପୂର୍ଣ୍ଣ ସମର୍ଥନରେ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ସୁଦୂର ବ୍ୟାପୀ ହୋଇଥିଲା । ପଣ୍ଡିତ ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ ଆଦି ନେତାମାନେ ଅସହଯୋଗ ଆନ୍ଦୋଳନକୁ ଲୋକମାନଙ୍କ ନିକଟରେ ପହଞ୍ଚାଇ ଇଂରେଜ ସରକାର ବିରୁଦ୍ଧରେ ଲୋକମାନଙ୍କ ମନରେ ବିଦ୍ରୋହର ବହ୍ନି ପ୍ରଜ୍ଜ୍ୱଳିତ କରାଇଥିଲେ । ଅସହଯୋଗ ଆନ୍ଦୋଳନ ଓଡ଼ିଶାରେ ଖଦି, ଚରଖା ଆନ୍ଦୋଳନକୁ ବ୍ୟାପକ କରିଥିଲା । ସ୍ୱଦେଶୀ ଦ୍ରବ୍ୟର ପ୍ରସ୍ତୁତ ଓ ବ୍ୟବହାର ପାଇଁ ଓଡ଼ିଶାର ଜନସାଧାରଣଙ୍କୁ ଅସହଯୋଗ ଆନ୍ଦୋଳନ ପ୍ରେରଣା ଯୋଗାଇଥିଲା ଏବଂ ସାରା ଓଡ଼ିଶାବାସୀ ଏହି ଆନ୍ଦୋଳନରେ ନିଜକୁ ସାମିଲ କରି ବ୍ରିଟିଶ୍ ସରକାର ବିରୁଦ୍ଧରେ ନିଜର ଜନଅସନ୍ତୋଷକୁ ପରିପ୍ରକାଶ କରାଇଥିଲେ ।

ସା : ସୁଭଦ୍ରାପୁର
ପୋ : ଉତ୍ତମାପୁର, କଟକ–୧୧







# ଅହିଂସା ଅସ୍ତ୍ର

**ଚନ୍ଦ୍ରମଣି ସେଠୀ**

ଇତିହାସ ପୃଷ୍ଠାକୁ ଉନ୍ମୋଚନ କଲେ ଜଣାପଡ଼େ ଯେ, କେବଳ ଇଂରେଜମାନଙ୍କ କବଳରେ ବିଶାଳ ଭାରତବର୍ଷ ଦୀର୍ଘ ଦୁଇ ଶତ ବର୍ଷ ଧରି ପରାଧୀନ ହୋଇ ରହିଥିଲା, ତାହା ନୁହେଁ, ସେମାନଙ୍କ ପୂର୍ବରୁ ମଧ୍ୟ ଦୀର୍ଘ ବର୍ଷ ବର୍ଷ ଧରି ଭାରତବର୍ଷ ବିଭିନ୍ନ ରାଜା–ରାଜୁଡ଼ାଙ୍କ ଦ୍ୱାରା ଶାସିତ ହୋଇଥିଲା । ଭାରତବର୍ଷ ବିଭିନ୍ନ ଅଞ୍ଚଳରେ ଭାଗ ହୋଇ ପ୍ରତ୍ୟେକ ଅଞ୍ଚଳ ବିଭିନ୍ନ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ପରାଧୀନତାର ଦୁଃଖ ଥିଲା ଭାରତବାସୀଙ୍କ ପାଇଁ ଅସୀମ । ବିଭିନ୍ନ ସମୟରେ ବିଭିନ୍ନ ଶାସକ ବିବିଧ ପ୍ରକାର ଆଇନ୍ ପ୍ରଣୟନ କରି ଜନସାଧାରଣଙ୍କୁ ଶୋଷଣ କରୁଥିଲେ । କାହାର ବ୍ୟକ୍ତିଗତ ସୁବିଧା ନଥିଲା । ସ୍ୱାଧୀନ ଭାବନାରୁ ଜନସାଧାରଣ ବଞ୍ଚିତ ଥିଲେ । ଧନୀ ଦରିଦ୍ରଙ୍କ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ରହିଥିଲା । ରାଜାମାନଙ୍କର ଦୋଷୀଙ୍କ ପ୍ରତି ଦଣ୍ଡ ମଧ୍ୟ କଠୋର ଥିଲା । ସ୍ୱାଧୀନତାର ସ୍ୱାଦ ସାଧାରଣ ଲୋକଙ୍କ ପାଇଁ ସ୍ୱପ୍ନ ଥିଲା । ସ୍ୱର୍ଣ୍ଣପ୍ରସୂ ଭାରତବର୍ଷର ମହିମା ସାଧାରଣ ଲୋକଙ୍କୁ ଜଣା ନଥିଲା । ଉଚ୍ଚ ଶିକ୍ଷା ଲାଭ କରିବା ଥିଲା ଦୁଃସ୍ୱପ୍ନ । ଗୁରୁ ଆଶ୍ରମରେ କେହି କେହି ବିଦ୍ୟା ଅଧ୍ୟୟନ କରୁଥିଲେ । କିନ୍ତୁ ସେହି ଶିକ୍ଷା ସୀମିତ ଥିଲା । ଏହିପରି ଭାରତବର୍ଷ କେତେ ଦୁଃଖ ଯନ୍ତ୍ରଣା ମଧ୍ୟ ଦେଇ ଗତି କରିଛି, ତାହା ଇତିହାସ ପୃଷ୍ଠାରେ ଅସମ୍ପୂର୍ଣ୍ଣ ।

ଶେଷରେ ଆସିଲେ ବିଲାତର ବଣିକ ବାଣିଜ୍ୟ କରିବା ଉଦ୍ଦେଶ୍ୟରେ । ଭାରତର ଐଶ୍ୱର୍ଯ୍ୟ ସେମାନଙ୍କୁ ବିମୋହିତ କରିଦେଲା । ବାଣିଜ୍ୟ କରିବା ଉଦ୍ଦେଶ୍ୟରେ ସେମାନେ ସାତ ସମୁଦ୍ର ପାରି ହୋଇ ଆସି ସ୍ଥାନେ ସ୍ଥାନେ ବସତି ସ୍ଥାପନ କଲେ । ତାଙ୍କର ବାଣିଜ୍ୟ ବ୍ୟବସାୟ ସାରା ଦେଶରେ ବ୍ୟାପକ ହେଲା । ସେମାନେ ଭାରତବାସୀଙ୍କର ଅଜ୍ଞତାକୁ ଅନୁଧ୍ୟାନ କରି ସ୍ୱର୍ଣ୍ଣପ୍ରସୂ ଭାରତ କିପରି ତାଙ୍କର କରାଗତ ହେବ ଚିନ୍ତା କଲେ । ସେମାନେ ଦେଖିଲେ ଭାରତର ବିଭିନ୍ନ ଅଞ୍ଚଳରେ ରାଜା–ରାଜୁଡ଼ାଙ୍କ ଶାସନ ଚାଲିଛି । ଭାରତବର୍ଷରେ ଅସ୍ଥିରତା ସୃଷ୍ଟି କରିବା ପାଇଁ ସେମାନେ ବିଭିନ୍ନ ଅଞ୍ଚଳର ରାଜା(ଶାସକ)ମାନଙ୍କ ମଧ୍ୟରେ ମନୋମାଳିନ୍ୟ ସୃଷ୍ଟି କରିବାକୁ ଉଦ୍ୟମ କଲେ । ତାଙ୍କ ଉଦ୍ୟମ ଏପରି ଭାବରେ ଫଳବତୀ ହେଲା ଯେ, ରାଜା ରାଜାଙ୍କ ମଧ୍ୟରେ ସୈନ୍ୟସାମନ୍ତଙ୍କ ମାଧ୍ୟମରେ ବିଦ୍ରୋହ ସୃଷ୍ଟି ହେଲା । ବାଣିଜ୍ୟ ବ୍ୟବସାୟ ଦ୍ୱାରା ସେମାନେ ବିପୁଳ ଅର୍ଥ ସଂଗ୍ରହ କରି ନିଜର ମାନଦଣ୍ଡ ମଜବୁତ କରି ଅଶାନ୍ତିର ବୀଜ ସାରା ଭାରତବର୍ଷରେ ବପନ କଲେ । ସ୍ୱର୍ଣ୍ଣପ୍ରସୂ ଭାରତରୁ ବିପୁଳ ପରିମାଣରେ ଧନସମ୍ପଦ ତାଙ୍କ ଦେଶକୁ ବୋହି ନେବାରେ ଲାଗିଲେ । ଗୁପ୍ତ ଭାବରେ ଭାରତର ସମସ୍ତ ତଥ୍ୟ ବ୍ରିଟିଶ ସରକାରଙ୍କ ହସ୍ତଗତ ହେଉଥିଲା । ବ୍ରିଟିଶ ସରକାର ଭାରତର ଧନରତ୍ନ ପ୍ରତି ଆକୃଷ୍ଟ ହୋଇ ଭାରତକୁ ଆୟତ୍ତାଧୀନ କରି ଶାସନ କରିବାକୁ ପ୍ରୟାସ କଲେ ।

ଇଂରେଜ ବଣିକମାନଙ୍କ ମାଧ୍ୟମରେ ଇଂରେଜମାନଙ୍କ ଦ୍ୱାରା ଭାରତବର୍ଷ କବଳିତ ହୋଇ ଶାସନ ଆୟମାରମ୍ଭ ହେଲା । ସେତେବେଳେ ଇଂରେଜ ଶାସକମାନଙ୍କୁ ଗୋରା ସାହେବ ବୋଲି ଡକା ଯାଉଥିଲା । ଭାରତର ଭାଗ୍ୟଦୀପ ତାଙ୍କ ହାତରେ ପ୍ରଜ୍ୱଳିତ ହେଲା । ଦୀର୍ଘ ଦୁଇ ଶତ ବର୍ଷ ସେମାନେ ଏହି ଭାରତକୁ ଶାସନ କରିଥିଲେ । ସ୍ୱର୍ଣ୍ଣପ୍ରସୂ ଭାରତରୁ ଧନ ରତ୍ନ ତାଙ୍କ ଦେଶକୁ ରପ୍ତାନି କରି ଭାରତର ଆର୍ଥିକ ମାନଦଣ୍ଡକୁ ଦୁର୍ବଳ କରିବାକୁ ଲାଗିଲେ । ନିରୀହ ଜନସାଧାରଣଙ୍କ ପ୍ରତି ଅତ୍ୟାଚାର,





ଅନ୍ୟାୟ ଭାବରେ ଜନସାଧାରଣଙ୍କଠାରୁ ବିଭିନ୍ନ ପ୍ରକାର କର ଆଦାୟ କରିବା ଥିଲା ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ । ସ୍ୱ-ଦେଶ ମଙ୍ଗଳ ଚିନ୍ତା ତାଙ୍କ ପାଇଁ ଥିଲା ଦୁଃସ୍ୱପ୍ନ । ପରାଧୀନତାର ସ୍ୱାଦ କିପରି ଦୁଃସହ ଯିଏ ଅଙ୍ଗେ ନିଭାଇଥିବ, ସେ ବ୍ୟକ୍ତ କରିପାରିବ । ଇଂରେଜମାନଙ୍କର ନିଷ୍ଠୁର ଶାସନ ଓ ସର୍ବସାଧାରଣଙ୍କ ପ୍ରତି ନିର୍ଯାତନା ଦିନକୁ ଦିନ ଅସହ୍ୟ ହୋଇ ଉଠିଲା । ସର୍ବସାଧାରଣଙ୍କର ହୃଦୟ ଦୁଃସହ ଅନଳରେ ଦହନ ହେଉଥିଲେ ହେଁ ଭୟରେ ସମସ୍ତେ ନିରବ ହୋଇ ରହୁଥିଲେ । ଯଦି କେହି ଆଗକୁ ପାଦ ପକାଉଥିଲା, ସେ କଠୋର ଦଣ୍ଡରେ ଦଣ୍ଡିତ ହେଉଥିଲା । ହିଂସାର ବହ୍ନିରେ ଦେଶ ଛାରଖାର ହେବାକୁ ବସିଲା ।

କ୍ରମଶଃ ସର୍ବସାଧାରଣ ବା ଲୋକଙ୍କର ମାନବୃଦ୍ଧି କରିବା ପାଇଁ ଭାରତରେ ଉଚ୍ଚଶିକ୍ଷାର ପ୍ରସାର ହେଲା । କେତେକ କୁସଂସ୍କାରକୁ ଲୋପ କରାଯାଇ ସଂସ୍କାରିତ କରାଗଲା । ମିଞ୍ଜିମିଞ୍ଜି ହୋଇ ଜଳୁଥିବା ଦୀପରେ ତେଲ ଦେଲେ ତା'ର ଶିଖା ଆପେଆପେ ପ୍ରଜ୍ୱଳିତ ହୋଇଉଠେ । ସେହିପରି ଶିକ୍ଷା ଲାଭ କରି ବାହାରିଲେ ଅନେକ ବୁଦ୍ଧିଜୀବୀ । ସେମାନଙ୍କ ହୃଦୟରେ ଉଦ୍ରେକ ହେଲା ଚେତନା ଶକ୍ତି । ରାତ୍ରୀର ଘନ ଅନ୍ଧକାରକୁ ଉଭାନ କରିବାକୁ ସକାଳର ସୂର୍ଯ୍ୟ ଯେପରି ଉଦୟ ହୁଏ, ସେହିପରି ଦେଶରେ ଆବିର୍ଭାବ ହେଲେ ମୋହନ ଦାସ କରମ ଚାନ୍ଦ ଗାନ୍ଧୀ ସାରା ଭାରତବର୍ଷକୁ ଜ୍ଞାନଦୀପ ଦ୍ୱାରା ଆଲୋକିତ କରିବାକୁ । ଦୀପରେ ତେଲ ଥିବା ପର୍ଯ୍ୟନ୍ତ ଦୀପ ଜଳେ । କିନ୍ତୁ ଜ୍ଞାନ ଦୀପ ଥରେ ପ୍ରଜ୍ୱଳିତ ହେଲେ, ଦେଶ କ'ଣ ସାରା ବିଶ୍ୱକୁ ପ୍ରଜ୍ୱଳିତ କରିଥାଏ । ଗୋଟିଏ ଦୀପର ଶିଖା ଯେପରି ହଜାର ହଜାର ଦୀପର ଶିଖାକୁ ପ୍ରଜ୍ୱଳିତ କରିଥାଏ, ସେହିପରି ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କ ହୃଦୟର ଦୀପ ଶିଖା ଭାରତର କୋଟିକୋଟି ହୃଦୟକୁ ଆଲୋକିତ କଲା । ଦେଶ ବା ଜାତିର ମାନରକ୍ଷା ଓ ବିଦେଶୀ ଶାସକ ଇଂରେଜମାନଙ୍କ କବଳରୁ ଦେଶକୁ ମୁକ୍ତ କରିବାକୁ ସେ ହୃଦୟରେ ଧାରଣ କଲେ ଅହିଂସା ଅସ୍ତ୍ର । ଯେଉଁ ଅସ୍ତ୍ରରେ ଗୁଳିଗୋଳାର ଆବଶ୍ୟକ ନାହିଁ । ପ୍ରକାଣ୍ଡକାୟ ଶବ୍ଦ ବା ବିସ୍ଫୋରଣ ହୁଏ ନାହିଁ । କେବଳ ମାନବ ହୃଦୟକୁ ମାନବ ଜୟ କରିବାର ମାଧ୍ୟମ ।

ମହାତ୍ମା ଗାନ୍ଧୀଙ୍କ ସହିତ ଯୋଗ ଦେଲେ ଦେଶର ତୁଙ୍ଗ ନେତାଗଣ ଯଥା : ପଣ୍ଡିତ ଜବାହରଲାଲ୍ ନେହେରୁ, ଗୋପାଳକୃଷ୍ଣ ଗୋଖଲେ, ଲାଲା ଲଜପତ୍ ରାୟ, ବାଲ୍ ଗଙ୍ଗାଧର ତିଲକ୍, ହରେକୃଷ୍ଣ ମହତାବ, ଉତ୍କଳମଣି ଗୋପବନ୍ଧୁଙ୍କ ପରି ଅନେକ ।

ବିନା ହିଂସାରେ ଯେଉଁ ଅସ୍ତ୍ର ପ୍ରୟୋଗ କରାଯାଏ, ତାହା ହେଉଛି ଅହିଂସା ଅସ୍ତ୍ର । ଆରମ୍ଭ ହୋଇଥିଲା ମହା ଅହିଂସା ସଂଗ୍ରାମ । ଇଂରେଜମାନଙ୍କ ବନ୍ଧୁକ ଗୁଳିରେ ସାରା ଦେଶ ଗଗନ ପବନ ପ୍ରକମ୍ପିତ ହୋଇ ଉଠିଲା । ଟଳି ପଡ଼ିଲେ ହଜାର ହଜାର ନିରୀହ ଭାରତୀୟ ଜନସାଧାରଣ । କିନ୍ତୁ କେହି ଅହିଂସା ଅସ୍ତ୍ର ପ୍ରୟୋଗରୁ ବିରତ ହୋଇ ନଥିଲେ । ସମସ୍ତଙ୍କ ତୁଣ୍ଡରେ ଭାରତ ମାତାର ଜୟ । ମହାତ୍ମା ଗାନ୍ଧୀ, ଜବାହରଲାଲ୍ ନେହେରୁ, ଲାଲ୍ ବାହାଦୁର ଶାସ୍ତ୍ରୀ, ବାଲ୍ ଗଙ୍ଗାଧର ତିଲକ୍, ଗୋପାଳକୃଷ୍ଣ ଗୋଖଲେ ଇତ୍ୟାଦି ଶହଶହ ତୁଙ୍ଗ ନେତା ଜେଲ୍ ଭୋଗିବା ସତ୍ତ୍ୱେ ମଧ୍ୟ ବନ୍ଦୀଶାଳାରେ ସେମାନେ ଏପରି ଅହିଂସାର ମନ୍ତ୍ର ପ୍ରୟୋଗ କରୁଥା'ନ୍ତି । ସେହି ମନ୍ତ୍ର ସାରା ଦେଶବାସୀଙ୍କ ହୃଦୟକୁ ସ୍ପର୍ଶ କରୁଥାଏ । ନିଷ୍ଠୁର ଇଂରେଜ ଶାସକ କେତେକ ଦେଶବତ୍ସଳ ନେତାଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇଲେ, କେତେକଙ୍କୁ ଶୂଳୀରେ ବସାଇଲେ, କେତେକଙ୍କୁ କଳାପାଣି ଦିଆଇଲେ, କେତେକଙ୍କୁ ବନ୍ଧୁକ ଗୁଳିରେ ହତ୍ୟା କଲେ, କେତେକଙ୍କୁ ଜୀବନ୍ତ ଅଗ୍ନିରେ ନିକ୍ଷେପ କରି ହତ୍ୟା କଲେ, ତାହାର କଳନା ନାହିଁ । ମାନବର ହିଂସା ଭାବ ଯେ ଏତେ ଭୟଙ୍କର ରୂପ ଧାରଣ କରିପାରେ, ତାହା କଳ୍ପନା ବାହାରେ । କେତେକେତେ ନାରୀଙ୍କ ପ୍ରତି ହୋଇଛି ଅତ୍ୟନ୍ତ ଲୋମହର୍ଷଣକାରୀ ଅତ୍ୟାଚାର ସେହି ସମୟରେ, ସେ ବୀଭତ୍ସ ଦୃଶ୍ୟ ସବୁ ଆଜିବି ଶରୀରର ଲୋମ ଟାଙ୍କୁରି ଉଠାଏ । ଇଂରେଜମାନଙ୍କ ପାଖରେ ଯେଉଁ ଭାରତୀୟମାନେ ଚାକିରି କରୁଥିଲେ, ସେମାନଙ୍କର ବିଶ୍ୱାସଘାତକତା ଦେଶ ପ୍ରତି ବିପଦ ଥିଲା । ସେମାନେ ଅର୍ଥ ଲୋଭରେ ଦେଶର ଗୁପ୍ତ ତଥ୍ୟ ଇଂରେଜମାନଙ୍କୁ ଜଣାଇ ଦେଉଥିଲେ । ସେମାନେ ହେଉଛନ୍ତି ଦେଶଦ୍ରୋହୀ ।

ଦେଶ ମାତୃକା ଲାଗି ହଜାର ହଜାର ଦେଶପ୍ରେମୀ ସହିଦ୍ ହୋଇଛନ୍ତି । କିନ୍ତୁ ପଞ୍ଜାବର ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ଅତି ଭୟଙ୍କର ଓ ବୀଭତ୍ସ । ଏକ ଆବଦ୍ଧ ପାଚେରି





ମଧ୍ୟରେ ସଭା ଚାଲୁଥିବା ବେଳେ ଇଂରେଜ ସୈନ୍ୟମାନଙ୍କ ଦ୍ୱାରା ଯେଉଁ ଗୁଳିଚାଳନା ହୋଇଥିଲା, ସେଥିରେ ୧୨୦୦ ଦେଶପ୍ରେମୀ ସହିଦ୍ ହୋଇଥିଲେ ଏବଂ ୩୬୦୦ ଦେଶପ୍ରେମୀ ଆହତ ହୋଇଥିଲେ । ଏହି ଦୃଶ୍ୟ ଭାରତ କାହିଁକି ସାରା ବିଶ୍ୱରେ ଚହଳ ପକାଇ ଦେଇଥିଲା । ସେହିପରି ଓଡ଼ିଶାର ବାଲେଶ୍ୱର ଜିଲ୍ଲାର ଇରମ୍‌ଠାରେ ଇଂରେଜମାନଙ୍କ ଗୁଳିରେ ୨୯ ଜଣ ସହିଦ୍ ହୋଇଥିଲେ । ଏପରି ବୀଭତ୍ସ ଦୃଶ୍ୟ କେବଳ ସାରା ଭାରତବର୍ଷ କାହିଁକି ସାରା ବିଶ୍ୱକୁ ମର୍ମାହତ କରି ପକାଇଲା । ଭାରତର ପ୍ରତ୍ୟେକ ଅଞ୍ଚଳ ଇଂରେଜମାନଙ୍କ ହିଂସାଗ୍ନିରେ ଜଳି ଉଠିଲା । ତଥାପି ମହାତ୍ମା ଗାନ୍ଧୀଙ୍କ ଅହିଂସା ନୀତି ମାଧ୍ୟମରେ ତୁଙ୍ଗ ନେତାମାନଙ୍କର ଦେଶ ମାତୃକାର ମର୍ଯ୍ୟାଦା ରକ୍ଷା କରିବାରେ ବିରତି ଘଟି ନଥିଲା । ସାରା ଦେଶରେ ଅହିଂସା ସଂଗ୍ରାମର ବହ୍ନି ଜଳି ଉଠିଲା । ଯେଉଁ ଭାରତୀୟମାନେ ଇଂରେଜ ସରକାରଙ୍କ ଅଧୀନରେ ଚାକିରି କରୁଥିଲେ, ସେମାନଙ୍କର ବିଶ୍ୱାସଘାତକତା କେତେକାଂଶରେ ଇଂରେଜ ସାହେବମାନଙ୍କୁ ମସୁଧା ଯୋଗାଉଥିଲା । ଭାରତମାତାର ମର୍ଯ୍ୟାଦା ଓ ପୂର୍ବ ଗୌରବ ଫେରାଇ ଆଣିବାକୁ ତୁଙ୍ଗ ନେତାମାନଙ୍କର ଆହ୍ୱାନ ବିଜୁଳି ବେଗରେ ସାରା ଦେଶରେ ବ୍ୟାପିଗଲା । ସାଧାରଣ ଜନତା ଉଭୟ ପୁରୁଷ ଓ ନାରୀ ରାଜରାସ୍ତାକୁ ଓହ୍ଲାଇ ଆସିଲେ । ସମସ୍ତଙ୍କ ତୁଣ୍ଡରେ ଭାରତ ମାତାକି ଜୟଗାନ ସାରା ଦେଶକୁ ପ୍ରକମ୍ପିତ କରିଦେଲା । ଆରମ୍ଭ ହେଲା ଅସହଯୋଗ ଆନ୍ଦୋଳନ । ଆରମ୍ଭ ହେଲା ଜେଲ୍‌ଭରୋ ଆନ୍ଦୋଳନ । କିନ୍ତୁ ସର୍ବ କ୍ଷେତ୍ରରେ ପ୍ରୟୋଗ ହେଉଥିଲା ଅହିଂସା ଅସ୍ତ୍ର ଓ ଅହିଂସାର ମାର୍ଗ । ବ୍ରିଟିଶ୍ ସରକାରଙ୍କ ଆଇନ୍ କାନୁନ୍‌କୁ କେହି ନ ମାନି ଆରମ୍ଭ କଲେ ଆଇନ୍ ଅମାନ୍ୟ ଆନ୍ଦୋଳନ । ଦେଶ ମାତୃକା ପାଇଁ ମୃତ୍ୟୁକୁ ଭୟ ନାହିଁ, ଜେଲ୍ ଯିବାକୁ ଭୟ ନାହିଁ, ଲାଠି ମାଡ଼କୁ ଭୟ ନାହିଁ, ଶୂଳୀରେ ବସିବାକୁ ଭୟ ନାହିଁ, ଫାଶୀ ଖୁଣ୍ଟରେ ଝୁଲିବାକୁ ଭୟ ନାହିଁ, ଏହା ଥିଲା ତୁଙ୍ଗ ନେତାମାନଙ୍କର ଆହ୍ୱାନ । ଇଂରେଜ ସରକାରଙ୍କୁ ଧମକ ଦିଆଗଲା ତୁରନ୍ତ ଦେଶ ଛାଡ଼ି ଚାଲିଯିବାକୁ । ବାହାରିଲେ ବାନର ସେନା ଗଣ । ଇଂରେଜ ସରକାରଙ୍କୁ ବିଭିନ୍ନ କ୍ଷେତ୍ରରେ ହଇରାଣ କରାଗଲା । ସାରା ଭାରତବର୍ଷ ଯେତେବେଳେ ଇଂରେଜମାନଙ୍କ ବନ୍ଧୁକ ଗୁଳିଗୋଳାରେ ପ୍ରକମ୍ପିତ, ସେତିକିବେଳେ ସମସ୍ତ ଦେଶ ଜନତାଙ୍କ ଏକତ୍ରିକରଣ ଓ ପ୍ରତିରୋଧ ଇଂରେଜ ସରକାରଙ୍କୁ ଅସୁବିଧାରେ ପକାଇଲା ।

ହଜାର ହଜାର ନଦୀର ଜଳ ସମୁଦ୍ରରେ ପ୍ରବେଶ କରୁଥିବାରୁ ସମୁଦ୍ରର କଳେବର ବୃଦ୍ଧି ହୋଇ ମହା ସମୁଦ୍ରରେ ପରିଣତ ହୁଏ । ସେହିପରି ସମସ୍ତ ଭାରତବାସୀଙ୍କ ଆପ୍ରାଣ ଉଦ୍ୟମ ଓ ମହାତ୍ମା ଗାନ୍ଧୀଙ୍କ ଅହିଂସା ଅସ୍ତ୍ର ଇଂରେଜ ସରକାରଙ୍କୁ ହତୋତ୍ସାହିତ କରିପକାଇଲା । ଅହିଂସା ନୀତି ପ୍ରୟୋଗରେ ଇଂରେଜ ଶାସକଙ୍କର ହିଂସା ନୀତି ହୃଦୟରୁ ଲୋପ ହୋଇଗଲା । ଅହିଂସା ଅସ୍ତ୍ରର ପ୍ରୟୋଗ ଯେ କେତେ ସୁଦୂରପ୍ରସାରୀ ହୋଇ ସାରା ବିଶ୍ୱକୁ ମାନବିକତାର ମାର୍ଗ ଦେଖାଇ ଦେଲା, ତାହା ପରବର୍ତ୍ତୀ ପର୍ଯ୍ୟାୟରେ ସମସ୍ତେ ହୃଦୟଙ୍ଗମ କଲେ ।

ଅହିଂସା ନୀତି ଦ୍ୱାରା ଭାରତବର୍ଷ ୧୯୪୭ ମସିହା ଅଗଷ୍ଟ ମାସ ୧୫ରେ ଇଂରେଜ ଶାସକମାନେ ଦେଶକୁ ସ୍ୱାଧୀନ ଘୋଷଣା କଲେ । ଅଗଷ୍ଟ ୧୫ ତାରିଖଟି ଭାରତ ପାଇଁ ହେଲା ସ୍ୱାଧୀନତା ଦିବସ । ଅଖଣ୍ଡ ଭାରତବର୍ଷ ଅହିଂସା ଅସ୍ତ୍ର ପ୍ରୟୋଗ ଦ୍ୱାରା ସ୍ୱାଧୀନ ।

---

ସହକାରୀ ନିର୍ଦ୍ଦେଶକ
ମୁଦ୍ରଣ, ଲିଖନ ସାମଗ୍ରୀ ଓ ପ୍ରକାଶନ ନିର୍ଦ୍ଦେଶାଳୟ
ମଧୁପାଟଣା, କଟକ–୧୦





# ଆମ ସ୍ୱାଧୀନତା ଆନ୍ଦୋଳନ: ଖଦୀ ଓ ଖଦଡ଼

ନିର୍ମଳା କୁମାରୀ ମହାପାତ୍ର

ଭାରତବର୍ଷର ସ୍ୱାଧୀନତା ସଂଗ୍ରାମ ଓ ଜାତୀୟତାବାଦୀ ଚେତନାରେ ଅସହଯୋଗ ଆନ୍ଦୋଳନ (୧୯୨୦-୨୨) ହେଲା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଇତିହାସ କହେ ଇଂରେଜମାନଙ୍କର ଦ୍ୱୈତ ଶାସନ ପ୍ରଣାଳୀ, ରାଜ୍ୟପାଳଙ୍କ ପ୍ରବେଶ, କ୍ଷମତାର ବିକେନ୍ଦ୍ରୀକରଣ, ପ୍ରଥମ ବିଶ୍ୱଯୁଦ୍ଧ ପରେ ପ୍ରବଂଚନାରୁ ଆରମ୍ଭ ହୁଏ ଅସହଯୋଗ ଆନ୍ଦୋଳନର ସୂତ୍ରପାତ । ଜାଲିଆନାୱାଲାବାଗର ଜଘନ୍ୟ ହତ୍ୟାକାଣ୍ଡ ବି ଅନ୍ୟତମ ମୁଖ୍ୟ କାରଣ । ଗାନ୍ଧୀ-ମୌସୁମ-ପ୍ରବାହକ୍ରମେ ଅସହଯୋଗ ଆନ୍ଦୋଳନରେ ଆସିଲା ଖଦୀ-ଖଦଡ଼ର ଆଦର, ଚରଖାର ଘରଘର୍ ଶବ୍ଦ, ବିଦେଶୀ ଦ୍ରବ୍ୟ ପରିହାର, କଳଲୁଗା ପୋଡ଼ିବା, ପଦପଦବୀ ପରିତ୍ୟାଗ, ଉପାଧି ପ୍ରତ୍ୟାଖ୍ୟାନ, ସ୍କୁଲ-କଲେଜ ଛାଡ଼ିବା ସହ ଛାତ୍ରଛାତ୍ରୀଗଣଙ୍କ ବାନରସେନାରେ ସାମିଲ ହେବା ଆଦି ।



ପ୍ରଥମ ବିଶ୍ୱଯୁଦ୍ଧ ସରିଲା । ମିତ୍ରପକ୍ଷ (ଇଂରେଜ ପକ୍ଷ) ଜିତିଲେ । ଗର୍ବରେ ଫାଟି ପଡ଼ିଲେ ଅବା । ବିରୋଧରେ ଥିବା ଅକ୍ଷଦଳ (ଜର୍ମାନୀ ଆଦି ରାଷ୍ଟ୍ରଗଣ) ହାରିଯାଇ ଦୁଃଖରେ ଥିବା ବେଳେ ଅଟୋମାନ୍ ସାମ୍ରାଜ୍ୟର ମୁଖ୍ୟ ଖଲିଫାଙ୍କୁ ଇଂଲଣ୍ଡ ଅପମାନିତ କରିଥିବା କାରଣରୁ ଖିଲାଫତ୍ ଆନ୍ଦୋଳନ ମୁଣ୍ଡ ଟେକିଲା । ଏଥିସହିତ ଭାରତକୁ ଶାସନ କରିବା ଆଳରେ ଇଂରେଜ ସରକାର ତାଙ୍କ ପେଡ଼ିରୁ ବାହାର କଲେ ରାଓ୍ୱାଲଟ୍ ଆଇନ । ଏହା ଥିଲା ଅସହ୍ୟ ଅନୀତିମୂଳକ ତଥା ସଂପୂର୍ଣ୍ଣ ବେଆଇନ ଭିତ୍ତିରେ ପ୍ରତିଷ୍ଠିତ । ଭାରତୀୟଙ୍କ ବିରୋଧ ଫଳରେ ତାକୁ ଗଢ଼ିଥିବା ନ୍ୟାୟାଧୀଶ ରାଓ୍ୱାଲଟ୍ ପୁନଶ୍ଚ ସଂଶୋଧନ କଲେ । ସଂଶୋଧିତ ଆଇନର ନାମ ହେଲା ରାଓ୍ୱାଲଟ୍ ବିଲସ୍ (Rowlatt Bills) । ଏହାକୁ ବିରୋଧ କରି ସାରା ଭାରତ ତାତି ଉଠିଲା । ଗାନ୍ଧିଜୀଙ୍କ ଡାକରାରେ ତା ୦୬-ଏପ୍ରିଲ-୧୯୧୯ରେ ହରତାଳ ବା ବନ୍ଦ ପାଳନ କରାଗଲା । ତତ୍କାଳୀନ ସରକାରଙ୍କୁ ଚମକ ଲାଗିଲା । ଗାନ୍ଧିଜୀଙ୍କୁ ସରକାର ଗିରଫ କଲେ । ତାଙ୍କ ମତ ପ୍ରତି ବିପୁଳ ସମର୍ଥନ ଥିବା ଜାଣି ଓ ପଞ୍ଜାବରେ ସମ୍ମେଳନ ହେବାର ସୁରାକ ପାଇ ସରକାର ପଞ୍ଜାବରେ ମିଲଟାରୀ ଶାସନ ଜାରି କଲେ । ଏହାର ଭୟଙ୍କର କୁପରିଣାମ ଘଟିଲା ୧୯୧୯, ଏପ୍ରିଲ ୧୩ ତାରିଖରେ । ବ୍ରିଗେଡ଼ିୟର R.E.H. Dyerଙ୍କ ଆଦେଶରେ ଜାଲିଆନାୱାଲାବାଗରେ ଘଟିଲା ମର୍ମବିଦାରକ ଗଣହତ୍ୟା । ଦେଶ ବିଦେଶରେ ଏହା ତୀବ୍ରତମ ଚର୍ଚ୍ଚା ଓ କୁତ୍ସାରଟନା କରାଗଲା ।



ଇତିମଧ୍ୟରେ ମଣ୍ଟେଗୁ–ଚେମସଫୋର୍ଡ଼ ସଂସ୍କାର ଆସିଲା, ଯାହା ଥିଲା ଏକପ୍ରକାର ଭେଳିକି। ଏହାକୁ ଆନ୍ଦୋଳନକାରୀଙ୍କ ପ୍ରତି ଏକ ଭୋଜବିଦ୍ୟା ବା ଯାଦୁବିଦ୍ୟା ବୋଲି କୁହାଯାଉଥିଲା। ତତ୍କାଳୀନ ସରକାରଙ୍କର ଉଦ୍ଦେଶ୍ୟ ଥିଲା ଆନ୍ଦୋଳନକାରୀଙ୍କୁ ଭୂତେଇଦେବା। ଆମ୍ୱଖିଆ ପିଲାକୁ ଆମ୍ୱଡ଼ା ଦେଇ ଭଣ୍ଡେଇବା ଯାହା, ପୂର୍ଣ୍ଣ ସ୍ୱରାଜ୍ୟ ଦାବୀ କରୁଥିବା ଭାରତୀୟଙ୍କୁ ପ୍ରୋକ୍ତ ସଂସ୍କାର ଆଇନ ଥିଲା ତାହା। ପ୍ରକାଶ ଥାଉ କି ଏଇ ସଂସ୍କାର ଆଇନଟି ବ୍ରିଟିଶ ପାର୍ଲିଆମେଣ୍ଟରେ ଆଲୋଚିତ ହୋଇଥିଲା।

ଡିସେମ୍ବର ୧୯୧୯ରେ ଜାତୀୟ କଂଗ୍ରେସର ଅମୃତସର ଅଧିବେଶନରେ ପଣ୍ଡିତ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ ପ୍ରୋକ୍ତ ମଣ୍ଟେଗୁ – ଚେମସଫୋର୍ଡ଼ ଆଇନର ଲାଭାଲାଭ ବିଚାର କରାଗଲା। ବିଶିଷ୍ଟ ଆଇନଜ୍ଞ ଚିତ୍ତରଂଜନ ଦାସ ପ୍ରୋକ୍ତ ସଂସ୍କାର ଆଇନର ଅପର୍ଯ୍ୟାପ୍ତତା ବିଶ୍ଳେଷଣ କରି ଏହାକୁ ଅସନ୍ତୋଷଜନକ ଓ ନୈରାଶ୍ୟଜନକ ବୋଲି ମତ ଦେଲେ। ଗାନ୍ଧିଜୀଙ୍କର ମତ ଥିଲା ଅହିଂସା ଉପାୟରେ ଅସହଯୋଗ ଆନ୍ଦୋଳନ ଜାରିରଖି ଇଂରେଜ ସରକାରଙ୍କୁ ପ୍ରତିବାଦ ତଥା ବିରୋଧ କରିବା। ଗୋପାଳକୃଷ୍ଣ ଗୋଖେଲଙ୍କର ଦେହାନ୍ତ ହୁଏ ୧୯୧୫ ମସିହାରେ। ବାଳ ଗଙ୍ଗାଧର ତିଳକ ବେଶ୍ ବୟସ୍କ। ଏଣୁ ୧୯୧୯ରେ ଗାନ୍ଧିଜୀଙ୍କ ନେତୃତ୍ୱ ଥିଲା ବେଶ୍ ଗୁରୁତ୍ୱପୂର୍ଣ୍ଣ। ସେତେବେଳେ ଲୋକେ ଜାତୀୟ କଂଗ୍ରେସ ନକହି ଗାନ୍ଧୀ–କଂଗ୍ରେସ ବୋଲି କହୁଥିଲେ। ନଗଦାନଗଦି ଦୁଇଟି ଘଟଣା, ଯଥା – ଖାଲିଫାଙ୍କୁ ଅପମାନ ଓ ଜାଲିଆନାୱାଲାବାଗର ଗଣହତ୍ୟାକୁ ଗଣ୍ଠି କରି ଆନ୍ଦୋଳନର ଡାକରା ଦିଆଗଲା। ମାର୍ଚ୍ଚ ୧୦, ୧୯୨୦ରେ ଗାନ୍ଧିଜୀ ଏକ ଇସ୍ତାହାର (manifesto) ପ୍ରକାଶ କଲେ, ଯାହାର ମୂଳମନ୍ତ୍ର ଥିଲା– ଅହିଂସା ଓ ଅସହଯୋଗ। ସର୍ବସମ୍ମତିକ୍ରମେ ନିଷ୍ପତ୍ତି ନିଆଗଲା ଯେ ଅଗଷ୍ଟ ୦୧, ୧୯୨୦ ଦିନରୁ ଅସହଯୋଗ ଆନ୍ଦୋଳନ ଆରମ୍ଭ କରାଯିବ। କିନ୍ତୁ ଆନ୍ଦୋଳନର ପୂର୍ବଦିନ ରାତିରେ ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କର ଦେହାନ୍ତ ହୋଇଗଲା। ବୟସାଧିକ୍ୟ ସତ୍ତ୍ୱେ ସେ ଅସହଯୋଗ ଆନ୍ଦୋଳନରେ ସାମିଲ ହେବା ପାଇଁ ପ୍ରତିଶ୍ରୁତି ଦେଇଥିଲେ। ସ୍ୱର୍ଗତ ତିଳକଙ୍କର ଅନ୍ତ୍ୟେଷ୍ଟି କ୍ରିୟାରେ ଶବବାହକ ଭାବେ ଗାନ୍ଧିଜୀଙ୍କ ସହ ସୌକତ ଅଲ୍ଲୀ, ସାଇଫୁଦ୍ଦିନ କିଚଲେ ଆଦି ଶ୍ମଶାନକୁ ଯାଇଥିଲେ। ଏଥିରୁ ହିନ୍ଦୁ–ମୁସଲମାନ ଏକତାର ପ୍ରମାଣ ମିଳେ। ଏତଦ୍‌ବ୍ୟତୀତ ପ୍ରାର୍ଥନା ଓ ଅନଶନରେ ଆରମ୍ଭ ହେଲା ଅସହଯୋଗ ଆନ୍ଦୋଳନ।

ଇତିମଧ୍ୟରେ କଲିକତାରେ ୧୯୨୦, ସେପ୍ଟେମ୍ବରରେ ଜାତୀୟ କଂଗ୍ରେସର ଏକ ଅଧିବେଶନ ବସିଲା, ଯାହାର ସଭାପତି ଥିଲେ ଲାଲା ଲଜପତ୍ ରାୟ। ପୁନଶ୍ଚ ସେହିବର୍ଷ ଡିସେମ୍ବରରେ ଜାତୀୟ କଂଗ୍ରେସର ସଦସ୍ୟଗଣ ନାଗପୁରରେ ଏକତ୍ର ହୋଇ ଗାନ୍ଧିଜୀ କରିଥିବା ସଂକଳ୍ପ ନିର୍ଦ୍ଧାରଣ ଫର୍ଦ୍ଦ (Resolution sheet of the movement by M.K. Gandhi) ଉପରେ ବିସ୍ତୃତ ଆଲୋଚନା କରିଥିଲେ। ଏହାର କାର୍ଯ୍ୟଧାରାରେ ସ୍ଥାନ ପାଇଥିଲା ଇଂରେଜ ସରକାରଙ୍କର ଆଇନ ଅଦାଲତକୁ ବାସନ୍ଦ (boycott) କରିବା, ଆସ୍ତେ ଆସ୍ତେ ସେହି ସରକାରଙ୍କ ପ୍ରତ୍ୟକ୍ଷ ପରିଚାଳିତ ବା ଅନୁଦାନପ୍ରାପ୍ତ ସ୍କୁଲ–କଲେଜ ଛାଡ଼ିବା, ବିଧାନସଭା ବା ପରିଷଦର ନିର୍ବାଚନକୁ ବାସନ୍ଦ କରିବା, ସରକାରୀ ପଦବୀ ବା ଉପାଧିକୁ ପ୍ରତ୍ୟାଖ୍ୟାନ କରିବା, ବିଦେଶୀ ଦ୍ରବ୍ୟ ଓ ମଦ୍ୟ ଆଦିକୁ ସଂପୂର୍ଣ୍ଣ ପରିହାର କରିବା ଆଦି। ଚରଖା ଉପରେ ଗୁରୁତ୍ୱ ଦିଆଯାଇ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର ପାଇଁ ସଂକଳ୍ପ ନିଆଯାଇଥିଲା। ଏଇ ପରିପ୍ରେକ୍ଷୀରେ ବାରିଷ୍ଟର ମୋତିଲାଲ ନେହେରୁ, ଚିତ୍ତରଂଜନ ଦାସ, ଗୋପବନ୍ଧୁ ଦାସ ପ୍ରମୁଖ କଚେରି ବର୍ଜନ କରିଥିଲେ। ହଜାର ହଜାର ସଂଖ୍ୟକ ଛାତ୍ରଛାତ୍ରୀ (ଛାତ୍ର ଅଧିକ, ଛାତ୍ରୀ କମ୍) ଶିକ୍ଷାନୁଷ୍ଠାନ ଛାଡ଼ିଲେ। ଓଡ଼ିଶାରୁ ବିନୋଦ କାନୁନ୍‌ଗୋ, ଯଦୁମଣି ମଙ୍ଗରାଜ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରମୁଖ ପାଠପଢ଼ା ଛାଡ଼ି ଆନ୍ଦୋଳନରେ ଝାସ ଦେଲେ। ପରବର୍ତ୍ତୀ ସମୟରେ ଗୋପବଂଧୁ ଚୌଧୁରୀ ଡେପୁଟୀ କଲେକ୍ଟର ପଦରୁ ଇସ୍ତଫା ଦେଇ ପ୍ରାଣକୃଷ୍ଣ ପଢ଼ିଆରୀଙ୍କ ସହଯୋଗରେ ଜଗତ୍‌ସିଂହପୁର ଜିଲାର ଅଳକା ନଦୀ କୂଳରେ ଅଳକାଶ୍ରମ ଗଢ଼ି ସେବା ଓ ଜାତୀୟଚେତନା କାର୍ଯ୍ୟଧାରା ଜାରି ରଖିଲେ।

ସାହିତ୍ୟରେ ନୋବେଲ ପୁରସ୍କାରପ୍ରାପ୍ତ କବି ରବୀନ୍ଦ୍ରନାଥ ଠାକୁର ଜାଲିଆନାୱାଲାବାଗର ଗଣହତ୍ୟାର ତୀବ୍ର ପ୍ରତିବାଦ ସ୍ୱରୂପ ତାଙ୍କୁ ଇଂରେଜ ସରକାର ଦେଇଥିବା ନାଇଟ୍ ପଦବୀ





(Knighthood)କୁ ପ୍ରତ୍ୟାଖ୍ୟାନ କରି ଲେଖିଥିବା ଚିଠିର କିୟତ୍ ମର୍ମାନୁବାଦ ନିମ୍ନରେ ପ୍ରଦତ୍ତ :

''ମୋ' ଦେଶର ଅଗଣିତ ଜନଗଣ ଦାରୁଣ ଦୁଃଖରେ ନିର୍ବାକ୍। ସେମାନଙ୍କ କ୍ଷୋଭ ଓ ତୀବ୍ର ପ୍ରତିବାଦର ସ୍ୱର ଉଚ୍ଚାରଣ କରିବାର ପରିଣତିକୁ ସମ୍ମୁଖୀନ ହେବା ପରେ ସାମାନ୍ୟ କାର୍ଯ୍ୟ ଅନ୍ତତଃ ମୁଁ ଦେଶ ପାଇଁ କରିପାରିବି। ଏପରି ସମୟ ଆସିଛି ଯେତେବେଳେ ପଦପଦବୀ ଲଜ୍ଜାରେ ଆମର ମୁଖ ଅବନତ କରି ଦେଇଛି। ତାହା ଏକ ଅଶାଳୀନ ଉପହାସରେ ପରିଣତ ହୋଇଛି। ମୁଁ ମୋର ସବୁ ପଦଗୌରବ ପରିତ୍ୟାଗ କରି ମୋ' ଦେଶର ସେହି ସାଧାରଣ ଲୋକଙ୍କ ସହିତ ସମାନ ହୋଇ ରହିବାକୁ ଚାହେଁ, ଯେଉଁମାନେ ନିଜର ପାରଂପରିକ ସରଳତା ଯୋଗୁଁ ଆଜି ଏପରି ଅମାନବିକ ଅତ୍ୟାଚାରର ଶିକାର ହୋଇଛନ୍ତି।'

ରବୀନ୍ଦ୍ରନାଥ ଠାକୁର /NBT/ ପୃ.୧୪୨

ଦେଶବାସୀଙ୍କୁ ଆହାର–ବସନ–ବାସଗୃହରେ ଆତ୍ମନିର୍ଭରଶୀଳ ହେବାର ଆହ୍ୱାନ ଥିଲା ସତତ ଓ ନିରନ୍ତର ସେ କାଳରେ। ସବୁବେଳେ ଲୋକେ କୁହାକୁହି ହେଉଥିଲେ– 'ଖଟିଖାଅ, କୁଟିଖାଅ, କାଟିପିନ୍ଧ'। ଢିଙ୍କିକୁଟା ଚାଉଳର ଭାତ ଥିଲା ସେ କାଳର ସ୍ୱାଭିମାନୀ ଲୋକର ଆହାର। ପିଲାଏ ତକିଲିରେ ସୂତା କାଟୁଥିଲେ। ସଭାସମିତିରେ ହାତକଟା ସୂତାର ଖେଦା / ମାଳ ଅତିଥିଙ୍କୁ ଅର୍ପଣ କରାଯାଉଥିଲା। ଘରେ ଘରେ ଅରଟ ଚାଲୁଥିଲା ଘର୍‌ର ଘର୍‌ର। ସଭାସମିତିରେ ବିଦେଶୀ ଲୁଗାରେ ଅଗ୍ନି ସଂଯୋଗ କରାଯିବା ଥିଲା ସାଧାରଣ କଥା। ଗୋପବନ୍ଧୁଙ୍କ ନେତୃତ୍ୱରେ କାଠଯୋଡ଼ି ନଈବାଲିରେ ବିଦେଶୀ ଲୁଗା ଦହନ କରାଯାଇଥିଲା। ତାଙ୍କର ଗସ୍ତକାଳରେ ସଂବଲପୁରରେ ଏକ କଳ–ଲୁଗା ପୋଡ଼ା କାର୍ଯ୍ୟ ହୋଇଥିଲା। ଏସବୁର ପ୍ରଭାବ ମଧ୍ୟ ସାହିତ୍ୟରେ ପ୍ରତିଫଳିତ ହୋଇଥିଲା। ପଣ୍ଡିତ ଗୋପବଂଧୁ 'ବନ୍ଦୀର ଆତ୍ମକଥା'ରେ ଲେଖିଥିଲେ –

ଗୃହରେ ଅରଟ, ଗ୍ରାମେ ପଞ୍ଚାୟତ
ଗ୍ରାମବାସୀଗଣ ମଧ୍ୟେ ଏକମତ
x x x
ବିଦେଶୀ ଅମେଧ୍ୟ ବସ୍ତ୍ର ଛାଡ଼ ଆଗେ
ହାତସୂତା ଲୋଡ଼ା ଏ ସ୍ୱରାଜ୍ୟ–ଯାଗେ।

ବନ୍ଦୀର ଆତ୍ମକଥା / ପୃ.୧୭–୧୮

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଉଦ୍‌ବୋଧନ ଦେଇ ଲେଖିଲେ –

ଭାଇ ହେ, ଏବେ ଅରଟ କାଟ
ଆଉ କିଛି ଭରସା ନାହିଁ
ଅରଟ ଏକା ମୁକତି ବାଟ।

କାନ୍ତ ସାହିତ୍ୟମାଳା / ପୃ. ୧୧୮

ଜାତୀୟକବି ବୀରକିଶୋର ଦାସ ଲେଖିଲେ –

ପିଙ୍ଗରେ ଆଜି ପୁଲକ ପରାଣେ ବିଦେଶୀ ବସନ ଭାଇ
ଅଂଗକୁ କର ପବିତ୍ର ତୁମର ଜାତୀୟ ସଂଗୀତ ଗାଇ।
ଏ ଦେଶବାସୀଙ୍କ ତର୍ଣ୍ଣିଚିପା ଲୁଗା
ଏ ପାପରାଶିରେ ଆଜି ନିଆଁଲଗା
ଦେବତା ଉଠନ୍ତୁ ଚେଇଁ।

ଜାତୀୟ ସଂଗୀତ / ପୃ.୧୫

ସେ ତାଙ୍କର 'ରଣଦୁନ୍ଦୁଭି' କବିତାରେ ଲେଖିଥିଲେ –

ଦିନରାତି ମୋର ସେଇ ଚିନ୍ତା, ବନ୍ଧୁ ସେଇ ଚିନ୍ତା
ଏ ସରକାର ଶବଦାହ କେବେ ହେବ
ଦେଖିବି ମୁଁ ତା'ର ଚିତା।

ବୀରକିଶୋର ଦାସ / ରଣଦୁନ୍ଦୁଭି

ବୀରକିଶୋରଙ୍କର ବିପ୍ଳବର ଗୀତ ବନାଗ୍ନି ପରି ମାଡ଼ି ଯାଇଥିଲା ଅବା। କିଶୋର–ତରୁଣଙ୍କୁଳ ତାଙ୍କ ଗୀତ ଗାଇ ପ୍ରଚାର କରୁଥିଲେ। ତହିଁରୁ କିଂଚିତ ନିମ୍ନରେ ପ୍ରଦତ୍ତ ।

ରଣ ସମୟରେ ବହି ଧରିବାକୁ
ମୋତେ ଆଉ ତୁମେ କହନା,
ଛାତିର ରକତ ତାତି ଉଠେ ମୋର
ବାଜି ଉଠେ ଯୁଦ୍ଧ ବାଜଣା।
ଭାଇ ହେ
ଘନ ଘନ ବାଜି ଉଠେ ରଣଭେରୀ
ମଦମତ୍ତ ଆଜି ଆମର ବଇରୀ

ମୋ' ଦେଶ ଦେବତା ଛାତିରକ୍ତ ଲାଗି
ଲହ ଲହ ତା'ର ରସନା ।

ରଣ ଦୁନ୍ଦୁଭି / ପୃ.୦୯

ଗାନ୍ଧିଜୀଙ୍କ ନେତୃତ୍ୱ ପ୍ରତି ଆସ୍ଥା ରଖି ମୁକ୍ତି ସଂଗ୍ରାମରେ ଯୋଗ ଦେବା ପାଇଁ ସେ ଲେଖିଥିଲେ –

ଗାନ୍ଧୀ ନାମେ ଯେବେ ବିଶ୍ୱାସ ଅଛି,
ପତାକା ତଳକୁ ଆସ
ମୁକତି ଗଂଗାର ଢେଉ ଛୁଟି ଆସେ
ବେଗାବେଗି ଦିଅ ଝାସରେ
ଜଳିଲାଣି ଅରି ପ୍ରଳୟ ଅନଳ
ଥରିଉଠେ ଆଜି ଅଷ୍ଟ କୁଳାଚଳ
ଦେବତା ଦେଶରେ ଦାନବ ରାଜତ୍ୱ
ବୋଲି ଅଛି ନାଗ ଫାଶରେ ।

କବିତା – / ପତାକା ତଳକୁ ଆସରେ/ପୃ.୧୦

ଲୋକମାନଙ୍କୁ ତୁରନ୍ତ ସଚେତନ କରାଇବା ପାଇଁ କବି ବାଂଛାନିଧି ମହାଂତି କାନ୍ଧରେ ହାରମୋନିୟମ୍ ଝୁଲାଇ ନିଜ ରଚିତ ଗୀତ ଗାଉଥିଲେ ଏହିପରି ।

ପିନ୍ଧି ପରଦେଶୀ ସାଜ
ନ ମାଡ଼େ କି ତିଳେ ଲାଜ
ପରଘର ଲୁଗାରେ କି ଥାଏ ସମ୍ମାନରେ ?
ବିଦେଶୀ ବେପାରୀ ପୋଷି
ସ୍ୱଦେଶ ଦେଉଛ ନାଶି
ଘର ତନ୍ତୀ ମଲେ ହୋଇ ଅକାରଣରେ, ହଇରାଣରେ ।

ସେ ପୁଣି ଗାଉଥିଲେ –

କାହୁଁ ଆଇଲା ବିଦେଶୀ ବେପାରୀ
ସବୁ ସାଇଲା, ହେଲୁ ଆମେ ଭିକାରି .....।

ଗାନ୍ଧିଜୀଙ୍କ ଅନୁଭବକୁ ଗୁରୁତ୍ୱ ଓ ମହତ୍ୱ ଦେବା ପାଇଁ ସେ ଲେଖିଥିଲେ –

ଦେଇ କପଡ଼ା ବିଲାତି
ନିଏ ଜାହାଜ ଭରତି
ଧାନ ଚାଉଳ ଗହମ, ଖାଇବା ଚିଜମାନ ।
ଆମେ ମରିଲେ ଭୋକରେ, ଦିନକୁ ଦିନ ଦୁଃଖରେ ।

ଜିନିଷ ଦର ବଢ଼ିଲା
ଏହା କେହି ନ ବୁଝିଲା
ଧ୍ୟାନେ ତା' ଜାଣିଲା ଗାନ୍ଧୀ ମହାରଷି ହୋ ।

ଉତ୍କଳ ପ୍ରସଙ୍ଗ / ଅଗଷ୍ଟ–୨୦୦୪/ପୃ.୩୦

ବ୍ୟାସକବି ଫକୀରମୋହନ ଲେଖିଲେ –

ଓଳିତଳେ ଲୁଣ କୋଟିଏ ଭରଣ ଥାଉ ମୋହ କଥା ଶୁଣ
ବୋଇଲେ କି ହେବ ଖାଇବାକୁ
ହେବ 'ଲିଭାରପୁର'ରୁ ଲୁଣ ।
ମାଞ୍ଚେଷ୍ଟର ତନ୍ତୀ ଲୁଗା ବୁଣୁଛନ୍ତି ତୁମ୍ଭମାନଙ୍କ ସକାଶେ
ବୁଡୁ ତନ୍ତୀବଂଶ ହେଉ ସର୍ବନାଶ
ଯାଆନ୍ତୁ ସେ ବନବାସେ ।....

କବି କୁନ୍ତଳାକୁମାରୀ ସାବତ ଲେଖିଲେ –

ତନ୍ତୀଙ୍କ ଆଙ୍ଗୁଠି କାଟି ମାଞ୍ଚେଷ୍ଟରୀ
ଲୁଗାରେ ଆମର ଘର ଦେଲେ ଭରି
ଘେରା ଆମ ଘର ଲୁଣି ପାରାବାରେ,
ଗନ୍ତାଘର ଭରା କୋମଳ କପାରେ,
ଲିଭରପୁର ଲୁଗା ପେଡ଼ି କଉଡ଼ିରେ
ନ କିଣିଲେ ଆଉ ଗତି ନାହିଁଟିରେ ....

ଗାନ୍ଧିଜୀ ସେକାଳରେ ମହିଳାମାନଙ୍କୁ ଖଦୀ ପରିଧାନ, ସୂତାକଟା ପ୍ରତି ଆକର୍ଷିତ କରିବା ପାଇଁ କହିଥିଲେ –

And Boycott means complete renounciation. We must be prepared to be satisfied with such cloth as Indian can produce, even as we are thankfully content with such children as God given us. *** And for you only hand-spun and hand-woven can be regarded as Indian manufactures. During this transition stage you can only get coarse Khadi in abundance. *** You can ensure the fruitfulness of your blessings by giving up your foreign cloth and during your spare hours, ceaselessly spinning for the nation."

By. D.G. Tendulkar, Mahatma -
Vol II, Page-56-57

ବମ୍ବେର ଉମରସେୱାନିରେ ଗାଣ୍ଠି ଗାଣ୍ଠି କଳଲୁଗା ଦହନକୁ ଗଣମାଧ୍ୟମ 'ବନଫାୟାର ଅଫ୍ ଫରେନ୍ କ୍ଲୋଥସ୍' (BONFIRE OF FOREIGN CLOTHES) ଶୀର୍ଷକ ମୁଖ୍ୟ ସଂବାଦ ପରିବେଷଣ କରିଥିଲା ସେକାଳରେ। ଏହାର ପୃଷ୍ଠଭୂମିରେ ଥିଲା ସ୍ୱଦେଶୀ ଦ୍ରବ୍ୟର ଆଦର ଓ ଖଦୀ।

ଏତଦ୍‌ବ୍ୟତୀତ ମହିଳାମାନଙ୍କର ଅବକାରୀ ସାମଗ୍ରୀ ବିକ୍ରୀବଟାକୁ ବିରୋଧ କରିବା ଥିଲା ବାନରସେନାର ମୁଖ୍ୟକାର୍ଯ୍ୟ। ଆବାଳ–ବୃଦ୍ଧବନିତା ସାମିଲ ହୋଇଥିଲେ ଅସହଯୋଗ ଆନ୍ଦୋଳନରେ। ଏପରିକି ବ୍ରିଟେନ୍‌ର ରାଜକୁମାର ୱେଲ୍‌ସ୍‌ଙ୍କ ଆଗମନକୁ ମଧ୍ୟ ହେୟଜ୍ଞାନ କରାଯାଇଥିଲା। ଆନ୍ଦୋଳନରେ ପୂର୍ଣ୍ଣରୂପ ଦେଖିବାକୁ ମିଳିଥିଲା ୧୯୨୧ ମସିହାର ଶେଷ ପାବଚ୍ଛରେ। ସରକାର ଏହାର ପ୍ରତିକାର ସ୍ୱରୂପ ଗିରଫଦାରୀ, ଜେଲଦଣ୍ଡ ଲାଗୁ କରାଇଲେ। ପାଖାପାଖି ୩୦ ହଜାର (ତିରିଶ ହଜାର) ଦେଶପ୍ରେମୀ କଏଦୀ ହେଲେ। ଉତ୍ତର ପ୍ରଦେଶର ଗୋରଖପୁରରେ ମାର୍ଚ୍ଚ ୦୫, ୧୯୨୨ରେ ଉତ୍ତ୍ୟକ୍ତ ଜନତା ପୁଲିସର ହସ୍ତକ୍ଷେପକୁ ଏଡ଼ାଇବା ପାଇଁ ଥାନାରେ ନିଆଁ ଲଗାଇଦେଲେ। ଫଳତଃ ବିଶ୍ରାମ ନେଉଥିବା ୨୨ଜଣ ପୁଲିସ ପୋଡ଼ିହୋଇ ମଲେ। ଗାନ୍ଧିଜୀ ଏଥିରେ ବ୍ୟଥିତ ହୋଇ ଆନ୍ଦୋଳନକୁ ବନ୍ଦ କରିବା ପାଇଁ କହିଲେ। ଏହାକୁ ଅନ୍ୟ ନେତାଏ ସମର୍ଥନ ନକଲେ ମଧ୍ୟ ତାହା ଧିମେଇଗଲା। ମାର୍ଚ୍ଚ ୧୦, ୧୯୨୨ରେ ଗାନ୍ଧିଜୀଙ୍କୁ ଗିରଫ କରାଗଲା। ତାଙ୍କୁ ପୁନାର ୟାରଭାଡ଼ କେନ୍ଦ୍ର ଜେଲରେ ଅଟକ ରଖାଗଲା। ଫଳତଃ ସାମୂହିକ ଆଇନ ଅମାନ୍ୟ ଆନ୍ଦୋଳନ (Civil Disobediance Movement) ପାଖାପାଖି ୬/୭ ବର୍ଷ ପଛେଇଗଲା। ତା'ପରକୁ ଲବଣ ସତ୍ୟାଗ୍ରହର ଦାଣ୍ଡିଯାତ୍ରା, ଗାନ୍ଧୀ–ଇରଉଇନ୍ ଚୁକ୍ତି, ଦ୍ୱିତୀୟ ଗୋଲଟେବଲ ବୈଠକରୁ ଆହରିତ କଳ–ବଳରୁ ୧୯୪୨ ଅଗଷ୍ଟ ୭, ୮, ୯ରେ ଆମର ଡାକରା ଥିଲା – ତୁରନ୍ତ ଭାରତ ଛାଡ଼, ହେ ବ୍ରିଟିଶ ସରକାର। ବହୁ ସଂଗ୍ରାମ, ସଂଘର୍ଷ ପରେ ଆସିଲା ଅଗଷ୍ଟ ୧୫, ୧୯୪୭। ସ୍ୱାଧୀନତା ପ୍ରାପ୍ତିର ଆଧାରଶିଳା ସ୍ୱରୂପ ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ସମୂହ ଆଇନ ଅମାନ୍ୟ, ରାଜନୀତିକ ଜାଗରଣ, ସୁଭାଷଚନ୍ଦ୍ର ବୋଷଙ୍କର ପ୍ରତିକ୍ରିୟା ଆଦିର ଅବଦାନକୁ ଅସ୍ୱୀକାର କରିହେବ ନାହିଁ। ଆଜି ମଧ୍ୟ ସ୍ୱଦେଶ–ପ୍ରୀତି କ୍ରମେ ଖଦୀ–ଖଦଡ଼ର ଆଦର ଅତୁଟ ରହିଛି ଯଦିଓ ଆମେ ମଧ୍ୟ କଳରେ ଲୁଗା ବୁଣୁଛେ। ଯନ୍ତ୍ରଶିଳ୍ପ, ବୃହତ୍ ଶିଳ୍ପାୟନରେ ଭାରତ ଏବେ ଅଗ୍ରଣୀ ରାଷ୍ଟ୍ର।

ମହାତ୍ମା ଗାନ୍ଧୀଙ୍କର ଖଦୀ ଆନ୍ଦୋଳନର ବହୁ ପୂର୍ବରୁ ଓ ଓଡ଼ିଆମାନଙ୍କର ବାଡ଼ି କିଆରିରେ ଲୁଗାଗଛ ଫୁଲକଷି ଧରୁଥିଲା। ଆଉ ଓଡ଼ିଆଣୀମାନେ ସଜ କରୁଥିଲେ ଅରଟ–ତାକୁଡ଼ି ଡାଲା। ମଧୁବାବୁଙ୍କ ଶିଳ୍ପ ସାଧନା ତ ଏଇ ଆନ୍ଦୋଳନର ଗବେଷଣାଗାର ଥିଲା। ସନ ୧୯୨୫, ଅଗଷ୍ଟ ୧୯ ତାରିଖରେ ମହାତ୍ମାଗାନ୍ଧୀ କଟକ ଆସିଥିଲେ। ମଧୁବାବୁଙ୍କ ବାସଭବନରେ ଅତିଥି ହୋଇଥିଲେ। ମଧୁବାବୁଙ୍କ ବାସଭବନ ସେଦିନ ଖଦଡ଼ ପର୍ଦ୍ଦା ପ୍ରଭୃତିରେ ସୁସଜ୍ଜିତ ହୋଇ ଏକ ଖଦୀ–ପ୍ରଦର୍ଶନୀର ଭ୍ରମ ସୃଷ୍ଟି କରିଥିଲା। ପ୍ରାକ୍–ସ୍ୱାଧୀନତା କାଳରେ ରାଜନୀତିକ ଲୋକମାନଙ୍କର ପରିଧାନ ଥିଲା ଖଦୀ। ଏପରିକି ଝୁଲା–ରୁମାଲ ମଧ୍ୟ ଖଦୀ–କନାରେ ପ୍ରସ୍ତୁତ ହେଉଥିଲା।

ଗାନ୍ଧୀ ଆଶ୍ରମମାନଙ୍କରେ ଏବେ ମଧ୍ୟ ଅରଟରେ ସୂତାକଟାର ପ୍ରତୀକ ଜୀବନ୍ତ ରହିଛି। ଆମର ଜାତୀୟ ପତାକାଠାରୁ ଆରମ୍ଭ କରି ନଥିପତ୍ରର ଆଚ୍ଛାଦନ ପର୍ଯ୍ୟନ୍ତ ସବୁଠି ରହିଛି ଖଦଡ଼ର ମହକ।

ସେକ୍ଟର ୨/୪୨୬, ନୀଳାଦ୍ରି ବିହାର
ଭୁବନେଶ୍ୱର–୨୧







# ଜାତୀୟ ପତାକା

**ଡକ୍ଟର ସୌରୀବଂଧୁ କର**

ଜାତୀୟ ପତାକା, ଜାତୀୟ ଚିହ୍ନ ଓ ଜାତୀୟ ସଂଗୀତ ଭାରତର ସାର୍ବଭୌମତ୍ୱର ପ୍ରମାଣ ଦିଏ । ଏହା ରାଷ୍ଟ୍ରର ଆତ୍ମା ସଦୃଶ୍ୟ । ଭାରତ ଏକ ବୈଚିତ୍ର୍ୟପୂର୍ଣ୍ଣ ଦେଶ ଯେଉଁଠାରେ ବିଭିନ୍ନ ଧର୍ମ, ଜାତି, ଭାଷା, ଆଦିବାସୀ, ସଂସ୍କୃତି ଓ ଉପ-ସଂସ୍କୃତି ସହାବସ୍ଥାନ କରୁଛନ୍ତି । ସମସ୍ତେ ଏକାଠି ରହିବା ଓ ଦେଶ ପାଇଁ ନିଜ ଜୀବନକୁ ସମର୍ପିତ କରିବା ଦେଶର ସ୍ୱାଧୀନତା ଓ ଅଖଣ୍ଡତାକୁ ରକ୍ଷା କରିବା ପାଇଁ ରହିଛି ଏକ ମୂଳ ପ୍ରେରଣା ।



ରାଷ୍ଟ୍ରର ଯେତେଗୁଡ଼ିଏ ପ୍ରତୀକ ରହିଛି ଜାତୀୟ ପତାକା କେବଳ ସାମାନ୍ୟ ମାତ୍ର କନାଖଣ୍ଡିଏ ନୁହେଁ ବରଂ ଏହା ହେଉଛି କାଶ୍ମୀରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଏକତ୍ୱ ବନ୍ଧନରେ ବାନ୍ଧି ହୋଇ ରହିଥିବା ମଣିଷମାନଙ୍କର ପବିତ୍ର ଚିହ୍ନ । ତେଣୁ ପ୍ରତ୍ୟେକ ଭାରତୀୟ ଏହି ପବିତ୍ରତାକୁ ରକ୍ଷା କରିବା ହେଉଛି ସେମାନଙ୍କର ପରମ ଓ ପ୍ରଥମ କର୍ତ୍ତବ୍ୟ ।

ଭାରତୀୟ ଜାତୀୟ ପତାକାର ବିବର୍ତ୍ତନ ଆମର ସ୍ୱାଧୀନତା ସଂଗ୍ରାମ ସହିତ ଜଡ଼ିତ । କେତେକ ଗବେଷକଙ୍କ ମତରେ ପ୍ରଥମେ କଲିକତାଠାରେ ଅଗଷ୍ଟ ୭,୧୯୦୬ ମସିହାରେ ପତାକା ଉତ୍ତୋଳନ କରାଯାଇଥିଲା । ତତ୍‌ପଶ୍ଚାତ୍ ୧୯୦୭ ମସିହାରେ ପ୍ୟାରିସ୍‌ଠାରେ ଭାରତୀୟ ବିପ୍ଳବୀମାନେ ଏହାକୁ ଉତ୍ତୋଳନ କଲେ । ତୃତୀୟ ପତାକା ଉତ୍ତୋଳନ କରିଥିଲେ ମିସେସ୍ ଆନିବେଶାନ୍ତ ଓ ଲୋକମାନ୍ୟ ବାଳଗଙ୍ଗାଧର ତିଳକ ୧୯୧୭ ମସିହାରେ ହୋମ୍‌ରୁଲ ଆନ୍ଦୋଳନ ସମୟରେ । ସ୍ୱାଧୀନତା ସଂଗ୍ରାମର ପୁରୋଭାଗକୁ ମହାତ୍ମା ଗାନ୍ଧୀ ଆସିବା ପରେ ଆନ୍ଧ୍ରପ୍ରଦେଶର ବିଜୟୱାଡ଼ାଠାରେ ତ୍ରିରଙ୍ଗା ପତାକା ଉତ୍ତୋଳନ କରାଯାଇଥିଲା । ଏହାର ରୂପ କ'ଣ ହେବ, ସେଥିପାଇଁ ପ୍ରସ୍ତାବ ଦେବାକୁ ଗୋଟିଏ କମିଟି ଗଠନ କରାଯାଇଥିଲା । ଏହା ଏକ ହଳଦିଆରଙ୍ଗର ପତାକା ଏବଂ ବାମକୋଣରେ ଚରଖା ରଖାଯିବାର ପ୍ରସ୍ତାବ ଦେଇଥିଲେ । ଏହି ପ୍ରସ୍ତାବକୁ ପରିବର୍ତ୍ତନ କରାଗଲା ଓ ୧୯୩୧ ମସିହାରେ ତ୍ରିରଙ୍ଗ-ଗାଢ଼ ହଳଦୀ, ଧଳା, କଳା ସବୁଜ ଏବଂ ନୀଳ ରଙ୍ଗର ଚକ୍ର ଧଳା ସ୍ଥାନରେ ଥାଇ ଜାତୀୟ ପତାକା ବୋଲି ଭାରତୀୟ ଜାତୀୟ କଂଗ୍ରେସ ପକ୍ଷରୁ ଘୋଷଣା କରାଗଲା ।

୨୨ ଜୁଲାଇ ୧୯୪୭ ମସିହାରେ ସମ୍ବିଧାନ ସଭା ଏହି ତ୍ରିରଙ୍ଗା ମଝିରେ ଅଶୋକ ଚକ୍ର ରଖି ଏହାକୁ ଜାତୀୟ





ପତାକା ଭାବେ ଗ୍ରହଣ କଲେ । ଚରଖା ସ୍ଥାନରେ ଚକ୍ର ରଖାଗଲା । ଚକ୍ର ହେଉଛି ଧର୍ମର ପ୍ରତୀକ । ଏହା ମଧ୍ୟ ସ୍ଥିର କରାଗଲା ଯେ ରଙ୍ଗଗୁଡ଼ିକ ସମାନ ଅନୁପାତରେ ରହିବ ଏବଂ ପତାକା ହାତବୁଣା ଖଦୀରେ ପ୍ରସ୍ତୁତ ହେବ । ଏହାର ଆୟତନ ମଧ୍ୟ ସ୍ଥିର କରାଗଲା । ଏହିପରି ଭାବରେ ଜାତୀୟ ପତାକା ନିର୍ଦ୍ଧାରଣ ହୋଇ ଅଗଷ୍ଟ ୧୫,୧୯୪୭ ମଧ୍ୟରାତ୍ରରେ ଉତ୍ତୋଳିତ ହେଲା ।

୧୯୦୬ ମସିହାରେ ପ୍ରଥମ ଥର ପାଇଁ ପତାକା ଉତ୍ତୋଳନ ହେବା ସମୟରେ ପତାକାର ଡିଜାଇନ୍ କ'ଣ ହେବ, ସେ ସମ୍ପର୍କରେ ଆଲୋଚନା ହୋଇଥିଲା । ଆମର ସ୍ୱାଧୀନତା ଆନ୍ଦୋଳନରେ ୧୯୦୫ ମସିହା ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ । ଜୁଲାଇ ୨୦ ତାରିଖରେ ଲର୍ଡ଼ କର୍ଜନ ବଙ୍ଗ ଭଙ୍ଗ କରିବାର ଆଦେଶ ଦେଲେ । ବଙ୍ଗକୁ ଅଲଗା ଅଲଗା କରିବା ବିରୁଦ୍ଧରେ ସମଗ୍ର ଦେଶ ବିଦ୍ରୋହ କରି ଉଠିଲା । କିନ୍ତୁ ଏହି ଘୋଷଣା ଫଳରେ କଂଗ୍ରେସ ନେତୃବୃନ୍ଦ ହତବମ୍ଭ ହୋଇଗଲେ ଏବଂ ସେମାନେ ଅପମାନିତ ଓ ଲାଞ୍ଛିତ ହେଲେ ବୋଲି ଅନୁଭବ କଲେ । କଲିକତାଠାରେ ୭ ଅଗଷ୍ଟ ଦିନ କଂଗ୍ରେସ ପକ୍ଷରୁ ଏକ ପ୍ରତିବାଦ ବିକ୍ଷୋଭ ଅନୁଷ୍ଠିତ କରାଗଲା ।

ଏହି ସମୟରେ ଏକ ଜାତୀୟ ବ୍ୟାନର ଯେଉଁଥିରେ ଭାରତର ଏକତ୍ୱ ପ୍ରତିପାଦିତ ହେବ ତାହା କରିବାର ପ୍ରସ୍ତାବ ରଖାଗଲା । ଭଗିନୀ ନିବେଦିତା ଯେ କି ଭାରତର ସ୍ୱାଧୀନତା ଚାହୁଁଥିଲେ ସେ ପତାକାରେ ବଜ୍ର ରହିବାର ପ୍ରସ୍ତାବ ଦେଇଥିଲେ । ଫେବୃଆରୀ ୧୯୦୫ ମସିହାରେ ନିବେଦିତା ଲେଖିଥିଲେ, ଆମେ ଜାତୀୟ ପତାକା ପାଇଁ ଗୋଟିଏ ଡିଜାଇନ୍ ସ୍ଥିର କରିଛୁ – ତାହା ହେଉଛି 'ବଜ୍ର ଚିହ୍ନ' । ଏହି ପତାକା ୧୯୦୬ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା ଅନୁଷ୍ଠିତ ପ୍ରଦର୍ଶନୀରେ ପ୍ରଦର୍ଶିତ ହୋଇଥିଲା । ଡକ୍ଟର ଜଗଦୀଶ ଚନ୍ଦ୍ର ବୋଷ ଏହାକୁ ଗ୍ରହଣ କରିବାକୁ ସମର୍ଥନ କରିଥିଲେ । ୧୯୦୯ ମସିହାରେ ଜାତୀୟ ପତାକା ସମ୍ପର୍କରେ ଖବର କାଗଜରେ ଆଲୋଚନା ହେଲା । ଦି ମଡ଼ର୍ଣ୍ଣ ରିଭ୍ୟୁରେ ବଜ୍ର ଚିହ୍ନ ଥାଇ ପତାକାର ଛବି ସହିତ ଲେଖା ମଧ୍ୟ ପ୍ରକାଶ ପାଇଲା । କିନ୍ତୁ ପରିଶେଷରେ ସମ୍ବିଧାନ ସଭାର ନିଷ୍ପତ୍ତିକ୍ରମେ ଜାତୀୟ ପତାକା ଗ୍ରହଣ କରାଗଲା ।

**ବିଶେଷତ୍ୱ :** ପତାକାର ଉପର ଅଂଶ ଗଭୀର ହଳଦିଆ ରଙ୍ଗ । ଏହା ସାହସ, ତ୍ୟାଗ, ପବିତ୍ରତା ଓ ବଳିଦାନକୁ ବୁଝାଏ । ଏହା ସାଧୁ ଓ ସନ୍ନ୍ୟାସୀମାନଙ୍କର ରଙ୍ଗ । ରାଜପୁତର ସୈନିକମାନେ ଓ ଗୁରୁ ଗୋବିନ୍ଦ ସିଂହଙ୍କର ଅନୁଗାମୀ ମାନେ ଏହି ହଳଦିଆ ପୋଷାକ ପିନ୍ଧନ୍ତି । ଶିବାଜୀଙ୍କର ମଧ୍ୟ ହଳଦିଆ ରଙ୍ଗର ପତାକା ଥିଲା ।

ମଝିରେ ଥିବା ଧଳା ପବିତ୍ରତା ଓ ସତ୍ୟକୁ ବୁଝାଏ । ସତ୍ୟ ବାକ୍ୟ, କର୍ମ ଓ ଚିନ୍ତାରେ ପ୍ରକାଶ ପାଏ । ଏହା ମଧ୍ୟ ଶାନ୍ତି, ପ୍ରେମ ଓ ବନ୍ଧୁତ୍ୱର ଚିହ୍ନ ।

ସବୁଜ ହେଉଛି ଜୀବନ, ଅବଧି ଓ ପ୍ରଗତିକୁ ବୁଝାଏ । ଏହା ହେଉଛି ପ୍ରକୃତିର ରଙ୍ଗ ଯାହା ମାନବତା ପାଇଁ ସଦିଚ୍ଛା ଓ ପ୍ରେମ ବହନ କରେ ।

ପତାକାର ତଳସ୍ତରରେ ସବୁଜ ଉର୍ବର ମୃତ୍ତିକା ଓ ପ୍ରଚୁର ଜଳ ସାଧନର ପ୍ରତିନିଧିତ୍ୱ କରେ, ଯାହା ମନୁଷ୍ୟ ଜୀବନର ମୌଳିକ ଉପାଦାନ । ସେଇଥି ପାଇଁ ଏହାକୁ ସବା ତଳେ ରଖାଯାଇଛି । ବଞ୍ଚିବା ପାଇଁ ଆମେ ଉତ୍ତମ ଖାଦ୍ୟ ଆବଶ୍ୟକ କରୁ । ସବୁଜ ଆମକୁ ମନେ ପକେଇ ଦିଏ ଯେ ଆମେ କଠିନ ପରିଶ୍ରମ ଦ୍ୱାରା ଆମର ପ୍ରାକୃତିକ ସଂଶାଧନର ଉପଯୁକ୍ତ ବିନିଯୋଗ କରିବା ଯାହା ଫଳରେ ପ୍ରକୃତି ଆମକୁ ସେହି ଅନୁସାରେ ବଞ୍ଚିବା ପାଇଁ ଆବଶ୍ୟକତା ଯୋଗାଇବ । ଆମେ ଉତ୍ତମ ଜୀବନ ପାଇବା ପାଇଁ ଆଶ୍ୱାସନା ପାଇବାକୁ, ସବୁଜ ଉପରକୁ ଧଳା ରହିଛି ଯାହା ସତ୍ୟ ଓ ଜ୍ଞାନର ପ୍ରତିନିଧିତ୍ୱ କରେ । ଏହାର ଅର୍ଥ ହେଉଛି ଆମର ବ୍ୟବହାର ସତ୍ୟ ଦ୍ୱାରା ପରିଚାଳିତ ହୋଇ ଜ୍ଞାନରେ ପହଞ୍ଚିବ ।

ଉତ୍ତମ ଜୀବନରୁ ଆମେ ଆଧ୍ୟାତ୍ମିକ ଜୀବନକୁ ଯିବୁ । ହଳଦିଆ ହେଉଛି ତ୍ୟାଗ । ଏହି ପତାକା ଆମକୁ ନୈତିକ ଓ ଆଧ୍ୟାତ୍ମିକ ଜୀବନ ପ୍ରତି ନିର୍ଦ୍ଦେଶ କରେ ଏବଂ ଆମର ବାକ୍ୟ ଓ ବ୍ୟବହାରରେ ଦୃଢ଼ ଓ ସାହସୀ ହେବାକୁ ଶିଖାଏ ।

ଅଶୋକଙ୍କର ଧର୍ମଚକ୍ରର ଦୁଇଟି ଦିଗ ରହିଛି । ଗୋଟିଏ ଦିଗ ହେଉଛି ତୁଳ ମର୍ଯ୍ୟାଦା ଚିହ୍ନ (ଦି କ୍ରେଷ୍ଟ) ଓ ଅନ୍ୟଟି ଆଦର୍ଶ ଭକ୍ତି । ଦି କ୍ରେଷ୍ଟ ପାଖରେ ରହିଛି ସିଂହ । ସିଂହ ମହିମା, ଶୃଙ୍ଖଳା ଓ ଶକ୍ତିର ପରିଚୟ ଦିଏ । ସିଂହ ତଳେ ରହିଛି ଏକ





ଲମ୍ବା ପଥର ଯାହାର କେନ୍ଦ୍ରରେ ରହିଛି ଗୋଟିଏ ଚକ, ଡାହାଣ ପାଖରେ ଷଣ୍ଢ, ବାମ ପାଖରେ ଅଶ୍ୱ ଏବଂ ଶେଷପ୍ରାନ୍ତରରେ ଦୁଇଟି ଚକ। ଚିହ୍ନର ଶେଷର ଲକ୍ଷ୍ୟ ହେଉଛି: – ସତ୍ୟ ମେବ ଜୟତେ।

ପଣ୍ଡିତ ନେହରୁ ଏବଂ ଡକ୍ଟର ରାଧାକ୍ରିଷ୍ଣନ ପତାକାର ରଙ୍ଗ ଉପରେ ଗୁରୁତ୍ୱ ଦେଇ କହିଥିଲେ ଯେ ପତାକାର ରଙ୍ଗ କୌଣସି ଧାର୍ମିକ ସମ୍ପ୍ରଦାୟର ବିଶେଷତ୍ୱ ନୁହେଁ। ଏହାକୁ ମଧ୍ୟ ଦାର୍ଶନିକ ଦୃଷ୍ଟିଭଙ୍ଗୀରୁ କହିଥିଲେ। ଏକଦା ଡକ୍ଟର ରାଧାକ୍ରିଷ୍ଣନ୍ କହିଥିଲେ, ଏହି କମଳା ରଙ୍ଗ ତ୍ୟାଗ ବା ଅନାଗ୍ରହ ସୂଚୀତ କରେ। କେନ୍ଦ୍ରରେ ଥିବା ଧଳାଚିହ୍ନ ଆଲୋକର ପ୍ରତୀକ ଯାହା ଆମର ବ୍ୟବହାରକୁ ଦିଗ ଦେଖାଏ ଏବଂ ସବୁଜ ଆମର ମାଟି ଓ ବୃକ୍ଷ ଜୀବନ ସହିତ ସମ୍ପର୍କକୁ ବୁଝାଏ ଯାହା ଉପରେ ସବୁ ପ୍ରକାର ଜୀବନ ନିର୍ଭର କରେ।

ଅଶୋକ ଚକ୍ର ହେଉଛି 'ଧର୍ମଚକ୍ର, ସତ୍ୟ ଓ ଧର୍ମ ବା ଗୁଣ' ସେ କହିଲେ, 'ଯେଉଁମାନେ ଏହି ପତାକା ତଳେ କାର୍ଯ୍ୟ କରିବେ, ସେମାନେ ଏହି ନୀତି ଅନୁସାରେ କାର୍ଯ୍ୟ କରିବେ।' ଚକ ଗତିକୁ ବୁଝାଏ। ଗତି ହେଉଛି ଜୀବନ ଏବଂ ସ୍ଥାଣୁତ୍ୱ ହେଉଛି ମୃତ୍ୟୁ। ଚକ ଶାନ୍ତିପୂର୍ଣ୍ଣ ଭାବରେ ତ୍ୱରାନ୍ୱିତ ପରିବର୍ତ୍ତନକୁ ବୁଝାଏ। ତେଣୁ ଚରଖା ପରିବର୍ତ୍ତେ ଅଶୋକ ଚକ୍ର ମୂଳ ଭାବନା ବିରୋଧୀ ନୁହେଁ।

'ନୀଳ ହେଉଛି ଆକାଶ ଓ ସମୁଦ୍ରର ରଙ୍ଗ। ପୃଥିବୀରେ ଏପରି କିଛି ନାହିଁ ଯାହା ଆକାଶରୁ ଉଚ୍ଚ ଓ ସମୁଦ୍ରଠାରୁ ଗଭୀର। ଆକାଶ ଓ ସମୁଦ୍ର ସୀମାହୀନ ବ୍ୟାପକତାର ପ୍ରତୀକ। ତେଣୁ ନୀଳ ରଙ୍ଗର ଚକ ଜନଗଣଙ୍କୁ ଆହ୍ୱାନ କରି ଏହି ବାର୍ତ୍ତା ଦିଏ ଯେ ଉଚ୍ଚତମ, ଦୀର୍ଘତମ ଓ ଗଭୀରତମକୁ ଯିବା ପାଇଁ।

ଚକର ବ୍ୟାସାର୍ଦ୍ଧ ଧଳା ଚିହ୍ନର ଲମ୍ବ ସହିତ ସମାନ। ପତାକାର ଉଭୟ ପାର୍ଶ୍ୱରେ ଚକ ଦେଖାଯାଏ। ଏହାର ୨୪ଗୋଟି ଅଖ ଏବଂ ଏହା ସାରନାଥରେ ଅବସ୍ଥିତ ଅଶୋକସ୍ତମ୍ଭର ପୂରାପୂରି ପରିପ୍ରକାଶ। ପତାକାର ଲମ୍ବା ଓ ଚଉଡ଼ା ହେଉଛି ଦୁଇ ଫୁଟ୍‌ରୁ ତିନି ଫୁଟ୍।

ଜାତୀୟ ପତାକା ସଦାସର୍ବଦା ମର୍ଯ୍ୟାଦା ସହିତ ବ୍ୟବହାର ହେବା ଉଚିତ। କୌଣସି ପତାକା ବା ଚିହ୍ନ ଜାତୀୟ ପତାକା ଉପରେ ସ୍ଥାପିତ ହେବା ଉଚିତ ନୁହେଁ କିମ୍ବା ତା'ର ଡାହାଣରେ ଉଡ଼ାଯିବା ଉଚିତ ନୁହେଁ। ଯଦି ଗୋଟିଏ ଧାଡ଼ିରେ ପତାକାଗୁଡ଼ିଏ ଉଡ଼ାଯାଏ, ତେବେ ସମସ୍ତ ପତାକା ଜାତୀୟ ପତାକାର ବାମପାର୍ଶ୍ୱରେ ରହିବ। ପତାକାକୁ ଉଡ଼ାଇବା ବେଳେ ଜାତୀୟ ପତାକା ସବୁଠାରୁ ଉଚ୍ଚରେ ଉଡ଼ାଯିବ।

ଯେହେତୁ ଜାତୀୟ ପତାକା ରାଷ୍ଟ୍ରର ସ୍ୱାଧୀନତା, ଏକତା ଓ ସମ୍ମାନର ଚିହ୍ନ, ତେଣୁ ପ୍ରତ୍ୟେକ ନାଗରିକ ଏହାର ପବିତ୍ରତା ରକ୍ଷା କରିବା ସର୍ବାଦୌ କର୍ତ୍ତବ୍ୟ। ଏହା ଏକ ସାମାନ୍ୟ କନାଖଣ୍ଡିଏ ନୁହେଁ ବୋଲି କାୟମନୋବାକ୍ୟରେ ଗ୍ରହଣ କରିବା ଉଚିତ୍।

ଗଜପତି ନଗର, ଭୁବନେଶ୍ୱର–୭୫୧୦୦୫





# ଜ୍ୟୋତିର୍ବିଜ୍ଞାନୀ ସାମନ୍ତ ଚନ୍ଦ୍ରଶେଖର

**ଦେବପ୍ରସାଦ ମିଶ୍ର**

'ସତ୍ୟବାଦୀ'ର ପ୍ରଥମ ଖଣ୍ଡ ସପ୍ତମ ସଂଖ୍ୟାରେ ଓଡିଶାରେ ପ୍ରତିଭାପୂଜା ଶୀର୍ଷକ ଏକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧରେ ସାମନ୍ତ ଚନ୍ଦ୍ରଶେଖରଙ୍କର ସାଧନା ଓ କର୍ତ୍ତବ୍ୟନିଷ୍ଠା ଉପରେ ଗୁରୁତ୍ୱ ଆରୋପ କରି ଗୋପବନ୍ଧୁ ଲେଖିଥିଲେ, ଜୀବନର ମହତ୍ତ୍ୱ ଫଳ ଲାଭରେ ନୁହେଁ, ସାଧନାରେ । ଚନ୍ଦ୍ରଶେଖର ଏହି ଜୀବନବ୍ୟାପୀ ସାଧନାରେ ସିଦ୍ଧ । ଏ ଶ୍ରେଣୀର ମହାପୁରୁଷମାନେ ମରି, ମରନ୍ତି ନାହିଁ । ଏହି ଉକ୍ତିରୁ ସାମନ୍ତ ଚନ୍ଦ୍ରଶେଖରଙ୍କ ପ୍ରତି ତାଙ୍କର କିପରି ଭକ୍ତି ଥିଲା, ତାହା ଅନୁମାନ କରାଯାଇପାରେ । ତାଙ୍କର ପୂରାନାମ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର ସାମନ୍ତ । ସେ ପୃଥିବୀର ଶେଷ ଦୂରବୀକ୍ଷଣ ଯନ୍ତ୍ରବିହୀନ ଶ୍ରେଷ୍ଠ ଜ୍ୟୋତିର୍ବିଜ୍ଞାନୀ ଥିଲେ ।



ଚନ୍ଦ୍ରଶେଖର ୧୪ ବର୍ଷ ବୟସରେ ଜ୍ୟୋତିଷ ଚର୍ଚ୍ଚା ଆରମ୍ଭ କରିଥିଲେ । ୧୫ ବର୍ଷ ବୟସରେ ସେ ଜାଣିପାରିଲେ ଯେ ପୂର୍ବ ସିଦ୍ଧାନ୍ତାନୁସାରେ ନକ୍ଷତ୍ରମାନେ ଓ ଗ୍ରହମାନେ ଠିକ୍ ସମୟରେ ଓ ସ୍ୱସ୍ଥାନରେ ଦେଖାଯାଉ ନାହାନ୍ତି । ତେଣୁ ସେ ବାରମ୍ୱାର ଗଣନା କରିବାକୁ ଲାଗିଲେ ଓ ପ୍ରାଚୀନ ଗଣନାର ସଂସ୍କାର କରିବାକୁ ଆରମ୍ଭ କଲେ । ସେ ପର୍ଯ୍ୟବେକ୍ଷଣର ଫଳାଫଳ ଲିପିବଦ୍ଧ କଲେ । ଏହିପରି କଠୋର ଅଧ୍ୟବସାୟ କରୁ କରୁ 'ସିଦ୍ଧାନ୍ତ ଦର୍ପଣ' ନାମକ ଗ୍ରନ୍ଥ ଜନ୍ମଲାଭ କଲା ।

ଚନ୍ଦ୍ରଶେଖରଙ୍କୁ ଯେତେବେଳେ ୩୪ ବର୍ଷ ବୟସ ସେତେବେଳେ ସେ ଏହି ଗ୍ରନ୍ଥ ରଚନା ଆରମ୍ଭ କରିଥିଲେ । 'ସିଦ୍ଧାନ୍ତ ଦର୍ପଣ'ରେ ସେ ଲେଖିଛନ୍ତି–

ଯାତାଙ୍ଗ ତ୍ରିନବାବ୍ଧି<br>
ବସ୍‌ରକଳୌ ଜନ୍ମାଭବତ୍<br>
ମାମକଂ<br>
ବେଦୋଷର୍ବୁଧବର୍ଷକେଶ ଚ<br>
ମୟା ଗ୍ରନ୍ଥୋୟମାବିଷ୍କୃତଃ ।''

ତାଙ୍କୁ ଯେତେବେଳେ ସତାବନ ବର୍ଷ ସେତେବେଳେ 'ସିଦ୍ଧାନ୍ତ ଦର୍ପଣ'ର ରଚନା ଶେଷ ହୋଇଥିଲା । ଏହା ଗ୍ରନ୍ଥର ଶେଷ ଶ୍ଳୋକରୁ ସ୍ପଷ୍ଟ ଜଣାପଡ଼େ :

ମୁକୁନ୍ଦଦେବସ୍ୟ ଚତୁର୍ଦ୍ଦଶାଙ୍କେ କାଳେ<br>
ବୃଷାଷ୍ଟେନ୍ଦୁ ସମେ ଚ ଶାକେ ।<br>
ବାରେ ଶର୍ନେର୍ମାର୍ଗ ପୁରୋନବମ୍ୟାମିଦଂ<br>
ମୟା ପୁସ୍ତକମାଶୁ ପୂର୍ଣ୍ଣମ୍ ।''



୧୮୯୯ ମସିହାରେ କଟକ କଲେଜର ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ଇଂରାଜୀ ମୁଖବନ୍ଧ ସହ 'ସିଦ୍ଧାନ୍ତ ଦର୍ପଣ' ପ୍ରକାଶ ଲାଭ କରିଥିଲା ।

ଗ୍ରନ୍ଥର ଏକବିଂଶ ପ୍ରକାଶରେ ସେ ଲେଖିଛନ୍ତି :

ତିଥିଭାଦୌ ଘଟୀଭେଦୋ ଭାଗବେଭଦଃ କୁକାଦିଷୁ
ଭବିଷ୍ୟତ୍ୟଯୁତାଦାନ୍ତଂ ନୈତେଭ୍ୟ ଇତି ମେ ମତିଃ ।
ତ୍ରିକାଳଜ୍ଞାନହୀନତ୍ୱାନ୍ ମାତୃଣାଂ ଚିରକାଳତଃ
ଅଂଶାଦିଭିଃ ପ୍ରଭେଦଶ୍ଚେତ୍ ସାକ୍ଷାତ୍ କାର୍ଯ୍ୟଃ ପ୍ରମାତୃଭିଃ ।
ତଦାମୟୋକ୍ତ ପୂର୍ବେଷୁ ଭଗଣେଷ୍ୱପି ପର୍ଯ୍ୟୟାଃ
ଦେୟା ହେୟା ବକ୍ଷ୍ୟମାଣା ହାନିବୃଦ୍ଧ୍ୟନୁସାରତଃ ।''

ଅର୍ଥାତ୍ ମୋର ଧାରଣା ଆଜିଠାରୁ ଅୟୁତେ ବର୍ଷ ପରେ ମଧ୍ୟ ମୋର ଏ ଗଣନା ଠିକ୍ ଆଜିପରି ଦୃକ୍‌ସିଦ୍ଧ ହେବ । ତିଥି ନକ୍ଷତ୍ର ଆଦିରେ ଦଣ୍ଡଭେଦ ହେବନାହିଁ କି ମଙ୍ଗଳ ଆଦି ଗ୍ରହ ସ୍ପଷ୍ଟ କଲାବେଳେ ଅଂଶଭେଦ ହେବ ନାହିଁ । ମୋର ଏ ଭଗଣାଦି ରଚନା ଅତିମାତ୍ରାରେ ନିର୍ଭୁଲ ଥିବା ମୋର ବିଶ୍ୱାସ । ଅୟୁତେ (୧୦ ହଜାର) ବର୍ଷ ପରେ ପୁଣି ମୋର ଏହି ଭଗଣାଦି ଦ୍ୱାରା ସାଧିତ ଗ୍ରହରେ ଉପଲବ୍ଧି କଲାବେଳେ ତଫାତ୍ ଦେଖାଗଲେ କିଛି ସଂସ୍କାର କରିବାକୁ ହେବ, କାରଣ ମୁଁ ତ୍ରିକାଳଜ୍ଞ ନୁହେଁ । ଏଣୁ ବହୁ ବର୍ଷ ପରେ ମୋର ଏହି ରଚନା ଦ୍ୱାରା ଉପଲବ୍ଧି କଲାବେଳେ ଅଂଶାଦି ପ୍ରଭେଦ ଦେଖାଦେଇପାରେ । ସତରେ ଯଦି ତାହା ହୁଏ, ତାହାହେଲେ ମୁଁ ଯେଉଁସବୁ ଗ୍ରହ ଭଗଣ ସଂଖ୍ୟା କହିଛି, ସେଥିରେ ହାନିବୃଦ୍ଧି ଅନୁସାରେ କେତେକ ସଂଖ୍ୟା ଯୋଗ ବିୟୋଗ କରିବାକୁ ହେବ ।

ପୃଥିବୀ ସ୍ଥିର ଥିବାର ଓ ସୂର୍ଯ୍ୟ ଗତି କରୁଥିବାର ଚନ୍ଦ୍ରଶେଖର ଦୃଢ଼ ମତ ପୋଷଣ କରିଥିଲେ । 'ସିଦ୍ଧାନ୍ତ ଦର୍ପଣ'ର ସପ୍ତଦଶ ପ୍ରକାଶରେ ସେ ଲେଖିଛନ୍ତି :

ତୁଲ୍ୟର୍କୋଦୟଦର୍ଶନାଜ୍ଜକୁଳମାନ୍ଦ୍ୟୋଦ୍ରାକ୍
ଫଳପ୍ରେକ୍ଷଣାଚ୍ଚନ୍ଦ୍ରାଙ୍କସ୍ଥିତି ଦର୍ଶନାତ୍
ଗୁରୁଲଘୁଦ୍ରବ୍ୟ ସ୍ୱଭାବକ୍ଷଣାତ୍ ।
ଆକୃଷ୍ଟସ୍ୟ ଚ କର୍ଷକାଭି
ମୁଖତାସିଦ୍ଧେଃ ଶରାଦର୍ଶନା
ଦୁଷ୍ଟାଂଶୋରିତି ସାଧିତଂ
ବହୁବିଧୈର୍ଲିଙ୍ଗୈଃ ସ୍ଥିରତ୍ୱଂ କ୍ଷିତୌ ।''

ଅର୍ଥାତ୍ ନକ୍ଷତ୍ର ଗୋଲର ଗୋଟିଏ ସ୍ଥାନରେ ଏହି ନକ୍ଷତ୍ରର ବରାବର ଉଦୟ ହେଉଥିବା ଦେଖାଯାଉଥିବାରୁ, ବୁଧ ଓ ମଙ୍ଗଳର ମନ୍ଦ ତଥା ଶୀଘ୍ର ଫଳରେ ମନ୍ଦ କେନ୍ଦ୍ରଜନିତ ହ୍ରାସ ଓ ବୃଦ୍ଧି ଘଟୁଥିବାରୁ, ଚନ୍ଦ୍ର କଳଙ୍କ ବରାବର ପୃଥିବୀକୁ ଦେଖାଯାଉଥିବାରୁ, ଗୁରୁ ଲଘୁ ଦ୍ରବ୍ୟର ସ୍ୱଭାବ ପର୍ଯ୍ୟବେକ୍ଷଣରୁ ଆକୃଷ୍ଟ ବସ୍ତୁ ଆକର୍ଷଣ ଆଡ଼କୁ ଯାଉଥିବାର ଅନୁଭବରୁ, ସୂର୍ଯ୍ୟର ଶର ନ ଥିବା ଜଣାଯିବାରୁ, ଏହିପରି ଅନେକ ଯୁକ୍ତିରୁ ପୃଥିବୀର ସ୍ଥିରତା ସାଧିତ ହେଲା ।

ତସ୍ମାଭିଷ୍ଟତି ଭୂଃ ପ୍ରୟାତି ସବିତା ମୂର୍ତ୍ତ୍ୟାସ୍ୱମଧ୍ୟାକ୍ଷୟା,
ବିଭ୍ରତ୍ ଖେଚରଚକ୍ରମକ୍ରମଗତୀ ବୈତତ୍ କ୍ଷିତାବୀକ୍ଷ୍ୟତେ ।

ମତ୍‌ସିଧାନ୍ତମିମଂ ବିଚିଚ୍ୟସକଳଂ
ସନ୍ତଃ ପ୍ରଶଂସନ୍ତୁ ବା ନୀନ୍ଦନ୍ତୁ
ଶ୍ରମବେଦିକୋ ହ୍ୟୁଭୟଥା ମଂ
ସ୍ୟେ କୃତାର୍ଥାଂ କୃତି ।''

ଅର୍ଥାତ୍ ମୋ ମତେ ଯେ ପୃଥିବୀ ସ୍ଥିର । ସୂର୍ଯ୍ୟ ନିଜର ମାଧ୍ୟମ ମୂର୍ତ୍ତି ଦ୍ୱାରା (ମାଧ୍ୟମ ସୂର୍ଯ୍ୟ) ଅନ୍ୟାନ୍ୟ ଗ୍ରହମାନଙ୍କୁ ଧରି ବୁଲୁଅଛି ଏବଂ ଗ୍ରହ ସମୂହର କୌଣସି କ୍ରମ ଗମନ ନାହିଁ (ଯେଝା ବାଟରେ ଯେ ଚାଲିଛନ୍ତି) । ଏହି କଥା ପୃଥିବୀରେ ବେଶ୍ ଦେଖାପଡ଼ିଯାଉଛି । ପରିଶ୍ରମର ମୂଲ୍ୟ ଯେଉଁମାନେ ଜାଣନ୍ତି, ସେପରି ସଜ୍ଜନମାନେ ମୋତେ ଏଥିପାଇଁ ପ୍ରଶଂସା ବା ନିନ୍ଦା କରନ୍ତୁ, ସେଥିରେ କିଛି ଯାଏ ଆସେ ନାହିଁ । ମୋର ସିଦ୍ଧାନ୍ତକୁ ସେମାନେ ବିଚାର କରନ୍ତୁ (ଏହାହିଁ ପ୍ରାର୍ଥନା) । ଉଭୟ କଥା ହେଲେ ମଧ୍ୟ ମୁଁ ମୋର ଏହି ସାମାନ୍ୟ କାର୍ଯ୍ୟ ପାଇଁ କୃତାର୍ଥ ହେବି ।

ଚନ୍ଦ୍ରଶେଖର ପୁନଶ୍ଚ ଲେଖିଛନ୍ତି :

ହେ ଧୀରା ଗଣକାଃ ସମସ୍ତ ସୁହୃଦୋ ବର୍ଦ୍ଧାଞ୍ଜଳିର୍ବିଚ୍ମ୍ୟହଂ
ଯା ମେଦ୍ଧସ୍ଥିନକନିଷ୍ଟ ଧାର୍ଷ୍ଟ୍ୟପଟୁତା ତାଂ ମାର୍ଷ୍ଟୁମିଚ୍ଛାସ୍ତୁବଃ ।
ବାଳାନାଂ ପ୍ରତିପତ୍ତୟେ କିଳ ମୟା ସମ୍ବାଦ ଦମ୍ଭା ଦିୟଂ
ଭୂନିଷ୍ଠା ଗର୍ବିତା ଯଥାମତି
ଭବତ୍ ତୋଷାତ୍ ସଦୋଷା ନ କେ ।''

ଅର୍ଥାତ୍ ହେ ପଣ୍ଡିତ ଗଣକମାନେ, ଆପଣମାନେ ସମସ୍ତଙ୍କର ବନ୍ଧୁ । ଏ ଭୂ ସ୍ଥିରବାଦରେ ମୋର ଯେଉଁ ଧୃଷ୍ଟତା





ହୋଇଛି, ତାହା ମାର୍ଜନା କରିବା ନିମନ୍ତେ ଆପଣମାନଙ୍କର ଇଚ୍ଛା ହେଲା । ସାଧାରଣ (ଅଜ୍ଞଙ୍କ ଗଣକ) ପିଲାମାନଙ୍କର ବୋଧ ନିମନ୍ତେ ଭୂ ଭ୍ରମବାଦ ଛଳରେ ପୃଥିବୀର ସ୍ଥିରତା ଆପଣମାନଙ୍କର ସନ୍ତୋଷ ପାଇଁ ମୋତେ ଯାହା ଦେଖାଗଲା କହିଗଲି । ଜଗତରେ ଦୋଷ କାହାର ନାହିଁ ? ସମସ୍ତଙ୍କର ତ୍ରୁଟି ଅଛି । ଏଣୁ ମୋର ମଧ୍ୟ ଏ ଯୁକ୍ତିରେ ଥାଇପାରେ ।

'ସିଦ୍ଧାନ୍ତ ଦର୍ପଣ'ର ଶେଷ ଅଂଶରେ ଚନ୍ଦ୍ରଶେଖର ପରିଷ୍କାର ଭାବରେ ସ୍ୱୀକାର କରିଛନ୍ତି ଯେ ତାଙ୍କର ସିଦ୍ଧାନ୍ତଗୁଡ଼ିକ ସମାଲୋଚନାର ଊର୍ଦ୍ଧ୍ୱରେ ନୁହେଁ । ଆବଶ୍ୟକ ସ୍ଥଳେ ବିଦ୍ୱାନମାନେ ସେଗୁଡ଼ିକୁ ସଂଶୋଧନ କରିବା ପାଇଁ ସେ ଆହ୍ୱାନ କରିଥିଲେ ।

ଗବେଷଣା କରିବା ପାଇଁ ଏହିପରି ଦୃଷ୍ଟିବୋଧ ଏବଂ ଚିନ୍ତାଧାରା ବିଜ୍ଞାନର ଉତ୍କୃଷ୍ଟ ନିଦର୍ଶନ । ତେଣୁ 'ସିଦ୍ଧାନ୍ତ ଦର୍ପଣ' ଦେଶ ଭିତରେ ଓ ବିଶେଷ କରି ପାଶ୍ଚାତ୍ୟ ଦେଶରେ ଉଚ୍ଚ ପ୍ରଶଂସିତ ହୋଇଥିଲା ।

ମାର୍ଚ୍ଚ ୯, ୧୮୯୯ରେ ବିଖ୍ୟାତ ବ୍ରିଟିଶ୍ ବିଜ୍ଞାନ ପତ୍ରିକାରେ ଲେଖିଥିଲା ଯେ 'ସିଦ୍ଧାନ୍ତ ଦର୍ପଣ'ର ପ୍ରଣେତାଙ୍କୁ ୟୁରୋପୀୟ ଜ୍ୟୋତିର୍ବିଜ୍ଞାନୀ ଟ୍ରାଇକୋ ବ୍ରାହେଙ୍କ ସହିତ ଅଧ୍ୟାପକ ରାୟ ତୁଳନା କରିଅଛନ୍ତି, କିନ୍ତୁ ତାଙ୍କୁ ଟାଇକୋଙ୍କଠାରୁ ଶ୍ରେଷ୍ଠ ବିବେଚିତ କରିବା ଉଚିତ । ଏହି ଲେଖାରେ ଦୁଃଖ ପ୍ରକାଶ କରାଯାଇଥିଲା ଯେ ଚନ୍ଦ୍ରଶେଖରଙ୍କ ଦେଶବାସୀମାନେ ତାଙ୍କର ନିଷ୍ଠା ଓ ଉଦ୍ୟମର ମହତ୍ତ୍ୱ ଉପଲବ୍ଧି କରିପାରି ନଥିଲେ ।

ଅନ୍ୟ ଏକ ବ୍ରିଟିଶ୍ ପତ୍ରିକା 'Knowledge' ନଭେମ୍ବର ୧୮୯୯ ସଂଖ୍ୟାରେ ଲେଖିଥିଲା ଯେ ପୂର୍ବ କେତେ ବର୍ଷ ଭିତରେ ଜ୍ୟୋତିର୍ବିଜ୍ଞାନ ଉପରେ ଯେତେ ପୁସ୍ତକ ପ୍ରକାଶିତ ହୋଇଥିଲା, ସେଥିମଧ୍ୟରୁ 'ସିଦ୍ଧାନ୍ତ ଦର୍ପଣ' ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏବଂ କେତେକ ଦୃଷ୍ଟିକୋଣରୁ ସର୍ବାଧିକ ଶିକ୍ଷାମୂଳକ ।

୧୯୦୩ ମସିହାରେ ବଡ଼ଲାଟ ଲର୍ଡ଼ କର୍ଜନ ଏବଂ ତାଙ୍କ ପରିଷଦର ସଭ୍ୟମାନେ ବ୍ରିଟିଶ୍ ସରକାରଙ୍କ ଭାରତ ସଚିବଙ୍କୁ ଏକ ପତ୍ର ଲେଖି ଜଣାଇଥିଲେ ଯେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ସମ୍ମାନିତ କରାଗଲେ ସରକାର ନିଜେ ସମ୍ମାନିତ ହେବେ ।

୧୯୦୪ରେ ପ୍ରକାଶିତ ଦୂରବୀକ୍ଷଣ ଯନ୍ତ୍ର ବିହୀନ ଜ୍ୟୋତିର୍ବିଜ୍ଞାନ ବିଷୟକ ଇଂରାଜୀ ପୁସ୍ତକର ପ୍ରଣେତା ଶ୍ରୀ ୱାଲଟର ମଣ୍ଡର ଲେଖିଥିଲେ ଯେ ଦୂରବୀକ୍ଷଣ ଯନ୍ତ୍ର ସ୍ୱପ୍ନରେ ମଧ୍ୟ ନ ଦେଖି ଅରଣ୍ୟାବୃତ ଓଡ଼ିଶା ଗ୍ରାମର ଏହି ବ୍ୟକ୍ତିଙ୍କଠାରେ ସତେ ଯେମିତି ବିଜ୍ଞାନର ଜଣେ ଆଦିପିତା ଆବିର୍ଭୂତ ହୋଇଥିଲେ ।

ଚନ୍ଦ୍ରଶେଖର ବ୍ରିଟିଶ୍ ନାବିକ ପଞ୍ଜିକା ବା ଅନ୍ୟ କୌଣସି ବିଦେଶୀ ଜ୍ୟୋତିର୍ବିଜ୍ଞାନ ଗ୍ରନ୍ଥର ସାହାଯ୍ୟ ନେଇ ନଥିଲେ । ଓଡ଼ିଆ ଓ ସଂସ୍କୃତ ଛଡ଼ା ସେ କୌଣସି ଭାଷା ଜାଣି ନ ଥିଲେ । କେବଳ ଦୂରବୀକ୍ଷଣ ଯନ୍ତ୍ର ନୁହେଁ, ଏପରିକି ତାଙ୍କ ପାଖରେ ଗୋଟିଏ ଘଣ୍ଟା ମଧ୍ୟ ନ ଥିଲା । ଏହା ପରିବର୍ତ୍ତେ ସେ ଗୋଟିଏ ସ୍ୱୟଂବହ ଯନ୍ତ୍ର ପ୍ରସ୍ତୁତ କରିଥିଲେ । ସେ ମାନଯନ୍ତ୍ର, ଶଙ୍କୁଯନ୍ତ୍ର ଓ ଖଗୋଳ ନାମକ ଯନ୍ତ୍ର ସବୁ ବ୍ୟବହାର କରୁଥିଲେ । ଏଗୁଡ଼ିକ ସେ ନିଜ ବୁଦ୍ଧି ଓ ବଳରେ ପ୍ରସ୍ତୁତ କରିଥିଲେ । ଏହିପରି ତିନି ଚାରୋଟି ଯନ୍ତ୍ର ବ୍ୟତୀତ ତାଙ୍କ ପାଖରେ ଅନ୍ୟ କିଛି ନ ଥିଲା ।

ଚନ୍ଦ୍ରଶେଖର ୧୮୯୩ ମସିହାରେ ପରିଣତ ବୟସରେ ଖଣ୍ଡପଡ଼ା ପରିତ୍ୟାଗ କରି ଓଡ଼ିଶାର ପ୍ରାଚୀନ ସହର କଟକକୁ ଆସିଥିଲେ । ୧୮୯୪ରେ କଟକରେ ପ୍ରଥମ ଥର ସେ ଦୂରବୀକ୍ଷଣ ଯନ୍ତ୍ର ଦେଖିଥିଲେ । ୧୮୯୮ରେ ଅଧ୍ୟାପକ ରାୟ ସାମନ୍ତଙ୍କୁ କଟକରେ ଗୋଟିଏ ଘଣ୍ଟା ଓ ଗୋଟିଏ ସୂର୍ଯ୍ୟଘଡ଼ି ଉପହାର ଦେଇ ବହୁ କଷ୍ଟରେ ତାଙ୍କର ଗୋଟିଏ ଫଟୋ ଉଠାଇ ଥିଲେ । ତେଣୁ କହିବାକୁ ହେବ ଯେ ବିନା ଯନ୍ତ୍ରରେ କେବଳ ଦୃଷ୍ଟି ଦ୍ୱାରା ଚନ୍ଦ୍ରଶେଖର ଅସାଧ୍ୟ ସାଧନ କରିଥିଲେ ।

ସେପ୍ଟେମ୍ବର ୧୫, ୧୯୦୨ରେ 'Indian Nation' ନାମକ ଖବର କାଗଜରେ ଚନ୍ଦ୍ରଶେଖରଙ୍କ ବିଷୟରେ ଗୋଟିଏ ପ୍ରବନ୍ଧରେ ଅଧ୍ୟାପକ ରାୟ ଲେଖିଥିଲେ, ଦୁଇଟି ଉଦ୍ଦେଶ୍ୟ ନେଇ ମୁଁ ତାଙ୍କ ଗ୍ରନ୍ଥ ମୁଦ୍ରଣର ଦାୟିତ୍ୱ ସ୍ୱଇଚ୍ଛାରେ ନିଜ ଉପରେ ନ୍ୟସ୍ତ କରିଥିଲି । ପ୍ରଥମ ଓ ମୁଖ୍ୟ ଉଦ୍ଦେଶ୍ୟ ହେଲା ଭାସ୍କରଙ୍କ





ଏହି ବୌଦ୍ଧିକ ଦାୟାଦ ଯେଉଁ ବିଶୁଦ୍ଧ ବୈଜ୍ଞାନିକ ପ୍ରତିଭା ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ ତାଙ୍କୁ ଆନ୍ତରିକ ସମ୍ମାନ ଓ ଶ୍ରଦ୍ଧାଞ୍ଜଳି ଦେବା । ଏଥିରୁ କିଏ ତାଙ୍କୁ ବଞ୍ଚିତ କରିପାରିବ, ଯେ ତାଙ୍କୁ କାର୍ଯ୍ୟରତ ଥିଲାବେଳେ ଦେଖି ଆନନ୍ଦ ପାଇଥିବ ଏବଂ ମୋ ପରି ତାଙ୍କ ସହିତ ଘଣ୍ଟା ଘଣ୍ଟା ଧରି କଥାବାର୍ତ୍ତା କରିଥିବ ? ମୋର ଦ୍ୱିତୀୟ ଉଦ୍ଦେଶ୍ୟ ହେଲା ମୁଁ ପ୍ରମାଣ କରିବାକୁ ଚାହୁଥିଲି ଯେ, ଅତି ପୁରୁଣାକାଳିଆ ଯନ୍ତ୍ର ସାହାଯ୍ୟରେ ମଧ୍ୟ ମୋଟାମୋଟି ସଠିକ୍ ଫଳାଫଳରେ ଉପନୀତ ହେବା ଏକବାରେ ଅସମ୍ଭବ ନୁହେଁ, ଯଦି ଜଣକର ଯଥେଷ୍ଟ ଧୈର୍ଯ୍ୟ ଥାଏ ଏବଂ ଦୀର୍ଘଦିନର ଅଭ୍ୟାସ ଥାଏ । ଯେଉଁ ସଂସ୍କୃତ ଜ୍ୟୋତିର୍ବିଜ୍ଞାନର ଐତିହାସିକମାନେ କହୁଛନ୍ତି, ଯେ ପ୍ରାଚୀନ ହିନ୍ଦୁ ଜ୍ୟୋତିର୍ବିଜ୍ଞାନୀମାନେ ବୈଦେଶିକ ସାହାଯ୍ୟ ବିନା ସେମାନଙ୍କ ଗ୍ରନ୍ଥରେ ଥିବା ଫଳରେ ପହଞ୍ଚି ପାରି ନ ଥାନ୍ତେ ଏହା ପରୋକ୍ଷରେ ତାଙ୍କୁ ଗୋଟିଏ ଶିକ୍ଷା ।''

କିନ୍ତୁ ଦୁଃଖର ବିଷୟ ଆମେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ଉଚିତ ସମ୍ମାନ ଦେଇପାରି ନାହୁଁ । ଆମେ ଭୁଲିଯିବା ଠିକ୍ ନୁହେଁ ଯେ ଆଧୁନିକ ଜ୍ୟୋତିର୍ବିଜ୍ଞାନର ଆବିର୍ଭାବ ବହୁ ପୂର୍ବରୁ ୨ୟରୁ ୧୨ଶ ଶତାବ୍ଦୀ ମଧ୍ୟରେ ଭାରତରେ ବରାହମିହିର, ଆର୍ଯ୍ୟଭଟ୍ଟ, ବ୍ରହ୍ମଗୁପ୍ତ, ଭାସ୍କର ପ୍ରଭୃତି ପଣ୍ଡିତମାନେ ଜ୍ୟୋତିର୍ବିଜ୍ଞାନରେ ଶ୍ରେଷ୍ଠ ସ୍ଥାନ ଲାଭ କରିଥିଲେ । ସାମନ୍ତ ଚନ୍ଦ୍ରଶେଖରଏହି ଅମର ଧାରାର ପ୍ରତିନିଧି ମାତ୍ର । ପ୍ରାୟ ୧୧ଶ ଶତାବ୍ଦୀରେ ଶତାନନ୍ଦ ନାମକ ପ୍ରଖ୍ୟାତ ଜ୍ୟୋତିର୍ବିଜ୍ଞାନୀ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଗ୍ରନ୍ଥ ଭାସ୍ୱତୀ'' ଏବେ ମଧ୍ୟ ଗ୍ରହଣ ଗଣନାରେ ବ୍ୟବହୃତ ହେଉଅଛି । କିନ୍ତୁ ୧୯ଶ ଶତାବ୍ଦୀର ଶେଷ ଭାଗରେ ଚନ୍ଦ୍ରଶେଖର ପ୍ରାଚ୍ୟ ଜ୍ୟୋତିର୍ବିଜ୍ଞାନୀ ରୂପେ ଉଚ୍ଚସ୍ଥାନ ଅଧିକାର କରିଥିଲେ ଏବଂ ହିନ୍ଦୁ ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ପ୍ରଗତି ଆଣି ପାରିଥିଲେ । ତେଣୁ ତାଙ୍କ ସାଧନାର ଫଳ ଓ ବାଣୀର ଯଥୋଚିତ ଚର୍ଚ୍ଚା ଓ ପୁନଃପ୍ରକାଶ ଆବଶ୍ୟକ ।

ଚନ୍ଦ୍ରଶେଖର 'ସିଦ୍ଧାନ୍ତ ଦର୍ପଣ''ର ପ୍ରଥମ ପ୍ରକାଶରେ ଯଥାର୍ଥରେ ଲେଖିଛନ୍ତି –

ଶ୍ରେଷ୍ଠଂ ସର୍ବଶ୍ରୁତାନାଂ ଶ୍ରୁତମିତିକୃତିଭି ଜ୍ୟୋତିଷଂ ତତ୍ରସାରଃ
ସିଦ୍ଧାନ୍ତସ୍ତତ୍ରଗୋଲସ୍ତଦବଗତଦି କୃତୀ ବର୍ତ୍ତତେ ଯତ୍ର ମର୍ତ୍ତ୍ୟଃ ।
ବିଦ୍‌ବତ୍ ପୂଜ୍ୟଃ ସ ଦେଶଃ ସକଳକଲୁଷହୃଦ୍
ଧର୍ମଶର୍ମାଶ୍ରୟଃ ସ୍ୟାଦ୍–
ଯତ୍ରାସ୍ତେ ନୈଷତସ୍ମିନ୍ ପଶୁଚରିତପରେ
ପାପଜାପତ୍ ପ୍ରତାପଃ ।''

ଅର୍ଥାତ୍ ଶାସ୍ତ୍ରଜ୍ଞ ଧାର୍ମିକ ଲୋକେ କହନ୍ତି, ସବୁ ଶାସ୍ତ୍ର ମଧ୍ୟରେ ଜ୍ୟୋତିଷଶାସ୍ତ୍ର ଶ୍ରେଷ୍ଠ, ଜ୍ୟୋତିଷରେ ପୁଣି ସିଦ୍ଧାନ୍ତ ଶ୍ରେଷ୍ଠ, ସିଦ୍ଧାନ୍ତରେ ଗୋଲ ପୁଣି ସାର ଅଟେ । ଗୋଲଜ୍ଞ ବିଦ୍ୱାନ୍ ଯେଉଁ ଦେଶରେ ଥାନ୍ତି, ସେହି ଦେଶକୁ ବିଦ୍ୱାନ୍‌ମାନେ ପୂଜା କରନ୍ତି । ସେ ଦେଶରେ ପାପ ରହେ ନାହିଁ । ଧର୍ମ ଓ ସୁଖ ସେହି ଦେଶକୁ ଆଶ୍ରୟ କରି ରହନ୍ତି, ଯେଉଁ ଦେଶରେ ଗୋଲଜ୍ଞ ବିଦ୍ୱାନ୍ ଲୋକର ଅଭାବ, ସେ ଦେଶରେ ପଶୁପ୍ରବୃତ୍ତି ବଢ଼ିଯାଏ । ଫଳରେ ପାପଜନିତ କୁପ୍ରଭାବ ସେ ଦେଶକୁ ନଷ୍ଟ କରେ ।''

ଜ୍ୟୋତିର୍ଲୋକବାସୀ ମହାମୁନିଙ୍କର
ଜ୍ୟୋତିର୍ବିଦ୍ ତୁମ୍ଭେ ନିତ୍ୟ ସହଚର
ରହିବ ତାବତ ଭବେ ତୁମ୍ଭ ଯଶ
ଦୀପିବେ ଯାବତ୍ ଏ ଜ୍ୟୋତି ଛାନ୍ଦସ ।

କବିବର ରାଧାନାଥ ରାୟଙ୍କ କାବ୍ୟ 'ଦରବାର'ରୁ ଉଦ୍ଧୃତ ଉପରୋକ୍ତ ଧାଡ଼ିଗୁଡ଼ିକ ସାମନ୍ତ ଚନ୍ଦ୍ରଶେଖରଙ୍କ ପ୍ରତି ଉଦ୍ଦିଷ୍ଟ ।

ଗୋପୀନାଥ ଦାଶ, କେଦାରନାଥ ମାହାପାତ୍ର, ରବିନାରାୟଣ ଦାଶ, ପଂଡିତ ନୀଳକଣ୍ଠ ଦାଶଙ୍କ ସଂଦର୍ଭରେ ବହୁ ବିବରଣି ମିଳିଥାଏ ।

ବରିଷ୍ଠ ସାମ୍ବାଦିକ
ସାମ୍ବାଦିକ କଲୋନୀ, ତୁଳସୀପୁର, କଟକ–୮





# ପାରାଦ୍ୱୀପ ବନ୍ଦର ଓ ବିଜୁବାବୁ

**ବସନ୍ତ କୁମାର ନାୟକ**

ସ୍ୱାଧୀନତାର ପରବର୍ତ୍ତୀ ସମୟରେ ଓଡ଼ିଶାର ଗର୍ବ ବୋଲି କୁହାଯାଉଥିବା ଚାରୋଟି ଆଧୁନିକ କୀର୍ତ୍ତି ମଧ୍ୟରୁ ପାରାଦ୍ୱୀପ ବନ୍ଦର ଅନ୍ୟତମ। ୧୯୫୭ ମସିହାର ହୀରାକୁଦ ବନ୍ଧ ପୃଥିବୀର ଅନ୍ୟତମ ଦୀର୍ଘତମ ବନ୍ଧ ହୋଇଥିବା ବେଳେ ୧୯୬୧ ମସିହାରେ ନିର୍ମିତ ରାଉରକେଲା ଇସ୍ପାତ କାରଖାନା ଓ ୧୯୮୪ ମସିହାରେ ନ୍ୟାସନାଲ ଆଲୁମିନିୟମ କମ୍ପାନୀ (NALCO) ଏ ଦୁଇଟି ଆରମ୍ଭରୁ ଥିଲା କେନ୍ଦ୍ରୀୟ ପ୍ରକଳ୍ପ। ମାତ୍ର ପାରାଦ୍ୱୀପ ବନ୍ଦର ନିର୍ମାଣ ଥିଲା ସ୍ୱତନ୍ତ୍ର। ଏହାର ପ୍ରତିଷ୍ଠା ଥିଲା ଚମକପ୍ରଦ ଓ ରୋମାଞ୍ଚକର। ବିଗତ ଶତାବ୍ଦୀର ଷାଠିଏ ଦଶକର ପ୍ରଥମାର୍ଦ୍ଧରେ କର୍ଦ୍ଦମାକ୍ତ ଘଞ୍ଚ ହେନ୍ତାଳ ଜଙ୍ଗଲ ମଧ୍ୟରୁ ଅପ୍ରତ୍ୟାଶିତ ଭାବେ ଆତ୍ମପ୍ରକାଶ କରି ଇତିହାସର ଏକ ନୂଆ ପଥ ସୃଷ୍ଟି କଲା। ଦେଶର ତୃତୀୟ ପଞ୍ଚବାର୍ଷିକ ଯୋଜନାର ଏକ ପ୍ରକଳ୍ପ ହୋଇନଥିଲେ ମଧ୍ୟ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ "Now or Never", ''ଏବେ ଅବା କେବେ ନୁହେଁ'', ନୀତିରେ ନିର୍ମିତ ହୋଇ ସମ୍ପ୍ରତି ଦେଶରେ ଗଭୀରତମ ପ୍ରାକୃତିକ ପୋତାଶ୍ରୟ ଭାବେ ବିଶ୍ୱବାସୀଙ୍କୁ ଆକର୍ଷଣ କରିବା ସହ ସମଗ୍ର ପୂର୍ବ ଉପକୂଳରେ ପ୍ରମୁଖ ଶିଳ୍ପ ବାଣିଜ୍ୟ କେନ୍ଦ୍ରର ମର୍ଯ୍ୟାଦା ଲାଭ କରିଛି। ଏହା ଓଡ଼ିଶା ସମେତ ଆନ୍ଧ୍ର, ଛତିଶଗଡ଼, ଝାଡ଼ଖଣ୍ଡ, ମଧ୍ୟପ୍ରଦେଶ, ବିହାର, ପଶ୍ଚିମବଙ୍ଗ, ଉତ୍ତର ପ୍ରଦେଶ ତଥା ଦେଶର ପୂର୍ବାଞ୍ଚଳର ବେପାର ବାଣିଜ୍ୟ ଓ ପଣ୍ୟ ବିନିମୟର ମୁଖ୍ୟ ଦ୍ୱାରଭାବେ ପ୍ରତିଷ୍ଠିତ ହୋଇପାରିଛି। ଦ୍ରୁତ ପରିବର୍ତ୍ତନଶୀଳ ବିଶ୍ୱରେ ଦେଶର ଅର୍ଥନୀତିକୁ ସୁଦୃଢ଼ କରିବା ସହିତ ରାଜ୍ୟ ତଥା ଦେଶର ଆର୍ଥିକ, ବାଣିଜ୍ୟିକ ବିକାଶରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛି।




ସର୍ବଭାରତୀୟ ବନ୍ଦର ଶିଳ୍ପରେ ପାରାଦ୍ୱୀପ ବନ୍ଦର ନୌବାଣିଜ୍ୟ କ୍ଷେତ୍ରରେ ୨୦୧୫-୧୬ ଆର୍ଥିକ ବର୍ଷରେ ୭୬.୪୦ ନିୟୁତ ମେଟ୍ରିକ୍ ଟନ ପଣ୍ୟଦ୍ରବ୍ୟ କାରବାର କରିଥିବା ବେଳେ ଚଳିତ ୨୦୧୬-୧୭ ଆର୍ଥିକ ବର୍ଷରେ ଏହା ୮୯ ନିୟୁତ ମେଟ୍ରିକଟନ୍ ପଣ୍ୟ କାରବାର କରି ପୁଣିଥରେ ଦେଶର ସମସ୍ତ ବୃହତ ବନ୍ଦରଗୁଡ଼ିକ ମଧ୍ୟରେ ନିଜର ଦ୍ୱିତୀୟ ସ୍ଥାନ ବଜାୟ ରଖିବାର ଗୌରବ ଅର୍ଜନ କରିଛି । ଆଗାମୀ ୨୦୧୭-୧୮ ସୁଦ୍ଧା ପାରାଦ୍ୱୀପ ବନ୍ଦରର ପଣ୍ୟ କାରବାର କ୍ଷମତା ଅଭିବୃଦ୍ଧି ଘଟି ୧୦୦ ନିୟୁତ ମେଟ୍ରିକ୍ଟନ୍ ଅତିକ୍ରମ କରିବା ସହ ୨୦୨୦ ସୁଦ୍ଧା ୩୨୫ ନିୟୁତ ମେଟ୍ରିକ୍ଟନ୍‌ରେ ପହଁଞ୍ଚାଇବାକୁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି। ପ୍ରକାଶ ଥାଉକି ସଂପ୍ରତି ୯୫,୦୦୦ ମେଟ୍ରିକ୍ଟନ୍ ପଣ୍ୟଧାରଣ କ୍ଷମତା ବିଶିଷ୍ଟ ଜାହାଜଗୁଡ଼ିକୁ ପୋତାଶ୍ରୟ ମଧ୍ୟରେ ଏବଂ ୩,୫୦,୦୦୦ ମେଟ୍ରିକ୍ଟନ୍ ପଣ୍ୟଧାରଣ କ୍ଷମତା ବିଶିଷ୍ଟ





ଜାହାଜଗୁଡିକୁ ସମୁଦ୍ର ମଧ୍ୟରେ ଏକ ଭାସମାନ ଜାହାଜ ରହଣିସ୍ଥଳଠାରେ ସମସ୍ତ ସେବା ଯୋଗାଇ ଦେବା ସହ ଆବଶ୍ୟକ ମୁତାବକ ପଣ୍ୟ କାରବାର କରାଯାଇପାରୁଛି। ଏତଦ୍‌ବ୍ୟତୀତ ୧,୨୫,୦୦୦ ମେଟ୍ରିକ୍ ଟନ ପଣ୍ୟଧାରଣ କ୍ଷମତା ବିଶିଷ୍ଟ ଜାହାଜଗୁଡିକୁ ସୁରକ୍ଷିତ ପଣ୍ୟ କାରବାର ପାଇଁ ଏକ ନୂତନ ସୁଗଭୀର ଜାହାଜ ଆଶ୍ରୟ ସ୍ଥଳର ନିର୍ମାଣ ପାଇଁ ବ୍ୟବସ୍ଥା ସହିତ ସାଗରମାଳା ପରିଯୋଜନାରେ ଏଠାରେ ୪,୧୭୯ କୋଟି ଟଙ୍କା ବ୍ୟୟ ଅଟକଳରେ ୨୨ ମିଟର ଗଭୀରତା ବିଶିଷ୍ଟ ଏକ ବାହ୍ୟ ପୋତାଶ୍ରୟ ମାଧ୍ୟମରେ ୨ ଲକ୍ଷ ଟନ୍ ଯାଏଁ ବୃହତ୍ ପଣ୍ୟବାହୀ କେପ ସାଇଜ ଜାହାଜଗୁଡିକୁ ସେବା ଯୋଗାଇ ଦେବା ପାଇଁ ପରିକଳ୍ପନା କରାଯାଇଛି।

ଉତ୍କୃଷ୍ଟ ଜ୍ଞାନ କୌଶଳ, ଶାସନବ୍ୟବସ୍ଥା, ଦକ୍ଷ ପରିଚାଳନା ସର୍ବୋପରି ଶ୍ରମିକ କର୍ମଚାରୀମାନଙ୍କର ନିଷ୍ଠା ଓ ନିରନ୍ତର ଉଦ୍ୟମ ଯୋଗୁଁ ପାରାଦ୍ୱୀପ ବନ୍ଦର ସଫଳତା ପ୍ରତିପାଦନ କରି ୨୦୧୫-୧୬ ଆର୍ଥିକ ବର୍ଷ ପାଇଁ କେନ୍ଦ୍ର ଜାହାଜ ଚଳାଚଳ ମନ୍ତ୍ରଣାଳୟ ପକ୍ଷରୁ 'ସର୍ବୋତ୍କୃଷ୍ଟ ପ୍ରଦର୍ଶନ' ପୁରସ୍କାର ପାଇବାର ଗୌରବ ଅର୍ଜନ କରିଛି। ଦେଶର ଅର୍ଥନୈତିକ ଅନୁସନ୍ଧାନ ଓ ଗବେଷଣା ସଂସ୍ଥା (Institute of Economics Studies) ପକ୍ଷରୁ ବାଣିଜ୍ୟିକ ବିକାଶରେ ପ୍ରଶଂସନୀୟ ଭୂମିକା ଯୋଗୁଁ 'ଭାରତୀୟ ଶିରୋମଣି ପୁରସ୍କାର' ହାସଲ କରିଥିବା ବେଳେ ସୁରକ୍ଷା ପରିଚାଳନା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ନିମନ୍ତେ ଚଳିତ ବର୍ଷ ୨୦୧୬-୧୭ର ସମ୍ମାନ ଜନକ 'ଗ୍ରୀନ୍‌ଟେକ ରୌପ୍ୟ' ପୁରସ୍କାର ହାସଲ କରିଛି । ବନ୍ଦରର ପଣ୍ୟ କାରବାର ଅଭିବୃଦ୍ଧି ସହିତ ସମପରିମାଣରେ ତା'ର ବ୍ୟବହାରକାରୀମାନଙ୍କୁ ଉନ୍ନତ ମାନର ସେବା ଦକ୍ଷତାର ସହ ପ୍ରଦାନ କରିବା ଓ ବନ୍ଦରର ଗୁଣବତ୍ତା ତଥା ପରିଚାଳନା ମାନ୍ୟତା ପାଇଁ ନୂଆଦିଲ୍ଲୀର ଇନଷ୍ଟିଚ୍ୟୁଟ୍ ଅଫ୍ ଡାଇରେକ୍ଟରସଙ୍କଠାରୁ 'ଗୋଲଡେନ୍ ପିକକ୍ କ୍ୱାଲିଟି ଆୱାର୍ଡ' ହାସଲ କରି ପ୍ରାଚୀନ ଉତ୍କଳର ଅସ୍ତମିତ ନୌବାଣିଜ୍ୟିକ ପରମ୍ପରାର ସମୁଜ୍ଜ୍ୱଳ ଜ୍ୟୋତି ଭାବେ ଉଭା ହୋଇଛି।

ପାରାଦ୍ୱୀପ ବନ୍ଦରର ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଦୀର୍ଘ ଏକ ଦଶନ୍ଧି (୧୯୪୮-୧୯୫୮) ଧରି ପାରାଦ୍ୱୀପଠାରେ ଏକ ବୃହତ୍ ବନ୍ଦର ନିର୍ମାଣ ପାଇଁ ବିଭିନ୍ନ ସରକାରୀ ବେସରକାରୀ ସଂସ୍ଥା ଦ୍ୱାରା ପରୀକ୍ଷଣ, ନିରୀକ୍ଷଣ, ସର୍ବେକ୍ଷଣ, ଅନୁଧ୍ୟାନ, ଅନୁସନ୍ଧାନ ଜାରି ରହିଥିଲା। ଜାତୀୟ ବନ୍ଦର ବୈଷୟିକ କମିଟି, ଜାତୀୟ ଗବେଷଣା ପ୍ରତିଷ୍ଠାନ, ଭାରତୀୟ ନୌବାହିନୀ, ଫ୍ରାନସର ନୌଯନ୍ତ୍ରୀ ବିଶେଷଜ୍ଞମାନଙ୍କ ଦ୍ୱାରା ବିକାଶ ପାଇଁ ଥିବା ସମ୍ଭାବ୍ୟ ବ୍ୟବହାରଯୋଗ୍ୟ ସମ୍ବଳ ତଥା ଅନ୍ତର୍ନିହିତ ଶକ୍ତି ଅନୁଧ୍ୟାନ କରି ପାରାଦ୍ୱୀପରେ ଏକ ଉନ୍ନତ ମାନର ବନ୍ଦର ନିର୍ମାଣ ନିମନ୍ତେ ଉତ୍ସାହଜନକ ରିପୋର୍ଟ ଦେଇଥିଲେ। ପୁନଶ୍ଚ ପୁନାସ୍ଥିତ କେନ୍ଦ୍ରୀୟ ଜଳ ଓ ଶକ୍ତି ଗବେଷଣା ପ୍ରତିଷ୍ଠାନଦ୍ୱାରା ପ୍ରୟୋଗାତ୍ମକ ପରୀକ୍ଷାନିରୀକ୍ଷା ସହ ବନ୍ଦରର ଏକ ପ୍ରତିରୂପ ନକ୍ସା ପ୍ରସ୍ତୁତ କରି ମହାନଦୀ ମୁହାଣଠାରୁ ଦକ୍ଷିଣକୁ ୬.୫ କିମି ଦୂରରେ ବନ୍ଦର ପ୍ରତିଷ୍ଠା କରାଯିବାକୁ ଅତ୍ୟନ୍ତ ଉପଯୁକ୍ତ ସ୍ଥାନ ଭାବେ ବିବେଚନା କଲେ। ଏପରିକି ଜାପାନର ଉତ୍ସାହୀ 'କିନୋସିତା ଏଣ୍ଡ କୋଃ'ର ଇଂଜିନିୟର ଓ ବିଶେଷଜ୍ଞ ଦଳ ନିଜ ଖର୍ଚ୍ଚରେ ପାରାଦ୍ୱୀପ ବନ୍ଦରାଞ୍ଚଳ ସହିତ ଏହାର ଆଭ୍ୟନ୍ତରୀଣ ଅଂଚଳରେ ଥିବା ଟମକା, ଦୈତାରୀ ଖଣି ଅଂଚଳ ପରିଦର୍ଶନ କରି ବାର୍ଷିକ ୨ ମିଲିୟନ ଟନ ଲୁହାପଥର ଆମଦାନୀ କରିବା ଲକ୍ଷ୍ୟରଖି ଉଭୟ ଖଣି ଅଂଚଳର ଉନ୍ନତି ସହ ପାରାଦ୍ୱୀପ ବନ୍ଦର ସ୍ଥାପନ ସମ୍ପର୍କରେ ପ୍ରସ୍ତାବ ଦେଲେ। ପରିଶେଷରେ ୧୯୫୮ ମସିହା ଜାନୁଆରୀ ମାସରେ ପାରାଦ୍ୱୀପଠାରେ ବୃହତବନ୍ଦର ନିର୍ମାଣ ପରିବର୍ତ୍ତେ ପାରାଦ୍ୱୀପକୁ ଏକ କ୍ଷୁଦ୍ର ବନ୍ଦର ଭାବେ ଘୋଷଣା କରାଗଲା। ମଧ୍ୟବର୍ତ୍ତୀ ବ୍ୟବସ୍ଥା ସ୍ୱରୂପ ତାଳଦଣ୍ଡା କେନାଲକୁ ଗଭୀର କରିବା, ଲକ୍‌ଗୁଡିକର ଶକ୍ତି ଦ୍ୱିଗୁଣିତ କରିବା ସହ ଟମକା ଦୈତାରୀ ଖଣି ଅଂଚଳରୁ ଲୁହାପଥର ରେଳ, ସଡକ ଓ ଜଳପଥଦ୍ୱାରା ପରିବହନ କରାଯିବାକୁ ସ୍ଥିର କରାଗଲା। ଚୌଦ୍ୱାରର ଚଷାପଡାଠାରେ ବଡ ବଡ ଡଙ୍ଗାରେ ଲୁହାପଥର ବୋଝେଇ ହୋଇ ତାଳଦଣ୍ଡା କେନାଲର ଶେଷଲକ୍ ଅନନ୍ତପୁର (ଚୌମୁହାଣୀ) ପର୍ଯ୍ୟନ୍ତ ଅଣାଯାଇ ସେଠାରୁ ମାଲ୍‌ବାହୀ ଭେଳା (Barge) ଗୁଡିକରେ ବୋଝେଇ ହୋଇ ବାର୍ଜଗୁଡିକୁ ପାୱାରବୋଟ ସାହାଯ୍ୟରେ ଟାଣିଟାଣି ମହାନଦୀ ମୁହାଣଠାରୁ ୮ କି.ମି. ଦୂର ଗଭୀର ସମୁଦ୍ରରେ ଅପେକ୍ଷା କରିଥିବା ଜାହାଜରେ ବୋଝେଇ କରାଯାଉଥିଲା। ଏହି ବ୍ୟବସ୍ଥାରେ ୧୯୫୮-୫୯ ବର୍ଷରେ ପ୍ରାୟ ୨୪,୦୦୦ ମେଟ୍ରିକ୍ ଟନ୍ ଲୁହାପଥର ଜାପାନକୁ ରପ୍ତାନୀ




କରାଯାଇଥିଲା । ଏହି ବ୍ୟବସ୍ଥା ଏକ ବ୍ୟୟ ବହୁଳ ଓ ସମୟ ସାପେକ୍ଷ ହୋଇଥିବାରୁ କିଛି ଦିନପରେ ବନ୍ଦ ହୋଇଗଲା ।

ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଅନଗ୍ରସର ଓଡିଶାର କିପରି ଶିଳ୍ପ ଓ ବାଣିଜ୍ୟ ବ୍ୟବସାୟର ଦ୍ରୁତ ଅଗ୍ରଗତି ସହ ଅର୍ଥନୈତିକ ସମୃଦ୍ଧି ଆସିପାରିବ, ତାହା ତାଙ୍କର ପ୍ରାଥମିକ କାର୍ଯ୍ୟ ବୋଲି ଭାବିଲେ । ଦେଶର ଶ୍ରେଷ୍ଠ ଇଂଜିନିୟର ଭାବେ ପ୍ରତିଷ୍ଠିତ ଶ୍ରୀ ଅଯୋଧ୍ୟା ନାଥ ଖୋସଲାଙ୍କୁ ରାଜ୍ୟପାଳ ଭାବେ ଆଣିବା ପାଇଁ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ପ୍ରଥମେ ନିବେଦନ କରି ରାଜି କରାଇଥିଲେ । ଏହିଠାରୁ ନବଉତ୍କଳର ଭିତ୍ତି ସ୍ଥାପିତ ହୋଇଥିଲା । ବିଜୁବାବୁ ପାରାଦ୍ୱୀପକୁ ଏକ ଗଭୀର ସର୍ବକାଳୀନ ବୃହତ ବନ୍ଦର କରିବା ଓ ତାହାସହ ଖଣି ଅଂଚଳକୁ ସଂଯୁକ୍ତ କରିବା ପାଇଁ ଏକ୍ସପ୍ରେସ ୱେ ନିର୍ମାଣ ଚିନ୍ତା କଲେ । ପାରାଦ୍ୱୀପକୁ ରାସ୍ତାଘାଟ ନଥିଲା । ଏଥିପାଇଁ ବିଦ୍ୟୁତ୍ ସଂଯୋଗ ନଥିଲା, ଘରଦ୍ୱାର କିଛି ନଥିଲା । ବିଜୁବାବୁ ଏକ ଦୁଃସାହସିକ ପଦକ୍ଷେପ ନେଲେ । ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ ସହିତ ଏକ୍ସପ୍ରେସ୍ ୱେ କାର୍ଯ୍ୟ ଆରମ୍ଭ କରିବା ପାଇଁ ନିର୍ଦ୍ଦେଶ ଦେଲେ । ପାରାଦ୍ୱୀପ ପୋର୍ଟ ପ୍ରୋଜେକ୍ଟ (ପିପିପି) ସଂସ୍ଥା ଗଠନ କରାଯାଇ ରାଜ୍ୟ ବାଣିଜ୍ୟ ଓ ବନ୍ଦର ବିଭାଗ ଅଧୀନରେ କାର୍ଯ୍ୟ ଆରମ୍ଭ କଲା । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ନିର୍ମାଣ କାର୍ଯ୍ୟ ସାରିବା ପାଇଁ ସ୍ଥିର ହେଲା । ତତ୍‌କାଳୀନ ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ବି. ଶିବରମଣଙ୍କ ପରାମର୍ଶକ୍ରମେ ମାଡ୍ରାସର ଦକ୍ଷ ଅବସର ପ୍ରାପ୍ତ ମୁଖ୍ୟ ଯନ୍ତ୍ରୀ ଶ୍ରୀ ଏ. ଶ୍ରୀନିବାସନଙ୍କୁ ପାରାଦ୍ୱୀପ ପ୍ରକଳ୍ପର ମୁଖ୍ୟଯନ୍ତ୍ରୀ ତଥା ପ୍ରଶାସକ ଭାବେ ଅବସ୍ଥାପିତ କରାଗଲା । ରାଜ୍ୟ ସଚିବାଳୟ ପଛପଟେ ଏକ ଲମ୍ବା ଆଜବେଷ୍ଟସ୍ ଘରେ ପ୍ରକଳ୍ପର ମୁଖ୍ୟ ଦପ୍ତର କାର୍ଯ୍ୟାରମ୍ଭ କଲା । ପ୍ରଥମ ପର୍ଯ୍ୟାୟରେ ମୁଖ୍ୟ ନିର୍ମାଣ କାର୍ଯ୍ୟ ପାଇଁ ୨ କୋଟି ୬୭ ଲକ୍ଷ ଟଙ୍କାର ବୈଦେଶିକ ମୁଦ୍ରା ସହ ମୋଟ ୧୬ କୋଟି ୨୦ ଲକ୍ଷ ଟଙ୍କା ବ୍ୟୟ ଅଟକଳ କରାଗଲା । ଇଂଲଣ୍ଡର ରାଣ୍ଡର ପାଲମର ଏଣ୍ଡ ଟ୍ରିଟନ ଏକ ବୈଷୟିକ ସଂସ୍ଥାକୁ ପାରାଦ୍ୱୀପ ବନ୍ଦରର ଆବଶ୍ୟକ ନକ୍‌ସା ସହିତ ଯୋଜନାର ନିର୍ଦ୍ଦିଷ୍ଟ ରୂପରେଖ ପ୍ରସ୍ତୁତ ଓ ନିର୍ମାଣ କାର୍ଯ୍ୟ ତଦାରଖ ଦାୟିତ୍ୱ ଦିଆଗଲା । ବମ୍ବେର ଏକ ଅନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ସ୍ଥପତି ଶ୍ରୀ କେ.ଭି. ଥାଡାନିଙ୍କୁ ଆବଶ୍ୟକ କୋଠାଗୁଡିକର ଡିଜାଇନ ସମେତ ପାରାଦ୍ୱୀପ ସହରର ପରିକଳ୍ପିତ ରୂପ ବା ନକ୍‌ସା ଆଙ୍କିବା ଓ ସହରର ବିସ୍ତୃତ ମାଷ୍ଟରପ୍ଲାନ ତିଆରି କରିବା ଦାୟିତ୍ୱ ଦିଆଗଲା ।

ପାରାଦ୍ୱୀପ ମୁଖ୍ୟତଃ ଦୁଇଟି ରାଜସ୍ୱ ଗ୍ରାମ ଷଣ୍ଢକୁଦ ଓ ଭିତରଗଡ ସହିତ ଆଂଶିକ ଭାବେ ବିଜୟଚନ୍ଦ୍ରପୁର, ଉଦୟ ବଟ ଓ ସମୁଦ୍ର ବାଲି ୪୮୮ ଏକର ମୋଟ ୮,୬୮୬.୭୦ ଏକର ଜମିକୁ ବନ୍ଦରାଞ୍ଚଳ ଭାବେ ଘୋଷଣା କରାଗଲା । ପ୍ରଥମ ପର୍ଯ୍ୟାୟରେ ପାରାଦ୍ୱୀପ ସହର ପୂର୍ବରେ ବଙ୍ଗୋପସାଗର ଉତ୍ତରରେ ମହାନଦୀ, ପଶ୍ଚିମ ଓ ଦକ୍ଷିଣ ପଶ୍ଚିମ ଦିଗରେ ଅଠରବାଙ୍କି ନଦୀର ସୀମା ସରହଦ ଭିତରେ ଥିବା ଅଞ୍ଚଳକୁ ନେଇ ୨୧ଟି ସେକ୍ଟରରେ ବିଭକ୍ତ କରି ଏହାର ମାଷ୍ଟର ପ୍ଲାନ ପ୍ରସ୍ତୁତ କରାଗଲା, ପରିକଳ୍ପନା ଅନୁଯାୟୀ ଦୁଇଟି ଲୁହାପଥର ବର୍ଥ, ୧୯ଟି କାର୍ଗୋ ବର୍ଥ, ଦୁଇଗୋଟି ଜେଟି ଥିବା ଗୋଟିଏ ତୈଳ ଡକ୍, ଡ୍ରାଇଡକ୍, ସ୍ଲିପୱେ, ମରାମତି ୱାର୍କ ସପ୍, ପଣ୍ୟ ଗଛିତ ରଖିବା ପାଇଁ ବିସ୍ତୃତ ଖାଲି ସ୍ଥାନ ସହିତ କାର୍ଯ୍ୟାଳୟ, ବାସଗୃହ, ଆନୁଷଙ୍ଗିକ ଶିକ୍ଷା ପ୍ରସାର ପାଇଁ ସ୍ଥାନ ସଂରକ୍ଷଣ କରାଗଲା । ସହରିକରଣ ପାଇଁ ଏଠାରେ ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ, ମେଡିକାଲ ଓ ଇଂଜିନିୟରିଂ କଲେଜ, ଜିଲ୍ଲା ମୁଖ୍ୟ କାର୍ଯ୍ୟାଳୟ, ହାଇକୋର୍ଟ, ତାରକା ହୋଟେଲ ସହିତ ସମୁଦ୍ର ବେଳାଭୂମିରେ ୨୭ ମହଲା ବିଶିଷ୍ଟ ଟ୍ରେଡ ସେଣ୍ଟର ଇତ୍ୟାଦି ଥାଇ ଏକ ପୂର୍ଣ୍ଣାଙ୍ଗ ସହରର ଚିତ୍ର ମାଷ୍ଟର ପ୍ଲାନରେ ସ୍ଥାନ ପାଇଲା । ସେକ୍ଟର ୨୧ରେ ପ୍ରଧାନମନ୍ତ୍ରୀଙ୍କ ବାସୋପଯୋଗୀ ଏକ ଦ୍ୱିତଳ ପ୍ରାସାଦ ନିର୍ମାଣ ସାଙ୍ଗକୁ ରାଜ୍ୟର ପ୍ରଥମ ବହୁତଳ ବିଶିଷ୍ଟ ସୌଧ ନିର୍ମାଣ ପାଇଁ ପଦକ୍ଷେପ ନିଆଗଲା । ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗରୁ ଇଂଜିନିୟର ସମେତ ଆବଶ୍ୟକ କର୍ମଚାରୀମାନଙ୍କୁ ଡେପୁଟେସନରେ ବନ୍ଦର କାର୍ଯ୍ୟରେ ନିଯୁକ୍ତି ଦିଆଗଲା । ମଧ୍ୟପ୍ରଦେଶର ବିଳାସପୁର, ଆନ୍ଧ୍ର ଓ ଓଡିଶାର ବିଭିନ୍ନ ଅଂଚଳରୁ ହଜାର ହଜାର ନିର୍ମାଣ ଶ୍ରମିକମାନଙ୍କୁ ଅଣାଯାଇ କାର୍ଯ୍ୟରେ ନିୟୋଜିତ କରାଗଲା ।

ଅନୁରୂପଭାବେ ଭାରତର ଖଣିଜ ସମ୍ପଦ ଭରା ଅଞ୍ଚଳମାନଙ୍କ ମଧ୍ୟରେ ଓଡିଶାର କେନ୍ଦୁଝର ଜିଲ୍ଲା ଓ ଅବିଭକ୍ତ କଟକ ଜିଲ୍ଲାର ସୁକିନ୍ଦା ଅଞ୍ଚଳାଦି ଅଗ୍ରଗଣ୍ୟ । ଏହି ଅଞ୍ଚଳର ଖଣିଜ ସମ୍ପଦ ଓଡିଶାକୁ ଅର୍ଥନୈତିକ କ୍ଷେତ୍ରରେ ସମୃଦ୍ଧ କରିବା

ଲକ୍ଷ୍ୟ ନେଇ ଟମକା-ଦୈତାରୀ ଖଣି ଅଞ୍ଚଳରୁ ସିଧାସଳଖ ୯୦ ମାଇଲ ଦୀର୍ଘ ପାରାଦ୍ୱୀପ ପର୍ଯ୍ୟନ୍ତ ଏକ୍ସପ୍ରେସ୍ ୱେ ନିର୍ମାଣ କାର୍ଯ୍ୟ ଆରମ୍ଭ କରାଗଲା । ଓଡିଶା କନଷ୍ଟ୍ରକ୍ସନ କମ୍ପାନୀ **(O.C.C.)** କୁ ପୋଲଗୁଡିକର ନିର୍ମାଣ କାର୍ଯ୍ୟ ଦିଆଯାଇଥିବା ବେଳେ, ହାଇୱେ ନିର୍ମାଣ ପାଇଁ ରୁରାଲ ଇଂଜିନିୟରିଂ ଅର୍ଗାନାଇଜେସନ ଗଠନ କରାଯାଇଥିଲା । ଏହି ପ୍ରକଳ୍ପ ପାଇଁ କଟକ, କେନ୍ଦୁଝର, ଯାଜପୁର, କେନ୍ଦ୍ରାପଡା ଓ ଜଗତସିଂହପୁର ଜିଲ୍ଲାର ପ୍ରାୟ ୪୦୦ ଗ୍ରାମର ହଜାର ହଜାର ଏକର ଜମି ଏକର ପିଛା ୭୦୦୦ରୁ ୮୦୦୦ ଟଙ୍କା ବିନିମୟରେ ଲୋକମାନେ ସରକାରଙ୍କୁ ଦେଇ ଏହି ରାସ୍ତା ନିର୍ମାଣରେ ସହଯୋଗ କରିଥିଲେ । ଯାହାଦିନେ ତ୍ରିକୋଣଭୂମି ବନ୍ୟାଞ୍ଚଳ ଥିଲା ତାହାର ଛାତି ଉପରେ ଏହି ଏକ୍ସପ୍ରେସ ୱେ ନିର୍ମାଣ ହେବାପରେ ଦୁଇପାର୍ଶ୍ୱରେ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପମାନ ଗଢିଉଠିଛି । ଲୋକମାନଙ୍କର ଜୀବନଧାରଣ ମାନ ବଢିଛି ଓ ଦୈନିକ ପାଖାପାଖି ୧୦୦ କୋଟି ଟଙ୍କା କାରବାର ହେଉଥିବା ବେଳେ ୨୦ ହଜାରରୁ ଉର୍ଦ୍ଧ୍ୱ ଲୋକଙ୍କ ପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ରୋଜଗାର ସୁବିଧା ହୋଇପାରିଛି । ପ୍ରଥମତଃ ରାଜ୍ୟ ରାଜକୋଷରୁ ୭ କୋଟି ଟଙ୍କା ବ୍ୟୟ ଅଟକଳରେ ଆରମ୍ଭ ହୋଇଥିବା ଏହି ଏକ୍ସପ୍ରେସ୍ ୱେ ୧୯୬୫ ମସିହା ବେଳକୁ କେନ୍ଦ୍ର ସରକାରଙ୍କ ଅଧୀନକୁ ଆସି ଚାରି ଥାକିଆ ରାସ୍ତା ସହ ଏଥିରେ ୧୪ଟି ପ୍ରମୁଖ ପୋଲ, ୨୮ ଟି କ୍ଷୁଦ୍ର ପୋଲ, ୪୬ଟି ବକ୍ସ କଲଭଟ୍, ୨୬ଟି ହ୍ୟୁମ ପାଇପ କଲଭଟ ଅନ୍ତର୍ଭୁକ୍ତ । ଜାତୀୟ ରାଜପଥ ପ୍ରାଧିକରଣ କର୍ତ୍ତୃପକ୍ଷଙ୍କ ଅନୁସାରେ ଏଥିପାଇଁ ୫୨୫ କୋଟି ୪୦ ଲକ୍ଷ ଟଙ୍କା ବ୍ୟୟ ହୋଇଛି ଓ ଏହା ଉପରେ ପ୍ରତିଦିନ ପ୍ରାୟ ୪୦୦୦ରୁ ଉର୍ଦ୍ଧ୍ୱ ଟ୍ରକ ଚଳାଚଳ କରୁଥିବାର ଜଣାପଡିଛି ।

ଏହି ଏକ୍ସପ୍ରେସ ୱେ ନିର୍ମାଣ ପୂର୍ବରୁ ଅନୁରୂପ ଭାବେ ଦୈତାରୀଠାରୁ ପାରାଦ୍ୱୀପ ପର୍ଯ୍ୟନ୍ତ ଏକ ରେଳ ଲାଇନ ବିଛାଇବା ଯୋଜନା କରାଯାଉଥିଲା କିନ୍ତୁ ବିଜୁବାବୁ ଏକ୍ସପ୍ରେସ ୱେ ପ୍ରକଳ୍ପକୁ କିପରି ନିର୍ଦ୍ଦିଷ୍ଟ ସମୟ ଭିତରେ କାର୍ଯ୍ୟକ୍ଷମ କରିପାରିବେ ତାହା ତାଙ୍କୁ ବେଶ୍ ଜଣାଥିଲା । ଏପରିକି ଜଣେ ଡେପୁଟି ସେକ୍ରେଟାରୀଙ୍କୁ ଅନୁରୋଧ କରିବା ପାଇଁ ତାଙ୍କ ସରକାରୀ ବାସଭବନରେ ପହଞ୍ଚିବାକୁ ମଧ୍ୟ ପଛେଇ ନଥିଲେ । ଏ ସମ୍ପର୍କରେ ଏକ ଚମତ୍କାର ମନୋମୁଗ୍ଧକର ତଥ୍ୟ ରହିଛି, ଯାହା ତତ୍କାଳୀନ କେନ୍ଦ୍ର ଜାହାଜ ଚଳାଚଳ ଓ ପରିବହନ ବିଭାଗର ଡେପୁଟି ସେକ୍ରେଟାରୀ ଓଡିଶା ଗସ୍ତରେ ଆସିଥିବାବେଳେ ପ୍ରକାଶ କରିଥିଲେ ଓ ତାହା ପରବର୍ତ୍ତୀ ସମୟରେ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା । ଘଟଣାଟି ଏହିପରି ଥିଲା ।

ତତ୍କାଳୀନ ଜାହାଜ ଚଳାଚଳ ଓ ପରିବହନ ବିଭାଗର ଡେପୁଟି ସେକ୍ରେଟାରୀ ଥାଆନ୍ତି ଏସ.କେ. ବାନାର୍ଜୀ । ୧୯୬୨ ମସିହା ସେପ୍ଟେମ୍ବର ମାସ, ସକାଳୁ ସକାଳୁ ବିଜୁବାବୁ ତାଙ୍କ ସରକାରୀ ବାସଭବନରେ ପହଞ୍ଚି କଲିଂ ବେଲ୍ ଦେଲେ । ବାନାର୍ଜୀଙ୍କ ଝିଅ କବାଟ ଖୋଲି ଫେରି ଆସି କହିଲା, ଡାଡି ଡାଡି 'ଏ ଭେରି ଟଲ୍‌ମ୍ୟାନ ଟେଲିଂ ହିମ୍‌ସେଲ୍‌ଫ ବିଜୁ ପଟ୍ଟନାୟକ ଷ୍ଟାଣ୍ଡିଂ ଅନ୍ ଆଓ୍ୱାର ଡୋର' । ଏକଥା ଶୁଣି ସେ ଭାବିଲେ ବିଜୁ ପଟ୍ଟନାୟକ, ଯେ'କି ଓଡିଶାର ମୁଖ୍ୟମନ୍ତ୍ରୀ ଆଉ ପ୍ରଧାନମନ୍ତ୍ରୀ ନେହେରୁଙ୍କ ସହିତ ଯାହାଙ୍କ ଘନିଷ୍ଠ ସମ୍ପର୍କ ସେ କାହିଁକି ଏଠାକୁ ଆସିବେ ? ଚା' ଖାଉଥିବା ଅବସ୍ଥାରେ ଚା' କପ୍ ଥୋଇ ଦ୍ୱାର ମୁହଁକୁ ଆସି ଦେଖନ୍ତିତ ସତକୁ ସତ ବିଜୁବାବୁ ଠିଆ ହୋଇଛନ୍ତି । ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ ଏବଂ ଡକାଇ ଥିଲେ ନିଜେ ଯାଇ ପହଞ୍ଚିଯାଇଥାନ୍ତେ ବୋଲି ଅତି ବିନମ୍ରତାର ସହିତ କହିଲେ । ସେତେବେଳକୁ ତାଙ୍କ ସ୍ତ୍ରୀ ବିଜୁବାବୁଙ୍କ ନାଁ ଶୁଣି କୌତୁହଳବଶତଃ ତାଙ୍କ ପଛେ ପଛେ ଦ୍ୱାର ମୁହଁରେ ପହଞ୍ଚି ସାରିଥାନ୍ତି । ବିଜୁବାବୁ ବାନାର୍ଜୀଙ୍କ ସ୍ତ୍ରୀଙ୍କୁ ଦେଖି ପଚାରିଲେ, 'ୟୁ ଆର ମିସେସ୍ ବାନାର୍ଜୀ' ! ସମ୍ମତି ପାଇବା ପରେ ହଠାତ୍ ବିଜୁବାବୁ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରି ପଚାରିଲେ, 'ସୁଡ୍ ଆଇ ଷ୍ଟାଣ୍ଡ ହିୟର ଅର୍ ଇଉ ଉଇଲ୍ ଇନ୍‌ଭାଇଟ ମି ଟୁ ୟୋର ଡ୍ରଇଁ ରୁମ୍' । ବାନାର୍ଜୀ ଲଜ୍ଜିତ ହୋଇ ବିଜୁବାବୁଙ୍କୁ ଡ୍ରଇଂ ରୁମ୍‌କୁ ପାଛୋଟି ନେଲେ । ବିଜୁବାବୁ ବସିବା ପରେ କହିଲେ, ମିସେସ ବାନାର୍ଜୀ, 'ଫର୍ ୟୋର ହଜ୍‌ବ୍ୟାଣ୍ଡ ଆଇ ହାଭ୍ ନଟ୍ ଟେକେନ୍ ମାଇଁ ମର୍ଣ୍ଣିଂ ଟି' । ବାନାର୍ଜୀଙ୍କୁ ସବୁ ଏକ ପ୍ରକାର ଆଶ୍ଚର୍ଯ୍ୟବିଦ୍ୟା ଭଳି ଲାଗୁଥିଲା । ଅଳ୍ପ ସମୟ ପରେ ତାଙ୍କ ସ୍ତ୍ରୀ ଚା' ନେଇ ଆସିଲେ । ବିଜୁବାବୁ ଚା' ପିଉପିଉ ତାଙ୍କ ସ୍ତ୍ରୀଙ୍କୁ ଚାହିଁ ବଙ୍ଗଳାରେ କହିଲେ, 'ମିସେସ୍ ବାନାର୍ଜୀ ଆମି ଜାନି ବାଙ୍ଗାଲି ମହିଲାରା ଖୁବ୍‌ଇ ବୁଦ୍ଧିମତୀ, ଆପନାର ସ୍ୱାମୀକେ ଏକଟୁ ବୁଦ୍ଧି ଦିଚ୍ଛିନା କେନ ? ତା' ପରେ

ବାନାର୍ଜୀଙ୍କୁ କହିଲେ ୟୁ ହାଭ ଅପୋଜ୍ଡ ମାଇଁ ପ୍ରପୋଜାଲ ଅନ ଏକ୍ସପ୍ରେସ ୱେ ଆଣ୍ଡ ୟୁ ହାଭ ସଜେଷ୍ଟେଡ୍ ଫର ଏ ରେଲ ୱେ ଲାଇନ୍। ଆଇ ଆମ୍ ଇଣ୍ଟରେଷ୍ଟେଡ ଦି ପାରାଦ୍ୱୀପ ପୋର୍ଟ ଆଣ୍ଡ ଏକ୍ସପ୍ରେସ ୱେ ମଷ୍ଟ ବି କମ୍ପ୍ଲିଟେଡ୍ ବାଇ ନାଇନ୍‌ଟିନ ସିକ୍ସିଫୋର। କ୍ୟାନ ଦି ରେଲୱେ ଲାଇନ୍ ବି କମ୍ପ୍ଲିଟେଡ ଉଇଦିନ ଟୁ ଇୟରସ ? ତା' ପରେ ବାନାର୍ଜୀ ଜାଣିପାରିଥିଲେ ବିଜୁବାବୁଙ୍କ ଆସିବା କାରଣ ଓ କହିଥିଲେ ସାର୍ ଫାଇଲ୍ ମିନିଷ୍ଟରଙ୍କ ପାଖକୁ ପଠାଇ ଦେଇ ସାରିଲେଣି। ବିଜୁବାବୁ କହିଲେ, ଆଇ ହାଭ୍ ଟୋଲ୍ଡ ରାଜ ବାହାଦୁର (ଜାହାଜ ଚଳାଚଳ ଓ ପରିବହନ ମନ୍ତ୍ରୀ) ଟୁ ସେଣ୍ଡ ବ୍ୟାକ ଦି ଫାଇଲ୍ ଟୁ ୟୁ । ୟୁ ପ୍ଲିଜ ଟୁଡେ ଗେଟ୍‌ବ୍ୟାକ୍ ଦି ଫାଇଲ୍ ଆଣ୍ଡ ଓକେ ମାଇଁ ପ୍ରପୋଜାଲ'। ସେହିଦିନ ବିଜୁବାବୁଙ୍କ ପ୍ରସ୍ତାବକୁ ସମର୍ଥନ କରାଯାଇ ଫାଇଲ ଯାଇଥିଲା ଓ ତାହା ଜାହାଜ ଚଳାଚଳ ମନ୍ତ୍ରୀଙ୍କ ଦ୍ୱାରା ଅନୁମୋଦନ ଲାଭ କରିଥିଲା।

ଏହି ଦୁଇ ପ୍ରକଳ୍ପର ସୃଷ୍ଟି ଓ ବିକାଶର ସମୟ ସାରଣୀରେ ବହୁ ବାଦ, ବିବାଦ, ଅପବାଦ, ପ୍ରତିରୋଧ, ପ୍ରତିଶୋଧ ଓ ପ୍ରଶାସନିକ ଅସଂଗତି ଦେଖାଦେଇଥିବା ସତ୍ତ୍ୱେ ଏହା ନିର୍ଦ୍ଦିଷ୍ଟ ସମୟରେ କାର୍ଯ୍ୟକ୍ଷମ ହୋଇ ଏହାର 'ସୁବର୍ଣ୍ଣ ଜୟନ୍ତୀ' ଉତ୍ସବ ପାଳନ କରାଯାଇ ସାରିଲାଣି। ଏକଦା ପାରାଦ୍ୱୀପ ବନ୍ଦରକୁ ଦେଶର ଯୋଜନା କମିଶନ 'ଅବାସ୍ତବ ପରିକଳ୍ପନା' ଆଖ୍ୟା ଦେଇଥିଲେ। କିନ୍ତୁ ଦେଶର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଏହାକୁ ଏକ 'ଜାତୀୟ ଦୁଃସାହସିକ ପ୍ରଚେଷ୍ଟା' ଭାବେ ଅଭିହିତ କରିଥିଲେ। ଏ ସମ୍ପର୍କରେ ଦେଶର ପ୍ରଖ୍ୟାତ ନିଷ୍ଠାବାନ ଦେଶପ୍ରେମୀ ସାମ୍ବାଦିକ ଶ୍ରୀ ବି.ଜି. ଭର୍ଗିଜ ପାରାଦ୍ୱୀପ ବନ୍ଦରକୁ ଓଡ଼ିଶା ବିକାଶର ଗହଣା ଭିତରେ ନିମକାଠି ସଦୃଶ ଅଭିହିତ କରି ଜୁନ ୯ ତାରିଖ ୧୯୬୫ ମସିହା ଟାଇମସ୍ ଅଫ୍ ଇଣ୍ଡିଆ ସମ୍ପାଦକୀୟରେ ପ୍ରକାଶିତ ଭବିଷ୍ୟବାଣୀ ବିଶେଷ ପ୍ରଣିଧାନଯୋଗ୍ୟ। ସେ ଲେଖିଥିବା ସ୍ୱତନ୍ତ୍ର ପ୍ରବନ୍ଧର ମୁଖ୍ୟ ଅଂଶ ନିମ୍ନମତେ ଥିଲା।

"The project has evoked controversy and criticism. But five or ten years from today, there is little doubt that Paradeep will stand out as one of the finest achievements of the third plan. Paradeep is not just an individual project. It is also a symbol, xxxxxx 'Paradeep' is a symbol of the effect system to which the country has become prisoner and of the outmoded frame work of development. The restrictive influence of the system costs the country dearly in money and time and Paradeep is "irregular" and has become a 'scandal' because it has broken out the system and worse, succeeded. Xxxxx Paradeep is a splendid achievement and an ornament in the Third Plan. It is grossly 'irregular'. However, it is not the project but the 'System' and the narrow suffocating atmosphere it breeds that stands condemned." xxxx

ଯାହାକି ପାରାଦ୍ୱୀପ ବନ୍ଦରର ଜନ୍ମ ଜାତକରେ ଅଲିଭା ହୋଇ ରହିଛି ଓ ରହିଥିବ।

'ଉଦୟପୁରୀ', ପ୍ଲଟ୍ ନଂ- ୨୨୩/୭୫୩/୩୪
ଭୀମପୁର, ୟୁନିଟ୍-୬, ଭୁବନେଶ୍ୱର-୭୫୧୦୨୦







# ଓଡ଼ିଶାରେ ଗାନ୍ଧୀ ଉଦୟ

**ହରିହର ପଣ୍ଡା**

ଓଡ଼ିଶାରେ ଶେଷଥର ପାଇଁ ଗାନ୍ଧିଜୀଙ୍କ ପାଦ ପଡ଼ିଥିଲା ୧୯୪୬ ମସିହା ଜାନୁଆରୀ ୨୦ ତାରିଖରେ । ସମୟ ଭୋର ୪ଟା, ବ୍ରହ୍ମପୁର ଷ୍ଟେସନରେ । ଗାନ୍ଧୀ ବସିଥିବା ଟ୍ରେନ ତାଙ୍କ ଘର ଦେଇ ଯାଉଛି ବୋଲି ଜାଣି ଶହ ଶହ ଲୋକ ଷ୍ଟେସନରେ ରୁଣ୍ଡ ହୋଇଥିଲେ । ହାଡ଼ଭଙ୍ଗା ଶୀତ ସେଦିନ ହାର ମାନିଥିଲା । ଏତେ ଲୋକଙ୍କ ସମାଗମ ହେଲେ ବି ଚାରିଆଡ଼େ ଶାନ୍ତ ପରିବେଶ । ଏହା ଦେଖି ଗାନ୍ଧିଜୀ ଟ୍ରେନରୁ ଓହ୍ଲାଇ ପଡ଼ିଥିଲେ, ଯଦିଓ ସେଠାରେ ଗାନ୍ଧିଜୀଙ୍କ ଓହ୍ଲାଇବା ପାଇଁ ପୂର୍ବରୁ ଗସ୍ତସୂଚୀ ନଥିଲା । ଆସାମରୁ ମାନ୍ଦ୍ରାଜ ଯାଏଁ ଯିବା ପାଇଁ ଏହି ସ୍ୱତନ୍ତ୍ର ଟ୍ରେନ ଆସାମରୁ ବାହାରି ସିଧାସଳଖ ମାନ୍ଦ୍ରାଜରେ ପହଞ୍ଚିବା ପାଇଁ ଉଦ୍ଦିଷ୍ଟ ଥିଲା । ଓଡ଼ିଶା ଲୋକଙ୍କ ଆଗ୍ରହକୁ ଦେଖି ଗାନ୍ଧିଜୀ ରାତି ଦେଢ଼ଟାରେ କଟକଠାରେ ଓହ୍ଲାଇଥିଲେ । ହେଲେ ସେଠାରେ ବିଶୃଙ୍ଖଳାକୁ ଦେଖି ବିରକ୍ତ ହୋଇଥିଲେ । କିନ୍ତୁ ବ୍ରହ୍ମପୁର ସମ୍ପୂର୍ଣ୍ଣ ଅଲଗା ଦେଖି କହିଥିଲେ ପ୍ରକୃତରେ ସତ ଓ ଅହିଂସା ମାର୍ଗରେ ଆମେ ସ୍ୱରାଜ ପ୍ରାପ୍ତି କରିବା । ଯଦି ତୁମେ ଭାବୁଥାଅ ଯେ, ଫାଙ୍କା ଆବାଜ କରି ବ୍ରିଟିଶ ସରକାରଙ୍କୁ ତଡ଼ି ଦେଇ ହେବ ତାହା ସମ୍ପୂର୍ଣ୍ଣ ଭୁଲ... । ଏହା ଥିଲା ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ଭୂଇଁରେ ଲୋକଙ୍କ ପାଇଁ ଶେଷ ବାର୍ତ୍ତା ଓ ପ୍ରତ୍ୟକ୍ଷ ଭେଟଘାଟ ।



ଏହା ପୂର୍ବରୁ ଗାନ୍ଧିଜୀ ୧୯୩୮ରେ ପୁରୀ ଜିଲ୍ଲା ବେରବୋଇରେ ରାତ୍ରୀଯାପନ କରି ସ୍ୱରାଜ ମନ୍ତ୍ରରେ ସମସ୍ତଙ୍କୁ ଅଭିଭୂତ କରିଥିଲେ । ବିଦେଶୀ ତ୍ୟାଗ କରି ଦେଶୀ ବ୍ୟବହାର ଏବଂ ନିଜେ ସ୍ୱାବଲମ୍ବୀ ହେବାର ମାର୍ଗ ଦେଖାଇଥିଲେ । ସେ ଆଦର୍ଶରେ ଆଜି ବେରବୋଇର ଲୋକେ ଅରଟରେ ସୂତା କାଟିବା ଜାରି ରଖିଛନ୍ତି । ୧୯୩୪ ପଦଯାତ୍ରାରେ ସେ ଓଡ଼ିଶାର ସମ୍ବଲପୁର, ଝାରସୁଗୁଡ଼ା, ପୁରୀ, ଭଦ୍ରକ ପ୍ରଭୃତି ଅଞ୍ଚଳ ବୁଲିଥିଲେ । ୧୯୨୮ରେ ଝାରସୁଗୁଡ଼ା ଓ ସମ୍ବଲପୁରରେ ପ୍ରତ୍ୟକ୍ଷଭାବେ କଂଗ୍ରେସର ନେତାଙ୍କ ସହ ଆଲୋଚନା କରିବା ସହ ସାଧାରଣ ସଭାକୁ ସମ୍ବୋଧିତ କରିଥିଲେ । ୧୯୨୭ ମସିହା ଥିଲା ତାଙ୍କର ତୃତୀୟ ଓଡ଼ିଶା ଆଗମନ । ଡିସେମ୍ବର ୪ ତାରିଖରେ ଓଡ଼ିଶା ଆସି ଖଦୀର ବ୍ୟାପକ ପ୍ରସାର ପାଇଁ ମନଯୋଗୀ ହେବାକୁ ପ୍ରବର୍ତ୍ତାଇଥିଲେ । କଟକର ଉତ୍କଳମଣି ଗୋପବନ୍ଧୁଙ୍କ ଘରେ ଶରୀର ଖରାପ ହେତୁ




କିଛିଦିନ ବିତାଇଥିଲେ । ପୂର୍ବରୁ ମଧୁସୂଦନ ଦାସଙ୍କ ଅନୁରୋଧକ୍ରମେ ସେ ଓଡ଼ିଶା ଗସ୍ତରେ ୧୯୨୫ ମସିହାରେ ଆସିଥିଲେ । କିନ୍ତୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା ପ୍ରଥମ ଗସ୍ତ । ଏହାକୁ ଓଡ଼ିଶାରେ ଗାନ୍ଧୀ ଉଦୟ ହେଲା ବୋଲି କେହି କେହି କହନ୍ତି । ସେହି ଗସ୍ତରେ ଓଡ଼ିଶାଲୋକେ ଅନୁଭବ କରିଥଲେ ଯେ, ଭାରତବର୍ଷରେ ଏମିତି କେହି ଜଣେ ଯୋଗଜନ୍ମାଙ୍କ ଆବିର୍ଭାବ ହୋଇଛି, ଯିଏ ତାଙ୍କୁ ସ୍ୱାଧୀନତା ଦେଇପାରିବେ, ନିରସ୍ତ୍ର ହୋଇ ବି ବ୍ରିଟିଶ କମାଣ ଆଗରେ ଠିଆ ହୋଇପାରିବେ..। ଆଉ ତାଙ୍କ ଅସହଯୋଗ ଡାକରାରେ ସହଯୋଗ କରିବା ହିଁ ଓଡ଼ିଶା ଲୋକଙ୍କ ପାଇଁ ଉଚିତ ଓ ଶ୍ରେୟସ୍କର ହେବ ।

ମାର୍ଚ୍ଚ ୨୩, ୧୯୨୧ । ପବିତ୍ର ଦୋଳ ପୂର୍ଣ୍ଣମୀ । ପୁରୀ ଏକ୍ସପ୍ରେସ କଟକ ଷ୍ଟେସନ ଛୁଇଁଲା । ଏମିତି କେବେ କଟକରେ ହୋଇନଥିଲା, ଯାହା ଆଜି ଦେଖିବାକୁ ମିଳୁଛି । ରାତି ରାତି ଏତେ ଲୋକେ ଏଠି କେଉଁଠି ଥିଲେ, କେମିତି ଆସିଲେ ତାହା କାହାକୁ ଜଣା ନାହିଁ ହେଲେ ସମସ୍ତେ ଚାତକ ଭଳି ଚାହିଁ ରହିଛନ୍ତି ଟ୍ରେନଟାକୁ, କିଏ ଯେମିତି ତାଙ୍କର ଅତି ପରିଚିତ ଲୋକଟିଏ ଆସୁଛି । ଯେବେଠାରୁ ଗୋପବନ୍ଧୁ ଦାସେ ଆପଣେ କଲିକତାରେ ହୋଇଥିବା କଂଗ୍ରେସ ଅଧିବେଶନରେ ଯୋଗଦେଇ ଫେରିଛନ୍ତି, ସେବେଠାରୁ ଗାଁ ଗଣ୍ଡା, ପୁର ପଲ୍ଲୀରେ ତାଙ୍କରି ନାଁ ନେଇ ପିଲାଠାରୁ ବୁଢ଼ା, ବୁଢ଼ୀ ଯାଏଁ ବ୍ରାହ୍ମଣଠାରୁ ହରିଜନଙ୍କ ଯାଏଁ ସମସ୍ତେ କଥା ହେଉଛନ୍ତି । ସେ ଭାରତବର୍ଷରୁ ଇଂରେଜଙ୍କୁ ଠେଲି ବାହାର କରିଦେବାକୁ ଜନ୍ମ ନେଇଛନ୍ତି, ସ୍ୱରାଜ ପାଇଁ ପଣ କରିଛନ୍ତି । ତାଙ୍କ ଆସିବାର ଉଦ୍ଦେଶ୍ୟ କ'ଣ ଜମା ହୋଇଥିବା ଅନେକ ଲୋକଙ୍କୁ ଜଣା ନଥାଏ । ତଥାପି ଚାତକ ସାଜିଥାଆନ୍ତି । ମହାତ୍ମା ଗାନ୍ଧୀ କି ଜୟ, ବନ୍ଦେ ମାତରମ, ହିନ୍ଦୁ ମୁସଲମାନ କି ଜୟ ।

ପ୍ରକମ୍ପିତ ହେଉଥିଲା କଟକ ଷ୍ଟେସନ । ଉତ୍କଳମଣି ଫୁଲମାଳ ନେଇ ଅପେକ୍ଷା କରିଥିଲେ ସବା ଆଗରେ । ତୃତୀୟଶ୍ରେଣୀ ଡବାର ଦୁଆର ଖୋଲିଲା । ସବୁ ପ୍ରତୀକ୍ଷାର ଅନ୍ତ ହେଲା । ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ ଆବିର୍ଭାବ ହେଲା । ଧଳା ଧୋତି ଓ ଫତେଇ ସହ ମୁଣ୍ଡରେ ଧଳା ରଙ୍ଗର ଟୋପି । ତାଙ୍କ ପଛରେ ରହିଥାଆନ୍ତି ତାଙ୍କ ଧର୍ମପତ୍ନୀ କସ୍ତୁରବା, ପୁତ୍ର ଦେବଦାସ ଓ ଅନ୍ୟ କିଛି କଂଗ୍ରେସ ନେତା । ଫୁଲମାଳ ଦେଇ ସ୍ୱାଗତ କଲେ ଉତ୍କଳମଣି ଗୋପବନ୍ଧୁ । ପାଛୋଟି ନେବାକୁ ଚାହିଁଲେ ଷ୍ଟେସନ ଦୁଆରେ ଥିବା ମୋଟର ଗାଡ଼ି ଆଡ଼କୁ । କିନ୍ତୁ ଜନସମୁଦ୍ର ପାର ହେବା କଷ୍ଟକର ଥିଲା । ତଥାପି ମୋଟର ଗାଡ଼ିରେ ବସି ସେଇ ଲୋକ ଲହଡ଼ି ପାର ହୋଇ ଗାଡ଼ି ଆଗକୁ ଚାଲିଲା ଉତ୍କଳ ସ୍ୱରାଜ ଆଶ୍ରମକୁ । ଏଠାରେ ପହଞ୍ଚିବା ବେଳକୁ ବି ସୂର୍ଯ୍ୟ ଉଇଁ ନ ଥାଆନ୍ତି । ସିନ୍ଦୂରଫଟା ନାଲି ଆକାଶକୁ ଚାହିଁ ଏକ ନୂଆ ସକାଳକୁ ଅପେକ୍ଷା କଲେ ମହାତ୍ମା ଗାନ୍ଧୀ ।

ଠିକ୍ ୧୦ ଦିନ ତଳେ ଉତ୍କଳ କଂଗ୍ରେସ ଗଢ଼ା ହୋଇଥାଏ । ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ତାହାର ପ୍ରଥମ ସଭାପତି ଭାବେ ସ୍ୱୀକାର କରି ଡ. ଏକାମ୍ର ରସୁଲ, ଭାଗିରଥି ମହାପାତ୍ର, ବ୍ରଜବନ୍ଧୁ ଦାସ, ନିରଞ୍ଜନ ପଟ୍ଟନାୟକ, ଜଗବନ୍ଧୁ ସିଂହ, ହରେକୃଷ୍ଣ ମହତାବ ପ୍ରମୁଖଙ୍କୁ ସେଥିରେ ସଦସ୍ୟ ଭାବେ ଚୟନ କରାଯାଇଥାଏ । ଅଣ କଂଗ୍ରେସ ରାଜନୀତିରେ ସ୍ୱରାଜ ହାସଲ ଅସମ୍ଭବ ଏବଂ ସ୍ୱତନ୍ତ୍ର ଓଡ଼ିଶା ଗଠନ ଅସମ୍ଭବ ବୋଲି ଗୋପବନ୍ଧୁଙ୍କ ଯୁକ୍ତିରେ ଓଡ଼ିଶାର ମାଣ୍ୟଗଣ୍ୟମାନେ ସହମତ ହୋଇଥାଆନ୍ତି । ସେଥିଲାଗି ପଣ୍ଡିତ ଗୋପବନ୍ଧୁଙ୍କୁ ଉତ୍କଳ କଂଗ୍ରେସର ସଭାପତି ଭାବେ ବାଛି ଓଡ଼ିଶାର ଦାବିକୁ ହାସଲ ପାଇଁ ଚେଷ୍ଟା ଅବିରତ ଚାଲୁଥିଲା । ଏହି ମୁହୂର୍ତ୍ତରେ ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ଗସ୍ତ ଜନସାଧାରଣ ଓ ତତ୍କାଳୀନ ନେତାଙ୍କୁ ଅତ୍ୟନ୍ତ ଉତ୍ସାହିତ କରିଥିଲା, ଯେମିତି ସେମାନଙ୍କ ହକ୍ ହାତ ପାହାନ୍ତାରେ ରହିଛି ବୋଲି ଅନୁଭବ ହେଲା ।

ଗାନ୍ଧିଜୀଙ୍କ ଓଡ଼ିଶା ଆସିବାର ମୁଖ୍ୟ କାରଣ ଥିଲା ସ୍ୱରାଜ ବିଷୟରେ ସଚେତନତା ସୃଷ୍ଟି କରିବା । ଆନ୍ଦୋଳନକୁ ମଜଭୁତ କରିବା । ଇଂରେଜଙ୍କୁ ସବୁକ୍ଷେତ୍ରରେ ଅସହଯୋଗ କରିବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇବା । ଏ କ୍ଷେତ୍ରରେ ହିନ୍ଦୁ ମୁସଲମାନଙ୍କୁ ଏକ ହେବାକୁ ପଡ଼ିବ । ହିନ୍ଦୁଙ୍କ ଭିତରେ ଥିବା ଜାତିପ୍ରଥା, ବୈଷମ୍ୟ ଭାବନାକୁ ଦୂର କରିବାକୁ ପଡ଼ିବ । ସମସ୍ତଙ୍କୁ ସ୍ୱାବଲମ୍ବୀ କରିବାକୁ ହେବ । ଯୁଆଡ଼େ ବି ସେ ଲୋକଙ୍କ ଉଦ୍ଦେଶ୍ୟରେ ଭାଷଣ ଦେଉଥିଲେ ଏହି କଥା କହୁଥିଲେ । ଓଡ଼ିଶାରେ ବି ତାହା ଲୋକେ ଶୁଣିବାକୁ ଅନାଇ ଥାଆନ୍ତି ।

ମାର୍ଚ୍ଚ୨୪ ତାରିଖରେ କଟକର ପ୍ରସିଦ୍ଧ ମୁସଲମାନ ଧର୍ମପୀଠ କଦମ-ଏ ରସୁଲଠାରେ ଏକ ସମାବେଶର ଆୟୋଜନ ହେଲା । ସାରା ଭାରତରେ ମୁସଲମାନ ନେତାଙ୍କ ଦ୍ୱାରା ଆରମ୍ଭ ହୋଇଥିବା ଖିଲାଫତ ଆନ୍ଦୋଳନକୁ ମହାତ୍ମା ଗାନ୍ଧୀ ସମର୍ଥନ କରୁଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟରେ ଆରମ୍ଭ ହୋଇଥିବା ଏହି ଆନ୍ଦୋଳନ ଭାରତୀୟ ମୁସଲମାନଙ୍କୁ ଇଂରେଜଙ୍କ ବିରୋଧରେ ଏକଜୁଟ୍ କରିଥିଲା । ଆଉ ଏହାକୁ ଏକ ଜାତୀୟତା ରକ୍ଷା ଆନ୍ଦୋଳନରେ ପରିଣତ କରିବାକୁ ମହାତ୍ମା ଗାନ୍ଧୀ ଚାହିଁଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ପରେ ଅଟୋମାନ ସାମ୍ରାଜ୍ୟ ଲୋପ ପାଇବା ପରେ ଅଟୋମାନ ସମ୍ରାଟଙ୍କୁ ଖଲିଫା ଭାବେ ସ୍ୱୀକାର କରି ତାଙ୍କ ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବାକୁ ଭାରତୀୟ ମୁସଲମାନମାନେ ଦାବି କରୁଥିଲେ । ୧୯୨୦ ମସିହାରେ ଲଣ୍ଡନ ଯାଇ ଏକ ପ୍ରତିନିଧି ଦଳ ବ୍ରିଟିଶ ମୁଖ୍ୟଙ୍କୁ ଏ ନେଇ ଏକ ଚରମପତ୍ର ମଧ୍ୟ ଦେଇଥିଲେ । କିନ୍ତୁ ତାହାକୁ ବ୍ରିଟିଶ ସରକାର ଗୁରୁତ୍ୱ ନ ଦେବାରୁ ଆନ୍ଦୋଳନ ତୀବ୍ରତର ହେଉଥିଲା ।

କଦମ-ଏ ରସୁଲଠାରେ ଉଦ୍‌ବୋଧନ ଦେଇ ଗାନ୍ଧିଜୀ ପୂର୍ବପରି ଖିଲାଫତ ଆନ୍ଦୋଳନକୁ ସମର୍ଥନ କରିବା ସହ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଆନ୍ଦୋଳନ ବୋଲି ଅଭିହିତ କରିଥିଲେ । ବ୍ରିଟିଶ ସରକାର ଏ ସଂକ୍ରାନ୍ତରେ ଅନ୍ତରାୟ ସୃଷ୍ଟି କରୁଛନ୍ତି ବୋଲି ସେ କହିଥିଲେ । ସାମ୍ପ୍ରଦାୟିକତା ଏକତା ପ୍ରତିଷ୍ଠା ପାଇଁ ସେ କହିଥିଲେ, 'ଆପଣମାନେ ହିନ୍ଦୁମାନଙ୍କ ସହ ମିଶି ସଦ୍‌ଭାବ ରକ୍ଷା କରିବା ଉଚିତ । ଗୋ ହତ୍ୟା ପ୍ରଶ୍ନ ଉପରେ ମୁଁ ମୁସଲମାନଙ୍କ ସହ କୌଣସି ସଉଦା କରିବାକୁ ଚାହେଁ ନାହିଁ । ଯେପର୍ଯ୍ୟନ୍ତ ଖିଲାଫତ ସମସ୍ୟାର ସନ୍ତୋଷଜନକ ସମାଧାନ ହୋଇନାହିଁ ହିନ୍ଦୁମାନେ ସେମାନଙ୍କ ବନ୍ଧୁ ଓ ଭାଇ ଭାବେ ନିଜର କର୍ତ୍ତବ୍ୟ ତୁଲାଇବେ ବୋଲି ସେ ନିର୍ଭର ପ୍ରତିଶ୍ରୁତି ଦେଇଥିଲେ ।

ଦିନ ୨ଟାରେ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା ବିନୋଦ ବିହାରୀସ୍ଥିତ ଦେବୀ ମଣ୍ଡପରେ ଗାନ୍ଧିଜୀ ମହିଳାଙ୍କୁ ଉଦ୍‌ବୋଧନ ଦେବେ । ଉଦ୍ଦେଶ୍ୟ ଥିଲା ସ୍ୱରାଜ ଆନ୍ଦୋଳନକୁ ସାହାଯ୍ୟ କରିବା । ଏହି କ୍ରମରେ ମହିଳାମାନଙ୍କୁ ଗହଣା ପିନ୍ଧା ତ୍ୟାଗ କରି ତାହାକୁ ସଂଗ୍ରାମ ଚଳାଇବା ଲାଗି ଦାନ କରିବାକୁ ଆହ୍ୱାନ ଦିଆଗଲା । ଏଥିରେ ଅଭିଭୂତ ହେଲେ ମହିଳାମାନେ । ପାଖାପାଖି ୪୦ ରୁ ୫୦ ମହିଳା ଉପସ୍ଥିତ ଥିଲେ । ସଙ୍ଗେ ସଙ୍ଗେ ନିଜର କାନଫୁଲ, ମୁଦି ପ୍ରଭୃତି ଛୋଟ ଛୋଟ ଗହଣା କାଢ଼ି ଦାନ ଦେଲେ । ଏହା ସହ କିଛି ଟଙ୍କା ମଧ୍ୟ ଦାନ ଦିଆଗଲା ।

ଅପରାହ୍ଣରେ ସାଧାରଣ ସଭା ପାଇଁ ଆୟୋଜନ ହୋଇଥାଏ । କାଠଯୋଡ଼ି ନଦୀ ପଠାରେ ଏଥିପାଇଁ ଗାନ୍ଧୀଙ୍କୁ ଦେଖିବା ଓ ତାଙ୍କଠୁ ଶୁଣିବା ପାଇଁ ଅସଂଖ୍ୟ ଲୋକଙ୍କ ସମାଗମ ହୋଇଥାଏ । ସାଢ଼େ ପାଞ୍ଚଟା ବେଳେ ଗାନ୍ଧିଜୀ ପହଞ୍ଚିଲେ । ବନ୍ଦେ ମାତରମ ଗାନ ହେଲା । ପରେ ଗୋପବନ୍ଧୁ ସ୍ୱାଗତ ଭାଷଣ ଦେଇ ମହାତ୍ମାଙ୍କୁ ଅନୁରୋଧ କରିଥିଲେ ଉଦ୍‌ବୋଧନ ପାଇଁ ।

ବେଶ ଗମ୍ଭୀର ସ୍ୱରରେ ମହାତ୍ମା ପାପ ଅତ୍ୟାଚାର ଓ ଖିଲାଫତ ଅନ୍ୟାୟର ସମାଧାନ କଥା କହିଲେ । ଅସହଯୋଗ ମାଧ୍ୟମରେ ଏହା ସମ୍ଭବ ବୋଲି ଯୁକ୍ତି ଦର୍ଶାଇଲେ । ଏପରିକି ଅନେକ ତାଙ୍କ ପନ୍ଥାକୁ ତାଚ୍ଛଲ୍ୟ କରୁଥିଲେ ମଧ୍ୟ ସେ ଲକ୍ଷ୍ୟ ହାସଲଠୁ କମ ଦୂରରେ ବୋଲି ଲୋକଙ୍କୁ ଜଣାଇଲେ । ହିନ୍ଦୁ ମୁସଲମାନଙ୍କ ଏକତା ସମ୍ପର୍କରେ ବର୍ଣ୍ଣନା କରି ସେ କହିଥିଲେ, 'ହିନ୍ଦୁ-ମୁସଲମାନ ହେଉଛନ୍ତି ଭାରତ ମାତାର ଦୁଇ ସନ୍ତାନ' ।

ଅସହଯୋଗ ବିଷୟରେ ବର୍ଣ୍ଣନା କରି ଗାନ୍ଧିଜୀ କହିଛନ୍ତି, ଏହା ହେଉଛି ଅହିଂସାର ମାର୍ଗ । ଅହିଂସା ଦ୍ୱାରା ଭାରତ ସ୍ୱାଧୀନ ହୋଇପାରିବ । 'ଆମ୍ଭମାନଙ୍କ ହାତରେ ତରବାରୀ ବା ଶାରୀରିକ ବଳ ନାହିଁ । ମୋ ମତରେ ତରବାରୀ ଥିଲେ ସୁଦ୍ଧା ଶତ୍ରୁ ଓ ପାପୀ ଆଗରେ ତାହାକୁ ଉତ୍ତୋଳନ କରିବା ନାହିଁ । ଅସହଯୋଗ ଆମର ଧର୍ମ । ସ୍ୱରାଜ ଆମର ମୁକ୍ତି' ।

କାଠଯୋଡ଼ି ପଠାରେ ସାଧାରଣ ଜନତାଙ୍କୁ ଉଦ୍‌ବୋଧନ ଦେବା ପରେ କାର୍ଯ୍ୟକ୍ରମ ଥିଲା ସନ୍ଧ୍ୟାବେଳେ ମାରୱାଡ଼ି ଓ ଗୁଜରାଟୀ ବ୍ୟବସାୟୀଙ୍କୁ ଉଦ୍‌ବୋଧନ ଦେବେ । ଗାନ୍ଧିଜୀ ଏଠାରେ ବ୍ୟବସାୟ ଅପେକ୍ଷା ଦେଶ ପ୍ରେମ ସ୍ୱରାଜ ହାସଲ ଦିଗରେ ବ୍ରତୀ ହେବାକୁ ଲୋକଙ୍କୁ ପ୍ରବର୍ତ୍ତାଇବାକୁ ବ୍ୟବସାୟୀଙ୍କୁ ଉଦ୍‌ବୋଧନ ଦେଇଥିଲେ । 'ଆପଣମାନେ ଓଡ଼ିଶାରେ ବ୍ୟବସାୟ କରୁଛନ୍ତି । ଓଡ଼ିଶା ଲୋକଙ୍କଠାରୁ ଅନେକ ମୁନାଫା ଅର୍ଜନ କରୁଛନ୍ତି । ଏଣୁ ଏଠାରେ ସ୍ୱରାଜ ପାଇଁ ଆରମ୍ଭ ହୋଇଥିବା ଆନ୍ଦୋଳନକୁ ସମର୍ଥନ କରି ଖର୍ଚ୍ଚ ତୁଲାଇବା ଲାଗି

ଚାନ୍ଦା ଦେବା ଦରକାର । ଅନ୍ୟ ସହରରେ ରହୁଥିବା ଆପଣଙ୍କ ଜାତିଭାଇଙ୍କୁ ଅନୁସରଣ କରନ୍ତୁ ବୋଲି ପରାମର୍ଶ ଦେଲେ । ଏହା ଅନେକ ପ୍ରଭାବ ପକାଇଥିଲା ଭାରତର ସ୍ୱାଧୀନତା ଆନ୍ଦୋଳନରେ । ବିଭିନ୍ନ ଆଡୁ ଆର୍ଥିକ ଦାନ ଓ ସହାୟତାର ସୁଅ ବୋହିଥିଲା ।

ରାତିରେ ସ୍ୱରାଜ ଆଶ୍ରମରେ ଗାନ୍ଧିଜୀ ବିଶ୍ରାମ ନେବା ସମୟରେ ପରବର୍ତ୍ତୀ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା ହୋଇଥିଲା । ପରବର୍ତ୍ତୀ ସଭା ଆୟୋଜନ ହୋଇଥିଲା ଭଦ୍ରକରେ । ସକାଳୁ ପହଞ୍ଚିବା ପରେ ହଜାର ହଜାର ଲୋକ ତାଙ୍କୁ ସ୍ୱାଗତ କରିବାକୁ ଆସିଥିଲେ । କିନ୍ତୁ ତାଙ୍କୁ ନେବାପାଇଁ କୌଣସି ମୋଟରଗାଡ଼ି ନଥିଲା । ସ୍ଥାନୀୟ ଏସଡିଓ ମୋଟରଗାଡ଼ି ଉପରେ ଅଙ୍କୁଶ ଲଗାଇଥିଲେ । ଏଣୁ ତିନି କିଲୋମିଟର ବାଟ ସେ ଚାଲି ଚାଲି ଯାଇଥିଲେ ସାଧାରଣ ଲୋକଙ୍କୁ ଉଦ୍‌ବୋଧନ ଦେବା ପାଇଁ । ସେଠାରେ ସେ କହିଥିଲେ, 'ଏ ସରକାରର ସୈତାନପଣିଆ ଆସିଗଲାଣି' । ଏହା ଶୁଣି ବିଶାଳ ଜନତା ଆନନ୍ଦର ଧ୍ୱନି ଦେଇଥିଲେ ।

ମାର୍ଚ୍ଚ ୨୬ ତାରିଖ ଦିନ ପୁରୀ ଜିଲ୍ଲାର ସତ୍ୟବାଦୀଠାରେ କାର୍ଯ୍ୟକ୍ରମ ଆୟୋଜନ ହୋଇଥିଲା । ଏଣୁ ମହାତ୍ମା ଗାନ୍ଧୀ ଟ୍ରେନ୍‌ଯୋଗେ ଭଦ୍ରକରୁ ଆସି ସାକ୍ଷୀଗୋପାଳ ଷ୍ଟେସନରେ ପହଞ୍ଚିଲେ । ପଣ୍ଡିତ କୃପାସିନ୍ଧୁ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହରଙ୍କ ସମେତ ପାଖାପାଖି ଏକହଜାର ଲୋକ ସାକ୍ଷୀଗୋପାଳ ଷ୍ଟେସନରୁ ତାଙ୍କୁ ପଛୋଟି ଘୋଡ଼ାଗାଡ଼ିରେ ପଟୁଆର କରି ସତ୍ୟବାଦୀ ବନ ବିଦ୍ୟାଳୟକୁ ନେଇଯାଇଥିଲେ ସେଠାରୁ ସଭାସ୍ଥଳକୁ । ବକୁଳ ବନ ଭିତରେ ସଭାସ୍ଥଳ ଆୟୋଜନ ହୋଇଥିଲା । ପିଲାବୁଢ଼ା, ସ୍ତ୍ରୀଲୋକ ସମସ୍ତେ ଏଥିରେ ଯୋଗ ଦେଇଥିଲେ । ବନବିଦ୍ୟାଳୟର ଛାତ୍ରମାନେ ଶୃଙ୍ଖଳା ରକ୍ଷା ଓ ଗାନ୍ଧିଜୀଙ୍କୁ ପାଛୋଟି ଆଣିବାରେ ସାହାଯ୍ୟ କରିଥିଲେ ।

ନିକଟରେ ଦୁର୍ଭିକ୍ଷ ଯାଇଛି । ଗୋପବନ୍ଧୁ ଚିଠି ମାଧ୍ୟମରେ ତାଙ୍କୁ ସବୁକିଛି ଜଣାଇଛନ୍ତି । ସେହି ଚିଠିର ବାର୍ତ୍ତାକୁ ସେ 'ନବଜୀବନ' ଓ 'ୟଙ୍ଗ ଇଣ୍ଡିଆ' ପତ୍ରିକାରେ ପ୍ରକାଶ ମଧ୍ୟ କରିଥିଲେ । ତା' ପରେ ଠକ୍କର ବାପା ଓ ତାଙ୍କ ଦଳଙ୍କୁ ଓଡ଼ିଶାର ସ୍ଥିତି ଅନୁଧ୍ୟାନ ପାଇଁ ପଠାଇବା ସହ ପୁରୀକୁ କିପରି ଅଧିକରୁ ଅଧିକ ସହାୟତା ମିଳିବ ସେଥିଲାଗି ଦାନ କରିବାକୁ ଦେଶବାସୀଙ୍କୁ ନିବେଦନ କରିଥିଲେ ।

ଯେତେବେଳେ ସତ୍ୟବାଦୀର ଜନତାଙ୍କ ରୂପ ଭେକକୁ ଦେଖିଲେ ସେସବୁ ତାଙ୍କର ମନେ ପଡ଼ିଗଲା । ଆଖି ବୁଜି କିଛିକ୍ଷଣ ରହିବା ପରେ ଗାନ୍ଧିଜୀ କହିଥିଲେ ଯେଉଁ ଦେଶର ଲୋକେ ଖାଇବାକୁ ନପାଇ ମରିଯାଆନ୍ତି ସେ ଦେଶ ନରହତ୍ୟା ପାପର ଭାଗୀଦାର ହୁଏ । ଏଥିପାଇଁ ଇଂରେଜ ଶାସନକୁ ଦାୟୀ କଲେ । ଆଉ ସବୁ ସଭା ପରି ଏଠାରେ ମଧ୍ୟ ସ୍ୱରାଜ ପାଇଁ ପାଣ୍ଠି ଦେବାକୁ ନିବେଦନ କଲେ । ଦୀନ ଦରିଦ୍ର ସତ୍ୟବାଦୀର ଜନତା କିନ୍ତୁ ଗରିବୀକୁ ପଛରେ ପକାଇ ଦେଶ ଉଦ୍ଦେଶ୍ୟରେ ଏକଜୁଟ ହେଲେ । ଯାହା ପାଖରେ ଯାହାଥିଲା ତାକୁ ଦାନ କଲେ । ଗାନ୍ଧିଜୀ ତାହାକୁ ଦେଖି ଏ ଯେଉଁ ପାଣ୍ଠି ସଂଗ୍ରହ ହୋଇଛି ତାହା ପଇସା ନୁହେଁ ଗରିବର ରକ୍ତ । ଆଉ ଏ ରକ୍ତ ଉତ୍ସର୍ଗ କରାଯାଉଛି ସ୍ୱରାଜ ହାସଲ ପାଇଁ । 'ଏହା ମୋର ବିଶ୍ୱାସକୁ ଦୃଢ଼ୀଭୂତ କରୁଛି ।' ଲୋକଙ୍କୁ ପରିଶ୍ରମ କରିବାକୁ ଆହ୍ୱାନ ଦେବା ସହ ଅରଟ ଚଳାଇବାକୁ ପରାମର୍ଶ ଦେଲେ । ଏହାଦ୍ୱାରା ଜଣେ ଭାରତୀୟ ସ୍ୱାବଲମ୍ବୀ ହୋଇପାରିବ ବୋଲି ତାଙ୍କର ଆଶା ଥିଲା ।

ସତ୍ୟବାଦୀର ସଭା ଅବିସ୍ମରଣୀୟ ଥିଲା । ସେଠାରୁ ପୁରୀ ଅଭିମୁଖେ ଯାତ୍ରା ହେଲା । ପୁରୀଷ୍ଟେସନରେ ଅପରାହ୍ଣରେ ପହଞ୍ଚିଲା ପରେ ତାଙ୍କୁ ଶୋଭାଯାତ୍ରାରେ ଶ୍ରୀମନ୍ଦିର ଅଭିମୁଖେ ନିଆଗଲା । ହଜାର ହଜାର ସଂଖ୍ୟାରେ ଲୋକ କୀର୍ତ୍ତନ ନାଦରେ ଗାନ୍ଧିଜୀଙ୍କୁ ପାଛୋଟି ନେଲେ ।

ପୁରୀର ସମୁଦ୍ର କୂଳ ନିକଟସ୍ଥ ସାଗର ସୌଧରେ ସେ ରାତିରେ ରହିବା ପରେ ପରଦିନ ପୁରୀର ଦୁର୍ଭିକ୍ଷ ଅଞ୍ଚଳ ପରିଦର୍ଶନ କରିଥିଲେ । ୨୭ ତାରିଖ ୪ଟାବେଳେ ସେ ମହିଳାମାନଙ୍କୁ ଏକ ସ୍ୱତନ୍ତ୍ର ସମାବେଶରେ ସମ୍ବୋଧିତ କରିଥିଲେ । ୨୮ ତାରିଖ ତାଙ୍କର ମୌନ ଦିବସ ଥିଲା । ୨୯ ତାରିଖରେ ସେ ଟ୍ରେନ ଯୋଗେ ବ୍ରହ୍ମପୁର ଅଭିମୁଖେ ଯାତ୍ରା କରିଥିଲେ ।

ବ୍ରହ୍ମପୁରରେ ଅନେକ ପ୍ରସଙ୍ଗ ଥିଲା । ସ୍ୱରାଜ ଯେତିକି ଗୁରୁତ୍ୱପୂର୍ଣ୍ଣ ଥିଲା ସେମାନଙ୍କ ପରିଚୟ ବି ସେତିକି ସମ୍ବେଦନ





ବହନ କରୁଥିଲା । କାରଣ ଏହି ଅଞ୍ଚଳର ଲୋକେ ଓଡ଼ିଆ କହୁଥିଲେ ମଧ୍ୟ ସେମାନେ ଓଡ଼ିଶାର ଅଧିବାସୀ ବୋଲି ବୋଲାଇ ପାରୁ ନଥିଲେ । ଓଡ଼ିଶା ସେତେବେଳେ ବିହାର ଅଧୀନରେ ଥିବା ବେଳେ ବ୍ରହ୍ମପୁର ଅଞ୍ଚଳ ଥିଲା ମାଡ୍ରାସ ପ୍ରେସିଡେନ୍ସିରେ । ମାତୃଭାଷା ଭିତରେ ରାଜ୍ୟ ଗଠନ ପାଇଁ ସେମାନେ ଦାବି କରୁଥିଲେ । ଗାନ୍ଧିଜୀ ପୂର୍ବରୁ ଯାହା କେବେ କେଉଁଠି କହିନଥିଲେ ତାହାକୁ ବ୍ରହ୍ମପୁର ସଭାରେ ପ୍ରାଧାନ୍ୟ ଦେଇଥିଲେ । ଉତ୍କଳ ସମ୍ମିଳନୀ, ଉତ୍କଳ କଂଗ୍ରେସର ଦାବି ଅନୁସାରେ ଗାନ୍ଧିଜୀ ଭାଷା ଭିତ୍ତିରେ ରାଜ୍ୟ ଗଠନକୁ ସମ୍ମତି ଦେଲେ । ଏଥିରେ ବିବାଦ ଆସିଲେ ପଞ୍ଚାୟତ ମାଧ୍ୟମରେ ତାହାର ସମାଧାନ କରିବାକୁ ମଧ୍ୟ କୁହାଗଲା ।

ଅପରପକ୍ଷରେ ସାରା ଦେଶକୁ ଗୋଟିଏ ଭାଷାର ସୂତ୍ରରେ ବାନ୍ଧି ରଖିବାକୁ ଗାନ୍ଧିଜୀ ହିନ୍ଦୁସ୍ତାନୀ ଭାଷା ଶିକ୍ଷା ଉପରେ ଗୁରୁତ୍ୱ ଦେଲେ । ତେଲୁଗୁ ମହିଳାମାନେ ମଧ୍ୟ ହିନ୍ଦୁସ୍ତାନୀ ଶିଖନ୍ତୁ ବୋଲି କହିଲେ । ଭାଷା ଭିତରେ ସଂଗ୍ରାମ ଦୂର ହେଲେ ଭାରତମାତାର ଶକ୍ତି ବୃଦ୍ଧି ପାଇବ ବୋଲି ସେ ଅନୁମାନ କରିଥିଲେ ।

ଏଇଠି ଶେଷ ହୋଇଥିଲା ଗାନ୍ଧିଜୀଙ୍କ ପ୍ରଥମ ଓଡ଼ିଶା ଯାତ୍ରା । ମାର୍ଚ୍ଚ ୩୧ ତାରିଖ ଦିନ ସେ ବେଜୱାଡ଼ା ଅଭିମୁଖେ ଯାତ୍ରା କଲେ, କଂଗ୍ରେସ ଅଧିବେଶନରେ ଯୋଗ ଦେବାଲାଗି । ୮ ଦିନର ଏହି ରହଣି ଓଡ଼ିଶା ନେତୃତ୍ୱମଣ୍ଡଳୀକୁ ନୂଆ ଦିଗ ଦେଖାଇଥିଲା । ଧନୀ, ଗରିବ, ହିନ୍ଦୁ, ମୁସଲମାନ, ଜାତି ଅଜାତି ସମସ୍ତଙ୍କୁ ଗୋଟିଏ ମନ୍ତ୍ରରେ ବାନ୍ଧିବାର ମନ୍ତ୍ର ଫୁଙ୍କିଥିଲେ । ଯେମିତି ସାରା ଓଡ଼ିଶା ଏକ ହୋଇଥିଲା ସ୍ୱରାଜ ହାସଲରେ । ବିଦେଶୀ ଦ୍ରବ୍ୟ ବର୍ଜନ ଚାଲିଲା । ଚାକିରି ଛାଡ଼ି ଅନେକ ଲୋକ ଆନ୍ଦୋଳନରେ ଯୋଗ ଦେଲେ । ପିଲାମାନେ ବିଦେଶୀ ସ୍କୁଲ ବର୍ଜନ କରି ଦେଶ ଗଠନରେ ଲାଗିଲେ । ଘରେ ଘରେ ଚରଖାରେ ନିଜ ଖଦି ନିଜେ ବୁଣିଲେ । ଆତ୍ମ ବିଶ୍ୱାସ ବଢ଼ିଲା । ଇଂରେଜ ଅଧିକାରୀଙ୍କ ମୁହଁରେ ସ୍ୱାଭିମାନର ଜବାବ ରଖିବାକୁ ଆଉ ଲୋକେ ଡରିଲେ ନାହିଁ । ପରବର୍ତ୍ତୀ ସମୟରେ ରାଜ୍ୟର ବିଭିନ୍ନ ଆଡୁ ଗାନ୍ଧିଜୀଙ୍କୁ ଆମନ୍ତ୍ରଣ କରାଗଲା । ଜାତୀୟତାର ଭାବନା ଓ ସ୍ୱାଧୀନତା ପ୍ରାପ୍ତି ପାଇଁ ତାଙ୍କୁ ଉଦ୍‌ବୁଦ୍ଧ କରିବାକୁ ଏ ଯେଉଁ ଡାକରା, ସେଥିରେ ଗାନ୍ଧିଜୀ ମଧ୍ୟ ସାମିଲ ହୋଇଥିଲେ । ୧୯୨୧ରୁ ୧୯୪୮ ମଧ୍ୟରେ ଗାନ୍ଧିଜୀ ୭ଥର ଓଡ଼ିଶା ଆସିଛନ୍ତି । ଏହି ଗସ୍ତରେ ସେ ସମୁଦାୟ ୬୯ ଦିନ ଓଡ଼ିଶାର ଲୋକଙ୍କ ସହ କଥା ହୋଇଛନ୍ତି, ତାଙ୍କ ଆତ୍ମବିଶ୍ୱାସ ବଢ଼ାଇଛନ୍ତି । ସେଇ ଛାପ ଆଜିବି ରାଜ୍ୟର ବିଭିନ୍ନ କୋଣରେ ବଞ୍ଚି ରହିଛି । କେଉଁଠି ଅରଟ କଥା କହୁଛି ତ କେଉଁଠି ଗାନ୍ଧୀ ଭଗବାନ । ଆଉ ଯେଉଁଠି ସ୍ୱାଧୀନତା ସଂଗ୍ରାମୀମାନେ ରହିଛନ୍ତି, ସେମାନେ ଯୁବ ପିଢ଼ିଙ୍କୁ ଶିଖାଉଛନ୍ତି ଗାନ୍ଧୀ ଦର୍ଶନ । ଆଜି ଗାନ୍ଧୀ ନାହାନ୍ତି ସତ, ତାଙ୍କ ଆଦର୍ଶ କିନ୍ତୁ କୋଟି କୋଟି ଭାରତୀୟଙ୍କ ହୃଦୟରେ ବଞ୍ଚି ରହିଛି । ବିପଦ ସାମ୍ନାରେ ଠିଆ ହେଲେ ତାଙ୍କରି ଅହିଂସା, ଅସହଯୋଗ ଆଉ ଆନ୍ଦୋଳନର ଡାକରା ଦିଆଯାଉଛି । ସାଧାରଣ ଲୋକଟିଏ ଏହି ପଥରେ ଯାଇ ଅନେକ ବଡ଼ ବଡ଼ ବଳଙ୍କ ସହ ମୁକାବିଲା କରିପାରୁଛି । ଏହାଠୁ ବଳି ଆଉ କି ଶକ୍ତି ଜଣେ ଅନ୍ୟକୁ ଦେଇପାରିଥାଆନ୍ତା ?

**ବିଷୟ ଉତ୍ସ:** ପାବକ କାନୁନଗୋଙ୍କ 'ଓଡ଼ିଶା ଓ ଗାନ୍ଧୀ' ଓ ରାମଚନ୍ଦ୍ର ଗୁହାଙ୍କ 'ଗାନ୍ଧୀ ଇନ୍ ଓଡ଼ିଶା' ।

ବାରବାଟୀ ନୂଆ ସାହି, ପୁରୀ– ୭୫୨୦୦୧





# ଭାରତରେ ଗଣତନ୍ତ୍ର ଶାସନ–ଏକ ପ୍ରତିଫଳନ

**ଅମିନୀଲୁ ରାୟ**

ଯୁଗଯୁଗର ପରାଧୀନତାର ଶୃଙ୍ଖଳକୁ ଛିନ୍ନ କରି ଆଜିକୁ ଅର୍ଦ୍ଧଶତାବ୍ଦୀ ତଳେ ଭାରତୀୟ ଜନତା ନୂତନ ଭାରତର ନିର୍ମାଣ ଦିଗରେ ଯେଉଁ ଶପଥ ଗ୍ରହଣ କରିଥିଲେ, ତାହା ଯେ ବହୁ ଭାବରେ ସଫଳ ହୋଇଛି, ଏ କଥାକୁ କେହି ଅସ୍ୱୀକାର କରିପାରିବେ ନାହିଁ । କାରଣ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଏବଂ ମର୍ଯ୍ୟାଦା ଏଠାରେ ପ୍ରତିଷ୍ଠିତ ହୋଇଛି । ସମାଜର ଦଳିତ, ଅବହେଳିତ ଓ ସାଧାରଣ ବ୍ୟକ୍ତି ସ୍ୱାଧୀନ ଭାବରେ ମୁଣ୍ଡ ଟେକି ଆପଣାର ଅଧିକାର ସାବ୍ୟସ୍ତ କରିପାରିଛନ୍ତି । ଆହୁରି ମଧ୍ୟ ସେମାନେ ସକ୍ରିୟଭାବେ ଶାସନରେ ଅଂଶ ଗ୍ରହଣ କରିପାରୁଛନ୍ତି ।

ସବୁଠାରୁ ଉଲ୍ଲେଖଯୋଗ୍ୟ ଯେ ପ୍ରତି ୫ ବର୍ଷରେ ପ୍ରତିନିଧି ସଭାର ପରିବର୍ତ୍ତନ ସହିତ ଏଭଳି ଏକ ବୃହତ ରାଷ୍ଟ୍ରରେ କ୍ଷମତା ହସ୍ତାନ୍ତର କାର୍ଯ୍ୟ ସୁରୁଖୁରରେ ସମ୍ପାଦିତ ହୋଇପାରୁଛି । ପ୍ରତିବେଶୀ ପାକିସ୍ତାନ ଓ ବଙ୍ଗଳାଦେଶ ଭଳି ଦୁଇଟି କ୍ଷୁଦ୍ର ରାଷ୍ଟ୍ରରେ ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଏକାଧିକବାର ସାମରିକ ବିପ୍ଳବ ଘଟି ଏକଛତ୍ରବାଦ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ଭାରତରେ ତାହା ଘଟିନାହିଁ । ଏଠାରେ ବିଭିନ୍ନ ସମୟରେ ସୃଷ୍ଟି ହୋଇଥିବା ବ୍ୟାପକ ଜନଅସନ୍ତୋଷ କେବେହେଲେ ହିଂସାମୁଖୀ ହୋଇନାହିଁ କିମ୍ବା ସାମରିକ ଶକ୍ତି ଏହାର ସୁଯୋଗ ନେବାକୁ ଚେଷ୍ଟା କରିନାହିଁ । କୃଷି, ଶିଳ୍ପ, ବିଜ୍ଞାନ ଓ ବିଭିନ୍ନ ଔଦ୍ୟୋଗିକ କ୍ଷେତ୍ରରେ ଭାରତ ଅକଳ୍ପନୀୟ ଅଗ୍ରଗତି ହାସଲ କରିପାରିଛି । ଦେଶ ସ୍ୱାଧୀନତା ପ୍ରାପ୍ତିବେଳକୁ ଏଠାରେ ପିନ୍‌କଣ୍ଟାଟିଏ ତିଆରି ହୋଇପାରୁନଥିବାବେଳେ ଏବେ ଏଠାରେ ସୁପରସୋନିକ୍ ଜେଟ୍ ବିମାନ ତିଆରି ହୋଇପାରୁଛି । ପୁନଶ୍ଚ ପରମାଣୁ ଶକ୍ତି ହାସଲ କରିବାରେ ଭାରତ ହେଉଛି ପୃଥିବୀର ୫ମ ରାଷ୍ଟ୍ର । ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଭାରତ କେବଳ ସ୍ୱାବଲମ୍ବନଶୀଳତା ହାସଲ କରି ନାହିଁ, ସେ ଏକ ରପ୍ତାନିକାରୀ ରାଷ୍ଟ୍ରଭାବେ ତାଲିକାଭୁକ୍ତ ହୋଇପାରିଛି । ଚୀନ୍‌ର ଖାଦ୍ୟସଙ୍କଟ ଦୂର କରିବା ପାଇଁ ଭାରତ ଖାଦ୍ୟ ଯୋଗାଇଛି । ଦେଶରେ ଏକ ସ୍ୱାଧୀନ ଗଣତାନ୍ତ୍ରିକ ଶାସନ କାର୍ଯ୍ୟ କରୁଥିବାରୁ ଏହା ସମ୍ଭବ ହୋଇପାରିଛି । ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ, ବିଶ୍ୱଶାନ୍ତି, ନିରସ୍ତ୍ରୀକରଣ ଓ ଶାନ୍ତି ଉଦ୍ଦେଶ୍ୟରେ ପରମାଣୁ ଶକ୍ତିର ପ୍ରୟୋଗ ଇତ୍ୟାଦି କ୍ଷେତ୍ରରେ ଭାରତ ବିଶେଷ ନେତୃତ୍ୱ ଗ୍ରହଣ କରିଛି ।

ସଂପ୍ରତି ଆଧୁନିକ ଯୁଗରେ ଗଣତନ୍ତ୍ର ପଦ୍ଧତି ହିଁ ସର୍ବଶ୍ରେଷ୍ଠ ଶାସନ ପଦ୍ଧତି ଭାବରେ ବିବେଚିତ ହୋଇଅଛି । ଏକ ସମୟରେ ଆମେରିକାର ରଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ୍ ଗଣତନ୍ତ୍ରର ସଂଜ୍ଞା ଦେବାକୁ ଯାଇ କହିଥିଲେ – ଡେମୋକ୍ରାସି ଇଜ୍ ଏ ସର୍ଟ ଅଫ୍ ଗଭର୍ଣ୍ଣମେଂଟ୍ ହୁଇଚି ଇଜ୍ ଅଫ୍ ଦି ପିପୁଲ୍, ବାୟ ଦି ପିପୁଲ୍ ଆଣ୍ଡ୍ ଫର୍ ଦି ପିପୁଲ୍ । ସେହି କାରଣରୁ ପୃଥିବୀର ବିଭିନ୍ନ ଦେଶରେ କ୍ରମେ ରାଜତନ୍ତ୍ର ଓ ସୈରତନ୍ତ୍ରର ବିଲୋପ ଘଟି ସେଠାରେ ଗଣତନ୍ତ୍ର ଶାସନ ପଦ୍ଧତି ପ୍ରତିଷ୍ଠିତ ହୋଇଛି । ଏବେ ମଧ୍ୟ ଅନେକ ରାଷ୍ଟ୍ରରେ ଜନସାଧାରଣ ଆତ୍ମନିୟନ୍ତ୍ରଣର ଅଧିକାରପ୍ରାପ୍ତ ହୋଇନାହାନ୍ତି ଏବଂ ସେଥିପାଇଁ ଅହରହ ସଂଗ୍ରାମ ଚାଲିଛି । ଭାରତର ଜନସାଧାରଣ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ଦୀର୍ଘଦିନ ଧରି ସଂଗ୍ରାମ ଚଳାଇ ଆଜିକୁ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ପୂର୍ବେ ସ୍ୱାଧୀନତା ହାସଲ



ଆଧୁନିକ ଯୁଗରେ ଗଣତନ୍ତ୍ର କହିଲେ ସାଧାରଣତଃ ଲିବରାଲ୍ ଡେମୋକ୍ରାସି ବା ଉଦାର ଗଣତନ୍ତ୍ରକୁ ବୁଝାଏ । ଗଣତନ୍ତ୍ରର କେତୋଟି ପ୍ରଧାନ ଲକ୍ଷଣ ହେଉଛି – ସାକ୍ଷର ନିରକ୍ଷର, ଧନୀ ନିର୍ଦ୍ଧନ, ଜାତି, ଧର୍ମ ଇତ୍ୟାଦି ନିର୍ବିଶେଷରେ ଦେଶର ପ୍ରତ୍ୟେକ ସାବାଳକ ମହିଳା ପୁରୁଷଙ୍କୁ ଗୋଟିଏ ଲେଖାଏଁ ଭୋଟ ଦେବାର ଅଧିକାର ପ୍ରଦାନ, ଗୋପନ ବାଲାଟ ବ୍ୟବସ୍ଥା, କ୍ଷମତା ଲାଭ କରିବାକୁ ଆଶାୟୀ ଥିବା ସଂଖ୍ୟା ଗରିଷ୍ଠ ଦଳୀୟ ଅନୁଷ୍ଠାନକୁ ସ୍ୱୀକୃତି, ସର୍ବୋପରି ଏକ ଲିଖିତ ବା ଅଲିଖିତ ସମ୍ବିଧାନ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେବା ପରେ ୧୯୫୦ ମସିହା ଜାନୁଆରୀ ୨୬ ତାରିଖଠାରୁ ଏଠାରେ ନୂତନ ସମ୍ବିଧାନ କାର୍ଯ୍ୟକାରୀ କରାଯାଇଛି ଏବଂ ତଦନୁଯାୟୀ ସାବାଳକ ଭୋଟ ବ୍ୟବସ୍ଥା ଜରିଆରେ କେନ୍ଦ୍ରରେ ଏବଂ ରାଜ୍ୟରେ ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ପ୍ରତି ୫ ବର୍ଷ ପାଇଁ ସରକାର ଗଠନ କରାଯାଉଛି । ଭାରତରେ ଗଣତନ୍ତ୍ରର ଚେର ଯେ ସୁଦୃଢ଼ ଏଥିରେ ସଂଦେହ ନାହିଁ । ଏ ଦେଶରେ ଯେ ପୁଣି ଥରେ ରାଜତନ୍ତ୍ର ବା ଏକଛତ୍ରବାଦ ପ୍ରତିଷ୍ଠିତ ହେବ ସେଭଳି ଆଶଙ୍କା ଆଉ ନାହିଁ ।

ଘାଗଡା, ରାହାମା, ଜଗତ୍‌ସିଂହପୁର

କରିଥିଲେ । ଜନସଂଖ୍ୟା ଦୃଷ୍ଟିରୁ ଭାରତ ହେଉଛି ପୃଥିବୀର ବୃହତମ ଗଣତାନ୍ତ୍ରିକ ରଷ୍ଟ୍ର । ବହୁ ପରୀକ୍ଷାନିରୀକ୍ଷା ମଧ୍ୟ ଦେଇ ଏଠାରେ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଗଣତନ୍ତ୍ର ଶାସନ ବଳବତ୍ତର ରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତବର୍ଷ ଏକ ସ୍ୱାଧୀନ, ସାର୍ବଭୌମ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ, ସମାଜବାଦୀ ରାଷ୍ଟ୍ର ଭାବରେ ସମଗ୍ର ବିଶ୍ୱରେ ପରିଚିତ । ଆମ ସମ୍ବିଧାନର ମୁଖବନ୍ଧରେ ହିଁ ଏଇ କଥା ଘୋଷଣା କରାଯାଇଛି ।

ପ୍ରାଚୀନ ଗ୍ରୀସ୍‌ର ଅଧିବାସୀମାନେ ଗଣତନ୍ତ୍ର ସହିତ ପରିଚିତ ଥିଲେ ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । ଖ୍ରୀଷ୍ଟପୂର୍ବ ୪ର୍ଥ ଶତକରେ ଗ୍ରୀସ୍‌ର ଚିନ୍ତାନାୟକ ପ୍ଲାଟୋ ରିପବ୍ଲିକ୍ ନାମରେ ଖଣ୍ଡେ ପୁସ୍ତକ ରଚନା କରିଥିଲେ । ପ୍ରାଚୀନ ଭାରତରେ ବିଶେଷ କରି ଖ୍ରୀଷ୍ଟପୂର୍ବ ୭ମ ଶତାବ୍ଦୀରୁ ୪ର୍ଥ ଶତାବ୍ଦୀ ମଧ୍ୟରେ ଅନେକଗୁଡିଏ ସାଧାରଣତନ୍ତ୍ର ଥିବାର ଜଣାଯାଏ । ଏଗୁଡିକୁ କୁହାଯାଉଥିଲା ଗଣ ବା ସଂଘ । କ୍ଷତ୍ରିୟମାନଙ୍କ ହାତରେ ସେତେବେଳେ ଶାସନ କ୍ଷମତା କେନ୍ଦ୍ରୀଭୂତ ଥିଲା ଏବଂ ଗୋଟିଏ ସଂଘ ଥିଲା । ରାଷ୍ଟ୍ରିୟ ବ୍ୟାପାରରେ ନେତୃସ୍ଥାନୀୟ କ୍ଷତ୍ରିୟମାନେ ଏକତ୍ର ବସି ସିଦ୍ଧାନ୍ତ ନେଉଥିଲେ । ଯେଉଁ କ୍ଷତ୍ରିୟ ଜଣକ ଶାସନ ମୁଖ୍ୟ ହେଲେ, ସେହି ପରିବାରରୁ ପୁରୁଷାନୁକ୍ରମିକ ଭାବେ ନେତା ନିର୍ବାଚିତ ହେବାରୁ ପରବର୍ତ୍ତୀ କାଳରେ ରାଜତନ୍ତ୍ରର ଉଦ୍ଭବ ଘଟିଲା ବୋଲି ଅନୁମାନ କରାଯାଏ ।

# ପତାକା

**ବୀଣାପାଣି ଚୌଧୁରୀ**

ପତାକା ଫର ଫର ଉଡାଇବା ପାଇଁ
ମୁଁ ପାରିବି,
ମୁଁ ଯଦି ହାରିଯାଏ
ଉଚ୍ଚକୁ ଟେକିବା ପାଇଁ
ତେବେ ମୋତେ ନିନ୍ଦା ମିଳିବ ।
କିନ୍ତୁ ପ୍ରତିଜ୍ଞା କର ବନ୍ଧୁ
ପାରିବ ତ ଉଡାଇ ତମେ
ମୁଠା ଦୃଢ଼ କରି
ଭାରତ ଗଗନେ
ଏଣୁ ଲୋକତନ୍ତ୍ରକୁ
ବଞ୍ଚାଇବା ପାଇଁ
ଆମ ସ୍ୱାଧୀନତାକୁ
ଦୀର୍ଘଜୀବୀ କରିବା ପାଇଁ
ଏପରି ଉଡିବା
ଉଡିବା ନୁହେଁ,
ଯାହାର ତରଙ୍ଗାୟିତ
ଉଦ୍ଦାମ ଉଡିବାରେ
ନୀଳ ଆକାଶକୁ ଆମନ୍ତ୍ରଣ କରେ
ସମସ୍ତଙ୍କୁ ମୁଠାଏ ଭାତ
ଗୋଟିଏ ବାସ
ବଞ୍ଚିବାର ନୂଆ ପ୍ରୟାସ ।

ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ
ଭୁବନେଶ୍ୱର

# ଓଡ଼ିଶାରେ ରଥଯାତ୍ରା

ସୋମା ଚାନ୍ଦ

ରଥ ଆରୋହଣ କରି ଗମନ କରୁଥିବା ବେଳେ ପଥ ମଧ୍ୟରେ ବ୍ରାହ୍ମଣମାନେ ଯାହାଙ୍କର ସ୍ତବଗାନ କରିଥାନ୍ତି ଓ ସେହି ସ୍ତବ ଶ୍ରବଣ କରି ଯିଏ ପଦେ ପଦେ ପ୍ରସନ୍ନ ହୁଅନ୍ତି– ଯିଏ ଦୟାର ସାଗର, ନିଖିଳ ଜଗତର ବନ୍ଧୁ ଓ ସିନ୍ଧୁ ପ୍ରତି ସଦୟ ହୋଇ ଯା'ର କୂଳରେ ବିରାଜମାନ– ସେହି ପ୍ରଭୁ ଜଗନ୍ନାଥଦେବ ମୋର ନୟନ ପଥର ପଥିକ ହୁଅନ୍ତୁ ।



ଶ୍ରୀଶଙ୍କରାଚାର୍ଯ୍ୟଙ୍କ ରଚିତ 'ଜଗନ୍ନାଥଷ୍ଟକମ୍'ର ଉପରୋକ୍ତ ପଞ୍ଚମ ପଦରେ ରହିଛି ରଥାରୂଢ଼ ପ୍ରଭୁଙ୍କ ପ୍ରତି ଭକ୍ତର ବିନତି ।

ରଥ, ରଥାରୂଢ଼ ପ୍ରଭୁ ତଥା ରଥଯାତ୍ରାକୁ ନେଇ ଭକ୍ତଠାରୁ ଆରମ୍ଭ କରି ସାଧାରଣ ଜନତା ପର୍ଯ୍ୟନ୍ତ ସଭିଙ୍କ ମନରେ ରହିଛି ଅପରିସୀମ ଆଗ୍ରହ । ଏହି ଉତ୍ସୁକତା ଆଧ୍ୟାତ୍ମିକ, ସାଂସ୍କୃତିକ ତଥା ଆଧିଭୌତିକ ଚେତନାର ଏକ ସମ୍ମିଳିତ ପରିପ୍ରକାଶ, ଯାହା ଆମ ସଭ୍ୟତା ଓ ସଂସ୍କୃତିର ଏକ ଅନବଦ୍ୟ ଅଙ୍ଗ ।

ଓଡ଼ିଶାରେ ରଥଯାତ୍ରା ପ୍ରସଙ୍ଗରେ ଆଲୋଚନା କଲା ବେଳେ ଯେଉଁ କଥାଟି ପ୍ରସଙ୍ଗତଃ ପ୍ରଥମେ ମନକୁ ଆସେ ତାହା ହେଲା ରଥ । ବିମାନ, ଦୋଳା, ଅଶ୍ୱ, ହସ୍ତୀ ଥାଉ ଥାଉ ମହାପ୍ରଭୁ କାହିଁକି ରଥରେ ଯାତ୍ରା କରନ୍ତି । ଏହାର ଉତ୍ସ ଜାଣିବାକୁ ହେଲେ ଆମକୁ ଫେରିଯିବାକୁ ପଡ଼ିବ ପ୍ରାଚୀନକାଳକୁ ଯେତେବେଳେ ସଭ୍ୟମଣିଷ ପାଇଁ ରଥ ହିଁ ଥିଲା ଶ୍ରେଷ୍ଠ ଯାନ– ଗମନା ଗମନର ମୁଖ୍ୟ ଆଧାର । ଧର୍ମୀୟ ଭାବନାର ଅଭ୍ୟୁଦୟ ସହିତ ପ୍ରାଚୀନ ମାନବ ନିଜର ଆରାଧ୍ୟ ଦେବତାଙ୍କୁ ମଧ୍ୟ ଏହି ଯାନରେ ବସାଇ ଯାତ୍ରା କରାଇବାକୁ ଚାହିଁଲା । ରମ୍ + ଥ = ରଥ ଅର୍ଥାତ୍ ବିହାର, ଗମନ ବା ଯାତ୍ରା ଉପଯୋଗୀ ଯାନ । ବୈଦିକ ସାହିତ୍ୟରେ ରଥ ବ୍ୟବହାର ଉଲ୍ଲେଖ ରହିଛି । କଠୋପନିଷଦର ମନ୍ତ୍ରରେ ଆମର ଏହି ଶରୀରକୁ ତୁଳନା କରାଯାଇଛି ରଥ ସହିତ ଯହିଁରେ ନିହିତ ଅଛି ଗଭୀର ଜୀବନ ଦର୍ଶନ ।

ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବ ଚ
ବୁଦ୍ଧି ତୁ ସାରଥିଂ ବିଦ୍ଧି ମନ ଚ ପ୍ରଗହମେବ ଚ (୧.୩.୩)

ଏଇ ଶରୀର ହେଉଛି ରଥ ଓ ଆତ୍ମା ହେଉଛି ରଥୀ । ବୁଦ୍ଧି ହେଲା ଏଇ ଶରୀର ରୂପକ ରଥର ସାରଥି । ଜୀବନରଥ ଶରୀରକୁ ଯାତ୍ରା କରାଏ । ମନୋରଥ କାମନା ପଥରେ ଯାତ୍ରା କରେ । ଦିବ୍ୟଗୁଣରେ ରଥ ହୁଏ ବିଜୟରଥ । ଶୌର୍ଯ୍ୟ ଓ ଧୈର୍ଯ୍ୟ ଜୀବନ ରଥର ଚକସଦୃଶ । ସଦାଚାର ଏଇ ରଥର ପତାକା ।




ବଳ, ବିବେକ, ଇନ୍ଦ୍ରିୟ ସଂଯମ ଓ ପରୋପକାର– ଏମାନେ ଏଇ ରଥର ଚାରୋଟି ଅଶ୍ୱସଦୃଶ । କ୍ଷମା ଓ ଦୟା ରଥ ରଜ୍ଜୁର ଅନ୍ୟ ନାମ । ହରିଭଜନ ଏଇ ରଥର ସାରଥି । ଜୀବନ ରଥର ଏହି ଦର୍ଶନର ଯଥାଯଥ ପ୍ରତିଫଳନ ଘଟିଛି ରଥଯାତ୍ରାରେ ।

ପ୍ରାଚୀନ ହିନ୍ଦୁଦର୍ଶନରେ ସୂର୍ଯ୍ୟଦେବ ଗମନାଗମନ କରନ୍ତି ରଥରେ ଯାହା ସପ୍ତ ଅଶ୍ୱଦ୍ୱାରା ବାହିତ ହୋଇଥାଏ । କୋଣାର୍କର ପ୍ରସିଦ୍ଧ ସୂର୍ଯ୍ୟମନ୍ଦିର ତେଣୁ ଅବିକଳ ରଥ ଢାଞ୍ଚାରେ ନିର୍ମିତ । ମାଘ ଶୁକ୍ଳ ପଞ୍ଚମୀ ତିଥିରେ ସେଠାରେ ରଥଯାତ୍ରା ଅନୁଷ୍ଠିତ ହେଉଥିଲା ବୋଲି ଅନେକେ ମତବ୍ୟକ୍ତ କରନ୍ତି । ଦକ୍ଷିଣ ଭାରତର ହାମ୍ପିଠାରେ ରଥାକୃତି ମନ୍ଦିର ନିର୍ମାଣ ସେମାନଙ୍କ ସ୍ଥାପତ୍ୟକଳାର ଅନ୍ୟତମ ନିଦର୍ଶନ ।

ତେବେ ହିନ୍ଦୁଧର୍ମ ବ୍ୟତୀତ ବୌଦ୍ଧଧର୍ମରେ ମଧ୍ୟ ରହିଛି ରଥଯାତ୍ରାର ଅନନ୍ୟ ପରମ୍ପରା । ଚୈତ୍ରମାସରେ ଅନୁଷ୍ଠିତ ବୌଦ୍ଧମାନଙ୍କର ରଥଯାତ୍ରା ମତ୍ସେନ୍ଦ୍ର ଯାତ୍ରା ଭାବରେ ଖ୍ୟାତ । ନେପାଳ ଦେଶରେ ବୈଶାଖ ମାସରେ ଅନୁଷ୍ଠିତ ରଥଯାତ୍ରାକୁ କୁହାଯାଏ ଭୈରବ ଯାତ୍ରା । ଭୈରବ ଓ ଭୈରବୀ ଉଭୟେ ରଥାରୂଢ଼ ହୋଇ ଯାତ୍ରା କରୁଥିବାରୁ ଏହା ତଦନୁସାରେ ନାମିତ । ପ୍ରସଙ୍ଗତଃ ଉଲ୍ଲେଖ କରାଯାଇପାରେ ଯେ ଶ୍ରୀଜଗନ୍ନାଥଙ୍କୁ ଭୈରବ (ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବ) ବୋଲି ପୂଜା କରିବାର ବିଧି ରହିଛି । ପୁନଶ୍ଚ ନେପାଳରେ ଅନୁଷ୍ଠିତ ଲିଙ୍ଗଯାତ୍ରାରେ ଲିଙ୍ଗ ରଥାରୋହଣ କରି ଯାତ୍ରା କରନ୍ତି । ଶ୍ରୀଲଙ୍କାରେ ଅନୁଷ୍ଠିତ ରଥଯାତ୍ରାରେ ବୁଦ୍ଧଦନ୍ତ ଆସୀନ ହୋଇଥାନ୍ତି । ଇଉରୋପର ପ୍ରାଚୀନ ସିସିଲି ଦ୍ୱୀପରେ ରଥଯାତ୍ରା ହେବାର ଉଲ୍ଲେଖ ରହିଛି, ଯାହାକୁ ଟାଣୁଥିଲେ ଅସଂଖ୍ୟ ମଇଁଷି ।

ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ରଥଯାତ୍ରାର ଇତିହାସ ଅତୀବ ପ୍ରାଚୀନ । ଓଡ଼ିଶାର ପରିପ୍ରେକ୍ଷୀରେ ଦେଖିବାକୁ ଗଲେ ଜଗନ୍ନାଥଙ୍କ ରଥଯାତ୍ରା ବ୍ୟତୀତ ରହିଛି ଲିଙ୍ଗରାଜ ମହାପ୍ରଭୁ ଓ ଦେବୀ ବିରଜାଙ୍କ ରଥଯାତ୍ରା ଯଦିଓ ଯାତ୍ରାର କାଳ ଓ ବିଧି ବେଶ୍ ଅଲଗା । ଚୈତ୍ରମାସ ଶୁକ୍ଳ ଅଷ୍ଟମୀ (ଅଶୋକାଷ୍ଟମୀ) ଦିନ ସମାପନ ହୁଏ ଲିଙ୍ଗରାଜ ମହାପ୍ରଭୁଙ୍କ ରଥଯାତ୍ରା, ଯାହା ମାଉସୀ ମା' ମନ୍ଦିରକୁ ଯାତ୍ରା କରେ । ତେବେ ଏଥିରେ ଆସୀନ ପ୍ରଭୁଙ୍କର ବିଜେପ୍ରତିମା ବାହୁଡ଼ା ଯାତ୍ରା ପରି ଲେଉଟନ୍ତି ନାହିଁ, ଯାହାକୁ କୁହାଯାଏ ରୁକୁଣାରଥ ଅଣଲେଉଟା । ଶକ୍ତିପୀଠ ବିରଜା କ୍ଷେତ୍ରରେ ଅନୁଷ୍ଠିତ ହୁଏ ଭିନ୍ନ ପ୍ରକାରର ରଥଯାତ୍ରା, ଯାହା ଆଶ୍ୱିନ ପ୍ରତିପଦରୁ ନବମୀ ପର୍ଯ୍ୟନ୍ତ ନଅଦିନ ଚାଲେ । ଗୋଟିଏ କାଷ୍ଠଦଣ୍ଡ ରୂପ ନିଏ ବିଜେପ୍ରତିମାର ଯାହା ପ୍ରାଚୀନ ସ୍ତମ୍ଭେଶ୍ୱରୀ ପୂଜାର ସୂଚକ । ରଥଟି ମନ୍ଦିର ବାହାରକୁ ନଯାଇ ମନ୍ଦିର ବେଢ଼ା ଭିତରେ ପ୍ରତିଦିନ ଥରେ ବୁଲେ । ନଅଦିନରେ ନଅଥର । ଏପ୍ରକାର ରଥଯାତ୍ରା ମହୀଶୂରର ଚାମୁଣ୍ଡେଶ୍ୱରୀଙ୍କ ମନ୍ଦିରରେ ମଧ୍ୟ ଅନୁଷ୍ଠିତ ହୋଇଥାଏ ।

ତେଣୁ ଦେଖିବାକୁ ଗଲେ ରଥଯାତ୍ରାର ପରମ୍ପରା ଆଦୌ ଆଧୁନିକ ନୁହଁ । ବରଂ ପ୍ରାଚୀନ ଐତିହ୍ୟ ବିମଣ୍ଡିତ ରଥଯାତ୍ରା ବୌଦ୍ଧଧର୍ମ, ସୌର, ଶାକ୍ତ, ଶୈବ ତଥା ବୈଷ୍ଣବମାନଙ୍କ ବିଶ୍ୱାସ ଓ ଆଚରଣରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରେ । ତେବେ ସବୁ ରଥଯାତ୍ରାଠାରୁ ମହାପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରା ସର୍ବଶ୍ରେଷ୍ଠ । ପୌରାଣିକ ବର୍ଣ୍ଣନା ଅନୁସାରେ ପୁରୀ ମନ୍ଦିରର ପ୍ରାଣ ପ୍ରତିଷ୍ଠାତା ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚା ଦେବୀ ଏହି ଯାତ୍ରା ପ୍ରଚଳନ କରାଇଥିବାରୁ ଏହା ଗୁଣ୍ଡିଚା ଯାତ୍ରା ନାମରେ ମଧ୍ୟ ଖ୍ୟାତ । ଏହି ବର୍ଣ୍ଣନା ଅନୁସାରେ ଇନ୍ଦ୍ରଦ୍ୟୁମ୍ନ ସରୋବର ନିକଟସ୍ଥ ଗୁଣ୍ଡିଚା ମନ୍ଦିରର ମହାବେଦୀ ଉପରେ ପ୍ରଥମେ ଆବିର୍ଭାବ ହୋଇଥିଲା ପ୍ରଭୁ ଜଗନ୍ନାଥଙ୍କର ଯାହାଙ୍କୁ ପରେ ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ ଯଜ୍ଞ କରି ଶ୍ରୀମନ୍ଦିରରେ ପ୍ରତିଷ୍ଠିତ କରାଇଥିଲେ । ତେଣୁ ବର୍ଷକୁ ଥରେ ସେହି ମହାବେଦୀ ଉପରେ ଆସୀନ ହେବା ପାଇଁ ପ୍ରଭୁ ରଥଯାତ୍ରା କରନ୍ତି ଯେଉଁଥି ପାଇଁ ରଥଯାତ୍ରାର ଅନ୍ୟ ଏକ ନାମ ମହାବେଦୀ ଯାତ୍ରା ।

ନାନା ମୁନିଙ୍କ ନାନା ମତ ପରି ଜଗନ୍ନାଥଙ୍କ ରଥଯାତ୍ରାକୁ ନେଇ ରହିଛି ବହୁ ବର୍ଣ୍ଣନା ଓ କିମ୍ବଦନ୍ତୀର ସମ୍ଭାର । ସାହିତ୍ୟ ଓ ଇତିହାସ ମଧ୍ୟ ଏ ବିଷୟରେ ନିରବ ନୁହଁନ୍ତି । ଅନୁଶାସନ, ତାମ୍ରଲେଖରେ ମଧ୍ୟ ଉଲ୍ଲେଖ ରହିଛି ରଥଯାତ୍ରାର ଉଲ୍ଲେଖ । ସାମଗ୍ରିକ ଭାବରେ ଦେଖିବାକୁ ଗଲେ ଗଣଦେବତା ଜଗନ୍ନାଥଙ୍କର ରହିଛି ଦୁଇପ୍ରକାର ଲୀଳା ।

**ପ୍ରକାଶ ଲୀଳା, ଗୁପ୍ତ ଲୀଳା**

ଗୁପ୍ତଲୀଳା ଗୁପ୍ତରେ ସମାପନ ହେଉଥିବା ବେଳେ ପ୍ରକାଶ ଲୀଳାରେ ପ୍ରଭୁ ଭକ୍ତମାନଙ୍କ ପାଖକୁ ଆସନ୍ତି ଅବା ଭକ୍ତକୁ

ଦର୍ଶନ ଦିଅନ୍ତି । ଶ୍ରୀମନ୍ଦିରରେ ଏହି ପରିପ୍ରେକ୍ଷୀରେ ରହିଛି ବହୁ ଉପଯାତ୍ରା ତଥା ପର୍ବପର୍ବାଣିର ଆୟୋଜନ । ଏଠାରେ ଅବଶ୍ୟ ହିଁ ଉଲ୍ଲେଖନୀୟ ଯେ ପ୍ରଭୁଙ୍କର ରହିଛି ତିନୋଟି ପ୍ରକାଶ ଯାହା ତାଙ୍କ ତିନିଧାମର ବୈଶିଷ୍ଟ୍ୟ ସହିତ ଜଡ଼ିତ– ଭୋଗୀ, ଯୋଗୀ ଓ ତ୍ୟାଗୀ । ପୂର୍ବସ୍ଥ ଜଗନ୍ନାଥଧାମରେ ସେ ରାଜକୀୟ ଭୋଗ ବିଳାସ ମଧ୍ୟରେ ଆରାଧିତ ହେଉଥିବା ବେଳେ ଉତ୍ତରସ୍ଥ ବଦ୍ରିନାଥଧାମରେ ସେ ପୂଜାପାଆନ୍ତି ଯୋଗୀ ରୂପରେ । ପୁନଶ୍ଚ ପଶ୍ଚିମର ଦ୍ୱାରକାଧାମରେ ପ୍ରକଟିତ ହୁଏ ମହାପ୍ରଭୁଙ୍କର ତ୍ୟାଗୀ ରୂପ । ଶ୍ରୀକ୍ଷେତ୍ରରେ ଭକ୍ତପ୍ରାଣର ଆତୁରତାକୁ ପ୍ରଶମିତ କରିବା ପାଇଁ ସ୍ନାନଯାତ୍ରା ଓ ରଥଯାତ୍ରାରେ ପ୍ରଭୁ ପ୍ରକାଶ ଲୀଳା କରନ୍ତି । ଏହି ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଗଣଦେବତା ଗଣପର୍ବ ଭାବେ ରଥଯାତ୍ରାର ରହିଛି ନିଜସ୍ୱ ଆବେଗ ।

ରଥର ଶୀର୍ଷଭାଗରେ ଦଧିନଉତି ପାଖରେ ରହିଛି ଦୁଇଟି ଓଲଟ ଶୁଆ ଯେଉଁମାନେ ବିପରିତ ଦିଗକୁ ମୁଖ କରିଥାନ୍ତି । ଆଧାତ୍ମିକ ପୃଷ୍ଠଭୂମିରୁ ବିଶ୍ଳେଷଣ କଲେ ଦେଖାଯାଏ ଯେ ଏହି ଦୁଇଟି ଶୁଆ ବିଭିନ୍ନ ଭାବର ପ୍ରତୀକ ।

– ବଳଭଦ୍ରଙ୍କ ରଥର ଦୁଇଟି ଶୁଆ ଶ୍ରଦ୍ଧା ଓ ବିଶ୍ୱାସର ପ୍ରତୀକ

– ସୁଭଦ୍ରାଙ୍କ ରଥର ଦୁଇଟି ଶୁଆ ଶ୍ରୁତି ଓ ସ୍ମୃତିର ପ୍ରତୀକ

– ଜଗନ୍ନାଥଙ୍କ ରଥର ଦୁଇଟି ଶୁଆ ଜୀବ ଓ ପରମର ପ୍ରତୀକ

ତେଣୁ ମାନବିକ ତଥା ଆଧାତ୍ମିକ ଚେତନାର ସମ୍ମିଶ୍ରଣରେ ରଥଯାତ୍ରା ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସେବା, ଐକ୍ୟ, ଭକ୍ତି ଓ ସାମ୍ୟଭାବର ପ୍ରତୀକ ।

ସେଥିରେ ପୁଣି ରଥ ଯାହା ଉପର ଦେଇ ଗତିଶୀଳ ହୁଏ ଅର୍ଥାତ୍ ରଥର ପଥ ତାହାର ମଧ୍ୟ ରହିଛି ଅସାଧାରଣ ବୈଶିଷ୍ଟ୍ୟ । ସିଂହଦ୍ୱାର ସମ୍ମୁଖରେ ତ ବିଶ୍ୱବ୍ରହ୍ମାଣ୍ଡ– ପ୍ରଦେଶ, ସ୍ୱଦେଶ ଓ ବିଦେଶରୁ ଆଗତ ଜଗନ୍ନାଥପ୍ରେମୀଙ୍କ ସମାହାର ଯେଉଁଠି ଉଦ୍ଭାସିତ ହୁଏ ଜଗନ୍ନାଥ ଚେତନାର ଦ୍ୟୁତି, ଯେଉଁଠି ନିନାଦିତ ହୁଏ ଜଗନ୍ନାଥ ଆକୃତିର ଜଣାଣ । ଉପଲବ୍ଧି ହୁଏ ପରମାନନ୍ଦର ପରିଭାଷା । ଅମୃତ ଉପଲବ୍ଧିର ପରିକ୍ରମଣିକା– ଇଏ ଏକ ନୂତନ ଯାତ୍ରା– ଏଇ ଯାତ୍ରାର ଆୟମାରମ୍ଭ ବିନ୍ଦୁ ହେଲା ବଡ଼ଦାଣ୍ଡ– ମାନବୀୟ ଅବବୋଧରେ ଶାନ୍ତିର ମୁକ୍ତିପଥ– ଅନାଦି କାଳରୁ ଭକ୍ତ ପଦରେଣୁରେ ଇଏ ଏକ ବାସ୍ତବ ପ୍ରୟାଗ । ଏଇଠି ଭୋଗୀ ସ୍ୱାର୍ଥୀ ମଣିଷ ଭୁଲିଯାଏ ନିଜସ୍ୱ ତୁଚ୍ଛତାକୁ । ସେଇଥିପାଇଁ ତ ଏଠାକାର ଧୂଳି କୈବଲ୍ୟର ଅନ୍ୟ ନାମ । ଏଇ ମାଟି ମଗ୍ନ ମାଟି ଯେଉଁଠି ମଗ୍ନ ରହିଛି ମଣିଷର ଗତି ଶାନ୍ତି ମୁକ୍ତିର ବାର୍ତ୍ତା ।

ଏମନ୍ତ ତାତ୍ତ୍ୱିକ ବଡ଼ଦାଣ୍ଡରେ ରଥଚକ ଯେତେବେଳେ ଗଡ଼ିବାକୁ ଆରମ୍ଭ କରେ, ସେତେବେଳେ ଗଡ଼ିଚାଲେ ଜୀବନର ଚକ । ସାଧାରଣ ମଣିଷଟିଏ ରୂପାନ୍ତରିତ ହୋଇଯାଏ ତୀର୍ଥଙ୍କରକୁ । ବୁଦ୍ଧତ୍ୱକୁ ଆବୋରି ବସେ ଆପଣା ଭିତରେ । ପ୍ରତ୍ୟେକଙ୍କ ଅନ୍ତରରେ ଫୁଟିଉଠେ ସାର୍ତ୍ତ୍ୱିକ କମଳ । ସୁରଭିତ ହୁଏ ଶ୍ରମଣର ବାର୍ତ୍ତା । ବଡ଼ଦାଣ୍ଡରେ ରଥଚକର ଗମନରେ ବଦଳିଯାଏ ଜୀବନର ଅର୍ଥ । ଜୀବନର ଦର୍ଶନ । ତଲ୍ଲୀନ ହୁଏ ତନୁମନ ପ୍ରାଣ । ବଡ଼ଦାଣ୍ଡର ସିଂହଦ୍ୱାରରୁ ଗୁଣ୍ଡିଚାମନ୍ଦିର– ପାର୍ଥିବ ଭୋଗର ପାହାଡ଼କୁ ଧୂଳିସାତ୍ କରି ଆକୁଳ ଭକ୍ତପ୍ରାଣ ପ୍ରଧାବିତ ହୁଏ ଭାବ ମହୋଦଧିରେ ଅବଗାହନ ପାଇଁ । ତେଣୁ ଯୋଗ ଓ ବିୟୋଗର ବାର୍ତ୍ତା ନେଇ ରଥଚକ ଗଡ଼ିଚାଲେ ବଡ଼ଦାଣ୍ଡ ମଝିରେ– ଶ୍ରୀମନ୍ଦିରରୁ ଗୁଣ୍ଡିଚା ମନ୍ଦିର– ଏହା ଯାତ୍ରାର ବାହ୍ୟ ସୀମିତ ଅଭିବ୍ୟକ୍ତି ହେଲେ ହେଁ ଏହା ପ୍ରତୀକାତ୍ମକ । ଜନ୍ମରୁ ଜନ୍ମୋତ୍ତର ଚେତନା ପଥର ଏହା ଏକ ସୂକ୍ଷ୍ମ ରୂପକଳ୍ପ ।

ରଥଯାତ୍ରାକୁ ଏହି ମର୍ମବାର୍ତ୍ତାକୁ ହୃଦୟଙ୍ଗମ କରି ଆମେ ଏଥର ଆସିବା ତିନୋଟି ରଥର ବୈଶିଷ୍ଟ୍ୟକୁ ।

**ବଳଦେବଙ୍କ ରଥ–** ତାଳଧ୍ୱଜ/ଲଙ୍ଗଳଧ୍ୱଜ/ହଳଧ୍ୱଜ
ରଥରେ ବ୍ୟବହୃତ କାଠସଂଖ୍ୟା– ୭୩୧(ମତାନ୍ତରେ ୭୬୩)
ଚକସଂଖ୍ୟା– ୧୪(ପ୍ରତ୍ୟେକ ଚକର ଉଚ୍ଚତା ୬ ଫୁଟ)
ଉଚ୍ଚତା– ୪୫ ଫୁଟ । ଆବରଣ– ରକ୍ତ ଓ ନୀଳବର୍ଣ୍ଣ
ଆୟୁଧ– ହଳ ଓ ମୂଷଳ
ଅଧୀଶ୍ୱର ଦେବତା– ଶ୍ରୀବଳଭଦ୍ରଙ୍କ ଚଳନ୍ତି ପ୍ରତିମା ରାମ ଓ କୃଷ୍ଣ
ସାରଥି– ମାତଳି । ରକ୍ଷକ– ବାସୁଦେବ ଓ ଭାସ୍କର
ଦଉଡ଼ିର ଦୈର୍ଘ୍ୟ– ୨୦୦ ଫୁଟ ଓ ନାମ ବାସୁକୀ
ଦେବୀ– ଜୟଦୁର୍ଗା ଓ ଭୈରବ– କ୍ଷେତ୍ରପାଳ

ଯୋଚିତ ୪ଟି ଅଶ୍ୱର ବର୍ଣ୍ଣ କଳା ଓ ନାଁ ହେଲା ସ୍ଥିରା, କୃତି, ସ୍ଥିତି ଓ ସିଦ୍ଧା ।




ପାର୍ଶ୍ୱଦେବତା ଭାବେ ରଥର ଦକ୍ଷିଣ ପାର୍ଶ୍ୱରେ ଗଣେଶ, କାର୍ତ୍ତିକେୟ, ସର୍ବମଙ୍ଗଳା, ପଶ୍ଚାତପାର୍ଶ୍ୱରେ ପ୍ରଳମ୍ବଘ୍ନ, ହଳାୟୁଧ ଓ ମୃତ୍ୟୁଞ୍ଜୟ, ବାମଭାଗରେ ନାଟାମ୍ବର, ମହେଶ୍ୱର ଓ ଶେଷଦେବ ଏବଂ ଦ୍ୱାରଦେଶରେ ଅବସ୍ଥାନ କରନ୍ତି ରୁଦ୍ର, ସାତ୍ୟକି ଓ ଅଷ୍ଟବସୁ।

**ସୁଭଦ୍ରାଙ୍କ ରଥ–** ଦେବଦଳନ / ଦର୍ପଦଳନ / ପଦ୍ମଧ୍ୱଜ / କମଳଧ୍ୱଜ

ଉଚ୍ଚତା– ୪୪ ଫୁଟ ୬ ଇଞ୍ଚ

କାଠସଂଖ୍ୟା– ୭୧୧(ମତାନ୍ତରେ ୫୯୩)

ଚକସଂଖ୍ୟା– ୧୨ (ଉଚ୍ଚତା ୬ ଫୁଟ)

ଆବରଣ– କୃଷ୍ଣ ଓ ଲୋହିତ। ସାରଥି – ଅର୍ଜୁନ

ଅଧୀଶ୍ୱରୀ– ବନଦୁର୍ଗା। ଅଧୀଶ୍ୱର ଦେବତା– ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନ।

ରକ୍ଷୟିତ୍ରୀ– ଉଗ୍ରଚଣ୍ଡୀ

ଅଶ୍ୱମାନେ ହେଲେ– ରୋଚିକା, ମୋଚିକା, ଜିତା, ଅପରାଜିତା ବା ମତାନ୍ତରେ ପ୍ରଜ୍ଞା, ଅନୁଜ୍ଞା, ଘୋର. ଅଘୋରା

ପାର୍ଶ୍ୱଦେବତା ଭାବରେ ରଥର ଦକ୍ଷିଣ ପାର୍ଶ୍ୱରେ ଚଣ୍ଡୀ, ଚାମୁଣ୍ଡା ଓ ଉଗ୍ରତାରା, ପଛପାଖରେ ବନଦୁର୍ଗା, ଶୂଳୀଦୁର୍ଗା ଓ ବାରାହୀ। ବାମପାଖରେ ଶ୍ୟାମାକାଳୀ, ବିମଳା ଓ ମଙ୍ଗଳା। ଦ୍ୱାରଦେଶରେ ଅବସ୍ଥାନ କରନ୍ତି ଶ୍ରୀଦେବୀ, ଭୂଦେବୀ ଓ ଅଷ୍ଟଭୈରବ।

**ଜଗନ୍ନାଥଙ୍କ ରଥ–** ନନ୍ଦିଘୋଷ / ଚକ୍ରଧ୍ୱଜ / ଗରୁଡ଼ଧ୍ୱଜ
ଉଚ୍ଚତା– ୪୫ ଫୁଟ ୬ ଇଞ୍ଚ
ବ୍ୟବହୃତ କାଠ– ୭୪୨ (ମତାନ୍ତରେ ୮୩୨)
ଚକସଂଖ୍ୟା– ୧୬ (ଉଚ୍ଚତା ୬ ଫୁଟ)
ରକ୍ଷକ– ଇନ୍ଦ୍ର। ଆୟୁଧ– ଶଙ୍ଖ ଓ ଚକ୍ର
ଆବରଣ– ପିତ ଓ ଲୋହିତ। ସାରଥି– ମାତଳି
ଭୈରବ– ଏକପାଦ (ମତାନ୍ତରେ ଘଣ୍ଟାକର୍ଣ୍ଣ) ଦେବୀ– ଯୋଗମାୟା
ଯୋଚିତ ଅଶ୍ୱର ବର୍ଣ୍ଣ ଧଳା– ଶଙ୍ଖ ବଳାହବ, ଶ୍ୱେତ, ହରିଦ୍ରାଖ, ବା ସୌବ୍ୟ, ସୁଗ୍ରୀବ, ମେଘପୁଷ୍ପ, କଳାହଳ
ଦଉଡ଼ି– ୨୦୦ ଫୁଟ ଓ ନାମ ଶଙ୍ଖଚୂଳ

ପାର୍ଶ୍ୱଦେବତା ଭାବରେ ଦକ୍ଷିଣରେ ବରାହ, ଗୋବର୍ଦ୍ଧନ– କୃଷ୍ଣ ଓ ଗୋପୀକୃଷ୍ଣ, ପଛପଟେ ରାମ ଓ ନାରାୟଣ, ବାମପଟେ ତ୍ରିବିକ୍ରମ, ହନୁମାନ ଓ ରୁଦ୍ର, ଦ୍ୱାରଦେଶ ଅଧିଷ୍ଠାନ କରନ୍ତି ଇନ୍ଦ୍ର, ବ୍ରହ୍ମା ଓ ସପ୍ତର୍ଷି।

ରଥ ଟଣା ହେବାବେଳେ ରଥ ଉପରେ ଥିବା ଘଣ୍ଟପାଟୁଆମାନେ ଆଳାପତାଳ, ଏକତାଳ, ଝାମ୍ପତାଳ, ଷୋହଳ କୋଠି, ଅଠର କୋଠି– ଏହିପରି ବିଭିନ୍ନ ତାଳରେ ଘଣ୍ଟ ବାଦନ କରିଥାନ୍ତି। ସର୍ବମୋଟ ତିନି ରଥରେ ଥାଆନ୍ତି ୪୨ଜଣ ଘଣ୍ଟ ପାଟୁଆ। ନନ୍ଦିଘୋଷ– ୧୬ / ତାଳଧ୍ୱଜ– ୧୪ / ଦେବଦଳନ– ୧୨।

ରଥଯାତ୍ରା ବେଳେ ତିନିପ୍ରଭୁ ମୁଣ୍ଡ ଉପରେ ଏକ ବିଶେଷ ପ୍ରକାର ମୁକୁଟ ଧାରଣ କରନ୍ତି, ଯାହାକୁ କୁହାଯାଏ ଟାହିଆ। ଏହାର ଅର୍ଥ ହେଲା ପ୍ରଭା। କାଠଛାଞ୍ଚରେ ବାଉଁଶକାଠି, ବେତ ମୁଣ୍ଡୁଳି, ସୁନେଲୀ ଓ ରୂପେଲି ସୂତା, ତୁଳସୀ, କଦଳୀ ପଟୁଆ, ବେତ ସୋଲ, ରଙ୍ଗୀନ ଜରି ଓ ସାଲୁକନାରେ ନିର୍ମିତ ଟାହିଆ ପ୍ରଭୁଙ୍କ ଶୋଭାବର୍ଦ୍ଧନରେ ସହାୟକ ହୁଏ। ବେତ ମୁଣ୍ଡୁଳି ଉପରେ ବାଉଁଶ କାଠିକୁ ରଙ୍ଗୀନ ସୂତାରେ ବାନ୍ଧି ମୟୂରପୁଚ୍ଛ ଆକୃତିରେ ଏହାକୁ ସାଲୁକନା, ସୋଲ ତିଆରି କଦମ୍ବଫୁଲ, ପାନପତ୍ର, ପଦ୍ମପାଖୁଡ଼ା ଓ ରଙ୍ଗୀନ ଜରିରେ କରାଯାଇଥିବା କାରୁକର୍ମ ଟାହିଆରେ ଲଗାଯାଏ।

ମହାପ୍ରଭୁଙ୍କର ଏକ ବିଶେଷ ପରିପ୍ରକାଶ ଘଟେ ରଥଯାତ୍ରାରେ। ନିଜର ପତିତପାବନ ନାମକୁ ସାର୍ଥକ କରିବା ପାଇଁ ବଡ଼ଦାଣ୍ଡକୁ ବିଜେ ହୁଅନ୍ତି ପ୍ରଭୁ। ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଉଦ୍ଧାର କରିବାକୁ ଏହାର ସମୟ କାଳ ହେଲା ଆଷାଢ଼ ଶୁକ୍ଳ ଦ୍ୱିତୀୟା ଯେତେବେଳେ କର୍କଟକ୍ରାନ୍ତି ଅତିକ୍ରମ କରିବାପରେ ସୂର୍ଯ୍ୟଙ୍କର ଦକ୍ଷିଣାୟନ ହୁଏ । ଏହି ରଥଯାତ୍ରା ବ୍ୟତୀତ ପ୍ରଭୁଙ୍କର ମଧ ରହିଛି ଅନ୍ୟ ଦୁଇପ୍ରକାର ରଥଯାତ୍ରା।





**ଶାରଦୀୟ ରଥଯାତ୍ରା, ବସନ୍ତ ଗୁଣ୍ଡିଚା ଯାତ୍ରା**

ଆଶ୍ୱିନ ମାସରେ ଅର୍ଥାତ୍ ଶରତ ଋତୁରେ ଅନୁଷ୍ଠିତ ମହାପ୍ରଭୁଙ୍କ ଯାତ୍ରାକୁ କୁହାଯାଏ ଶାରଦୀୟ ରଥଯାତ୍ରା ବା ଶାକ୍ତ ଗୁଣ୍ଡିଚା ଯାତ୍ରା ବା ଦୁର୍ଗାମାଧବ ଯାତ୍ରା । ଆହୁରି ମଧ୍ୟ ଶ୍ରୀମନ୍ଦିର ଭିତରେ ଥିବା ବିମଳାଦେବୀଙ୍କ ମନ୍ଦିରରେ ଆଶ୍ୱିନ କୃଷ୍ଣ ସପ୍ତମୀଠାରୁ ଅନୁଷ୍ଠିତ ହୁଏ କୁମ୍ଭାଭିଷେକ । ଷୋଡ଼ଶ ପୂଜାର ନବମ ଦିନରୁ ନଅଦିନ ପର୍ଯ୍ୟନ୍ତ ଅର୍ଥାତ୍ ଦଶହରା ପର୍ଯ୍ୟନ୍ତ ଏହା ଅନୁଷ୍ଠିତ ହୋଇଥାଏ ।

ରତ୍ନବେଦୀରେ ଜଗନ୍ନାଥଙ୍କ ବାମପାର୍ଶ୍ୱରେ ବିରାଜମାନ କରନ୍ତି ଦେଢ଼ଫୁଟ ଉଚ୍ଚତା ବିଶିଷ୍ଟ ମାଧବମୂର୍ତ୍ତି, ଯାହାଙ୍କୁ କୁହାଯାଏ ଶ୍ରୀବାଳପୁରୁଷୋତ୍ତମ । କୁମ୍ଭାଭିଷେକ ଦିନ ଆଜ୍ଞାମାଳ ପରେ ଭଣ୍ଡାରଘରୁ ଦୁର୍ଗାଦେବୀ ସୋମନାଥ ମଣ୍ଡପରେ ବିଜେ ହୁଅନ୍ତି, ଯାହାକୁ କୁହାଯାଏ ଜଳଲାଗି । ଶୀତଳ ମଣୋହି ପରେ ହୁଏ ପଞ୍ଚୋପଚାର । ଭଣ୍ଡାରଘର ଦୁଆରରେ ଦୁର୍ଗାଙ୍କ ସହ ଶ୍ରୀବାଳପୁରୁଷୋତ୍ତମ ଭଦ୍ରାସନରେ ଉପବେଶନ କରନ୍ତି । ଏହାପରେ ବିମଳାଙ୍କ ସ୍ନାନ ମଣୋହି ପରେ ଦୁର୍ଗା ଓ ମାଧବ ବିମଳାଙ୍କ ଖଟ ଉପରେ ବିରାଜ କରନ୍ତି । ସେଠାରେ ତିନି ଧୂପ ପରେ ଚନ୍ଦନଲାଗି ହୋଇ ଫେରିଆସନ୍ତି ଭଣ୍ଡାରକୁ । ଏହିପରି ଆଠଦିନ ପରେ ନବମ ଦିନଠାରୁ ଦୁର୍ଗା ଓ ମାଧବ ରଥରେ ଏକତ୍ର ବସି ଶ୍ରୀମନ୍ଦିର ବାହାରେ ଦୋଳମଣ୍ଡପ ସାହି ଦେଇ ଶ୍ରୀନାରାୟଣୀ ମନ୍ଦିରକୁ ବିଜେ ହୁଅନ୍ତି, ଯେଉଁଠି କର୍ପୂର ଜଳଲାଗି ଓ ବନ୍ଦାପନା ହୁଏ । ଏହା ଚାଲେ ଦଶହରା ପର୍ଯ୍ୟନ୍ତ । ଶେଷଦିନ ନିକଟସ୍ଥ ଜଗନ୍ନାଥବଲ୍ଲଭ ମଠରେ ଦଶହରାପଦା ମହାଖଳାକୁ ବୀରବେଶରେ ଯାଇ ଭୋଗ ସେବନ ପରେ ପ୍ରତ୍ୟାବର୍ତ୍ତନ କରନ୍ତି । ଏହା ହିଁ ପ୍ରଭୁଙ୍କର ଶାରଦୀୟ ରଥଯାତ୍ରା ।

ବସନ୍ତ ଋତୁରେ ପାଳିତ ହୁଏ ପୁଷ୍ପ ମହୋତ୍ସବ । ଫାଲ୍‌ଗୁନ ମାସରୁ ସୂର୍ଯ୍ୟ ଉତ୍ତରାୟଣ ହୁଅନ୍ତି । ଏହି ସମୟରେ ମହାପ୍ରଭୁ ଶ୍ରୀରାଧାଗୋବିନ୍ଦଙ୍କୁ ଦୋଳା ବା ବିମାନ ବା ରଥରେ ନିଆଯାଏ, ଯାହା ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ପାଳନ କରାଯାଏ । ଏହି ଦୋଳୋତ୍ସବକୁ କୁହାଯାଏ ପୁଷ୍ପ ରଥୋତ୍ସବ ।

ମାଘ ଶୁକ୍ଳ ସପ୍ତମୀ ତିଥିରେ ମାଘ ରଥୋତ୍ସବକୁ କୁହାଯାଏ ରଥାଖ୍ୟ ସପ୍ତମୀ ରଥୋତ୍ସବ, ଯାହା ସମାହିତ ହେଉଥିଲା କୋଣାର୍କର ଚନ୍ଦ୍ରଭାଗା ନିକଟରେ । ରଥାକୃତିରେ ନିର୍ମିତ ଅଧୁନା କୋଣାର୍କର ଦୃଶ୍ୟମାନ ଭଗ୍ନାବଶେଷ ଏହାର ପ୍ରତୀକ । ନରସିଂହଦେବଙ୍କ ସମୟରେ ଏହା ଅର୍କକ୍ଷେତ୍ରରେ ଅନୁଷ୍ଠିତ ହେଉଥିବାରୁ କଥିତ ଅଛି ଯେ ମହାପ୍ରଭୁ ନରପତିଙ୍କୁ ଶ୍ରୀକ୍ଷେତ୍ରରେ ଅନ୍ୟ ଏକ ରଥଯାତ୍ରା ଆୟୋଜନର ଆଦେଶ ଦେଇଥିଲେ । ତେଣୁ ଜଗନ୍ନାଥଙ୍କୁ ତୁଷ୍ଟ କରିବା ପାଇଁ ମାଘ ଶୁକ୍ଳ ଅଷ୍ଟମୀରେ ଏହା ଅନୁଷ୍ଠିତ ହେଉଥିଲା ଯଦିଓ ବର୍ତ୍ତମାନ ଏହାର ପ୍ରଚଳନ ନାହିଁ । ତେବେ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଏହାର ଉଲ୍ଲେଖ ଦେଖିବାକୁ ମିଳେ । କବି ଦୀନକୃଷ୍ଣ ଦାସଙ୍କ ରସବିନୋଦ କାବ୍ୟରେ ଏହି ବସନ୍ତ ଗୁଣ୍ଡିଚା ଯାତ କଥାର ବର୍ଣ୍ଣନା ରହିଛି ।

ମୀନ ମାସରେ ଯାତ୍ରାପୁଣ
ବସନ୍ତ ଗୁଣ୍ଡିଚା ପ୍ରମାଣ ।

ସେ ଖ୍ୟାତ କଲେ ଦେହ ବହି
ପୂର୍ବେ ତ ନ ଜାଣନ୍ତି କେହି ।

ସାମଗ୍ରିକ ଭାବରେ ଦେଖିବାକୁ ଗଲେ ବିଶ୍ୱପତିଙ୍କର ସାର୍ବଜନୀନତା ପରି ରଥଯାତ୍ରା ଏକ ସାର୍ବଜନୀନ ପର୍ବ । ତେବେ ଓଡ଼ିଶାରେ ଏହାର ପ୍ରଭାବ ସୁଦୂରପ୍ରସାରୀ କାରଣ ଜଗନ୍ନାଥ ଓଡ଼ିଆଙ୍କ ପାଇଁ କେବଳ ଦେବତା ବା ଠାକୁର ନୁହଁନ୍ତି, ଦେହର ନିଃଶ୍ୱାସ ପରି, ଚକ୍ଷୁର ଦୃଷ୍ଟି ପରି, କର୍ଣ୍ଣର ଶ୍ରବଣ ପରି ସିଏ ଆମ ଜୀବନ ଧାରଣ ଓ ଜୀବନ ଧାରାର ଏକ ଅବିଚ୍ଛେଦ୍ୟ ଅଙ୍ଗ । ବନ୍ଦୀର ଆତ୍ମକଥାରେ ଗୋପବନ୍ଧୁଙ୍କ ଉକ୍ତିକୁ ଏହି ପ୍ରସଙ୍ଗରେ ଉଲ୍ଲେଖ କରାଯାଇପାରେ ।

ଭାରତର ପ୍ରତି ବୃକ୍ଷ କଳ୍ପବଟ
ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।
ସାମ୍ୟ ସ୍ୱାଧୀନତା ପ୍ରେମ ସମୁଚ୍ଚୟ
ନୀଳାଚଳ ଶୁଦ୍ଧ ଭାରତ ହୃଦୟ ।

X X X

ନ ଅଟକେ କର୍ଣ୍ଣ ନେତାର ଅଭାବେ
ଧର୍ମ ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।

ଏହା ହିଁ ଉତ୍କଳର ଶ୍ରେଷ୍ଠ ପରିଚୟ। ଅସ୍ତିତ୍ୱ-ଅସ୍ମିତା-ସ୍ୱାଭିମାନର ପ୍ରାଣକେନ୍ଦ୍ର ଶ୍ରେଷ୍ଠ ନାୟକ। ସର୍ବଶ୍ରେଷ୍ଠ ନେତା ଥାଉ ଥାଉ ଉତ୍କଳର ଅବା କି ପ୍ରୟୋଜନ ! ପୁଣି ଜାତୀୟ ପରିଧି ଭିତରେ ପ୍ରାଦେଶିକ ଭାବନା, ଉତ୍କଳୀୟ ପରିଭାଷାରୁ ମହାଭାରତୀୟ ଅଭିବ୍ୟକ୍ତି- ଶ୍ରୀଜଗନ୍ନାଥ ଏକ ସୁନ୍ଦର ସମନ୍ୱୟ ଯାହା ଭିତରୁ ଝରୁଛି ଆଧ୍ୟାତ୍ମିକ ରସସମ୍ଭାର।

ତେଣୁ ପ୍ରାଣର ଦେବତାଙ୍କ ଶ୍ରେଷ୍ଠପର୍ବ ରଥଯାତ୍ରା କଥା ନକହିବା ଭଲ। ଜାତୀୟ ଦେବତାଙ୍କର ଏହି ଜାତୀୟପର୍ବର ପ୍ରତିଫଳନ ଦେଖିବାକୁ ମିଳେ ରାଜ୍ୟର କୋଣ ଅନୁକୋଣରେ। ଲିଙ୍ଗରାଜଙ୍କ ରୁକୁଣା ରଥ, ବରଗଡ଼ ଅଞ୍ଚଳରେ ଅନୁଷ୍ଠିତ ୯ ଦିନର ରଥଯାତ୍ରା, ବିରଜାଙ୍କ ରଥଯାତ୍ରା, ବାରିପଦାରେ ମହିଳା ଟାଣୁଥିବା ସୁଭଦ୍ରାଙ୍କ ରଥ ଆମ ଲୋକସଂସ୍କୃତିର ପରିଚାୟକ। ଏଠାରେ ଆଉ ଗୋଟିଏ କଥା ଅବଶ୍ୟ ହିଁ ଉଲ୍ଲେଖନୀୟ। ତାହା ହେଲା ଜଗନ୍ନାଥଙ୍କର ପତିତପାବନ ଓ ଦଧିବାମନ ରୂପ ଯେଉଁ ରୂପରେ ସେ ଓଡ଼ିଶାର ବହୁ ସ୍ଥାନରେ ଆରାଧିତ ହୁଅନ୍ତି।

ବର୍ତ୍ତମାନ ଦେଖିବା ପତିତପାବନ ତତ୍ତ୍ୱର ବ୍ୟାଖ୍ୟା। ଜଗନ୍ନାଥଙ୍କ ଶାବର ସଂସ୍କୃତିରୁ ଉଦ୍ଭବ କଥାର ବିଶଦ ବ୍ୟାଖ୍ୟା ଦେଖିବାକୁ ମିଳେ ସ୍କନ୍ଦପୁରାଣର ଉତ୍କଳ ଖଣ୍ଡ ଓ ବୈଷ୍ଣବ ଖଣ୍ଡରେ। ପତିତଙ୍କୁ ଉଦ୍ଧାର କରୁଥିବାରୁ ସେ ପତିତପାବନ। ଅବଶ୍ୟ ପ୍ରଭୁଙ୍କର ପତିତପାବନ ରୂପକୁ ନେଇ ପଣ୍ଡିତଙ୍କ ମଧ୍ୟରେ ରହିଛି ଯଥେଷ୍ଟ ବିତର୍କ। ମନ୍ଦିରର ସିଂହଦ୍ୱାର ପାଖରେ ରହିଛି ପତିତପାବନଙ୍କ ମୂର୍ତ୍ତି। ଅନେକଙ୍କ ମତରେ ରାଜା ରାମଚନ୍ଦ୍ରଦେବ ଇସଲାମ୍ ଧର୍ମକୁ ଧର୍ମାନ୍ତରିତ ହେବାରୁ ତାଙ୍କ ଦର୍ଶନ ଦେବାପାଇଁ ପ୍ରଭୁ ମନ୍ଦିର ଦ୍ୱାରରେ ଏହି ମୂର୍ତ୍ତି ଧାରଣ କରି ତାଙ୍କୁ ଦର୍ଶନ ଦେଉଥିଲେ, ଯାହା ଅବଶ୍ୟ ରତ୍ନବେଦୀ ଜଗନ୍ନାଥଙ୍କ ସହିତ ସମାନ ନୁହଁ। ସାରଳା ଦାସଙ୍କ ଓଡ଼ିଆ ମହାଭାରତରେ ରହିଛି ଜଗନ୍ନାଥଙ୍କ ପତିତପାବନ କଥା। କପିଳ ସଂହିତା ଓ ନୀଳାଦ୍ରି ମହୋଦୟରେ ବହୁଥର ଜଗନ୍ନାଥଙ୍କୁ ପରମ-ପାବନ ଭାବରେ ଉଲ୍ଲେଖ କରାଯାଇଛି। କେତେକ କହନ୍ତି ଯେ ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଶା ଥିଲା ପତିତ ଦଳିତ ଅବହେଳିତ ଅଣଆର୍ଯ୍ୟ ଅଧ୍ୟୁଷିତ। ବୋଧହୁଏ ପରବର୍ତ୍ତୀ ସମୟରେ ଆର୍ଯ୍ୟମାନେ ଏହି ଦଳିତ ଦେବତାଙ୍କୁ ଆର୍ଯ୍ୟସଂସ୍କୃତିକୁ ଆଣି ରୂପାନ୍ତରିତ କରିଥିଲେ ପୁରୁଷୋତ୍ତମ ଜଗନ୍ନାଥରେ। ପରମ-ପାବନ ରୂପାନ୍ତରିତ ହେଲେ ପତିତପାବନଙ୍କୁ।

ସେହିପରି ଜଗନ୍ନାଥଙ୍କ ଦଧିବାମନ ରୂପକୁ ନେଇ ମଧ୍ୟ ରହିଛି ଅନେକ ବିଶ୍ଳେଷଣ। ଅନେକେ ମତ ଦିଅନ୍ତି ଯେ ବାଲ୍ୟକାଳରେ ମହାପ୍ରଭୁ ଦଧିଲହୁଣି ଚୋରେଇ ଖାଉଥିଲେ। ପରବର୍ତ୍ତୀ ସମୟରେ କୃଷ୍ଣ ବାମନ ରୂପ ଧାରଣ କରି ବଳିବଧ କରିବାକୁ ଗଲାବେଳେ ଭଗିନୀ ସୁଭଦ୍ରା ତାଙ୍କୁ ଦଧି ଲଗାଇ ଯାତ୍ରାର ଶୁଭ କାମନା କରିଥିଲେ। ତେଣୁ ଓଡ଼ିଶାର ଅନେକ ସ୍ଥାନରେ ଏକକ ଜଗନ୍ନାଥ ମୂର୍ତ୍ତିଙ୍କୁ ପତିତପାବନ ବା ଦଧିବାମନ ଅବତାରରେ ପୂଜା କରିବାର ପରମ୍ପରା ରହିଛି। କିଛି ମନ୍ଦିରରେ ବଳଭଦ୍ରଙ୍କ ପ୍ରାଧାନ୍ୟ ରହୁଥିବାରୁ ସେହି ଜଗନ୍ନାଥ ମନ୍ଦିର ବଳଦେବଜୀଉ ମନ୍ଦିର ନାମରେ ଖ୍ୟାତ। ଏକ ପରିସଂଖ୍ୟାନ ଅନୁସାରେ ଓଡ଼ିଶାରେ ସର୍ବମୋଟ ରହିଛି ୧୬୨୬ଟି ଜଗନ୍ନାଥଙ୍କ ମନ୍ଦିର, ଯାହା ରାଜ୍ୟର ୩୦ଟି ଜିଲ୍ଲାକୁ ଅନ୍ତର୍ଭୁକ୍ତ କରେ।

(Mahaprabhu Shree Jagannath: The Lord of Universe by Prof. S.N. Dash. Vol.I. Sri Jagannath Research Institute, DLA/43, V.S.S. Nagar, BBSR- 751007, 2008)

ଜଗନ୍ନାଥ ମନ୍ଦିର- ୧୦୭୬
ପତିତ ପାବନ- ୭୨
ଦଧି ବାମନ- ୪୭୮/୧୬୨୬

ଓଡ଼ିଶାରେ ରଥଯାତ୍ରାର ବିବରଣୀ ଲେଖିଲା ବେଳକୁ ମନ୍ଦିର ସଂଖ୍ୟା ଜାଣିବା ଏକାନ୍ତ ବିଧେୟ। ତେବେ ଏଠାରେ ଜିଲ୍ଲା ଅନୁସାରେ ସବ୍‌ଡିଭିଜନ୍ ଅନ୍ତର୍ଗତ ମନ୍ଦିର ସବୁର ଗଣନା ହୋଇଛି। ପାରିବାରିକ ଗୃହାଧିଷ୍ଠିତ ଜଗନ୍ନାଥଙ୍କୁ ଗଣନା ମଧ୍ୟକୁ ନିଆଯାଇନାହିଁ। ପୁନଶ୍ଚ ୨୦୦୮ରୁ ମଧ୍ୟ ଅନେକ ନୂଆ ମନ୍ଦିର ଗଢ଼ିଉଠିଥିବ, ଯାହା ଏଥିରେ ନାହିଁ। ତେବେ ସାମଗ୍ରିକ ଆକଳନକୁ ଭିତ୍ତିକରି ଆମେ ଜିଲ୍ଲା ଅନୁସାରେ ସେଠାରେ ଥିବା ମନ୍ଦିରରେ ଅନୁଷ୍ଠିତ ରଥଯାତ୍ରାର ସଂଖ୍ୟା ବିବରଣୀ ପାଇପାରିବା।

**ଅନୁଗୁଳ : ଜଗନ୍ନାଥ ମନ୍ଦିର**

ଶୈଳ ଶ୍ରୀକ୍ଷେତ୍ର, ଆଠମଲ୍ଲିକ, କଇନ୍ତରାଗଡ଼, ନାଲ୍‌କୋ ନଗର, ପୁରୁଣାଗଡ଼, ତାଳଚେର(ରାଜାଙ୍କ ନିର୍ମିତ)




ତାଳଚେର ଟାଉନ୍, ବନ୍ତ୍ରକୋଟ, ବାଗାଡ଼ିଆ, ସନ୍ତରାପୁର, ପୁରୁଣାନଗର, ଖେଣ୍ଡାପଡ଼ା, ଘସରା, ତପାଢୋଲ, ଚାଙ୍ଗୁଡ଼ିଆ।

**ବଳଦେବଜୀଉ ମନ୍ଦିର** : ପାଲଲହଡ଼ା, ଖମାର, ତଳମୂଳ, ହରିଶ୍ଚନ୍ଦ୍ର ବସ୍ତି, ତମ୍ବର, ନିଜିଗଡ଼

**ପତିତପାବନ ମନ୍ଦିର** : ଓରକୂଳ

**ବାଲେଶ୍ୱର : ଦଧିବାମନ ମନ୍ଦିର**

ଅଯୋଧ୍ୟା, ଗରଡ଼ାଡିହ, ଲିଙ୍ଗାପଡ଼ା, କେଦାରପୁର, ନୟାଖଣ୍ଡି, କସପା, ସିଙ୍ଗଲା, ବାଲିଆପଡ଼ା, ରାଜନୀଳଗିରି, ସାହୁଜୀ ପାଟଣା

**ବଳଦେବଜୀଉ ମନ୍ଦିର:** ବଡ଼ଗାଁ, ଗୁଡ଼, ମୁବାରକପୁର, ଛାୟାଲିମା, ନୂଆପାଡ଼ୀ, କଇଥଗଡ଼ିଆ, ହରିପୁର, ମୁକୁନ୍ଦପୁର, ନିଜଗଡ଼(ରାଜନୀଳଗିରି) ।

**ଜଗନ୍ନାଥ ମନ୍ଦିର:** ବାଲେଶ୍ୱର ଟାଉନ୍, ମୋତିଗଞ୍ଜ, ବାଲିଆପାଳ, ଗୋପୀନାଥପୁର, ବାଲିଆ, ରସାଲପୁର, ପଥରପେଣ୍ଠ, ସବିରା, କମର୍ଦ୍ଦା, ବାଙ୍କେଶ୍ୱର, ଶାସନଗାଁ, ଅଗରଦା, ଖୁଲ୍ଲଡା, ସିରାପୁର, ଓଲମରା, କରଣପୋଖରୀ, ବିଚିତ୍ରପୁର, ରାଇବଣିଆ, କାଳିଗାଁ, ମଣ୍ଡାଗାଁ, ଥଳସଡ଼ା, ପତ୍ରିପାଲ, ମାଟିଗଞ୍ଜ, ସୋଏଲପୁର, ବାଲିଘାଟ, ଗୁଡ଼ଗାଁ, ଜଳେଶ୍ୱର, ମଙ୍ଗଳପୁର, ରେମୁଣା, ସୋର, ନରସିଂହପୁର, ନିଜିଗଡ଼, ବାଲଗୋପାଲପୁର, ନଳପାଟଣା।

**ବରଗଡ : ଦଧିବାମନ ମନ୍ଦିର**

କୁଲୁଣ୍ଡା, ବୀରାମଳ, ପାପଙ୍ଗା, ଭଟଲି, ଅଡ଼ଙ୍ଗ, କନକହୀରା, ଦେଶକୁମ୍ଭାରୀ, ସୁଲୁଲିଆ, ସତଲମା, ଡେକୁଲବା ଗୁଡ଼ଭଗା, ଚକୁଳି, ଲରମ୍ଭା, ଖୁଣ୍ଟାପାଲି, ଖରମୁଣ୍ଡା, କୁମେଳସିଂହା, ପାଟକୁଲୁଣ୍ଡା, ବ୍ରାହ୍ମଣଟୁକୁରା, ଭେଡେନ୍, ବରଗଡ଼ ତହସିଲ, ଭେନୁରୀ, ସାରସମାଳ, ଜାମୁନା, ସରଜୁବାହାଲ, ବର୍କେଲ, ରାଜବୋରାସମ୍ବର, ଦହିତୋ, ତଳପାଲି, ନଓ୍ୱାପାଲି, ତେଲପୁଖପାନି, ଜୁମୁତ ବାହାଲ, ଜରସିଂହା, ବଲଣ୍ଡା, ଭୈରପୁର, ବୁଢ଼ାପାଲି, ଟୁଙ୍ଗୀବନ୍ଧାଲି, ସିରିଡିଡ଼ା, ଛୁରୀପାଲି, ଚମ୍ପାଝୋରି, ପଦମପୁର, ଟାଙ୍ଗରାପାଲି, ବାଙ୍ଗେମୁଣ୍ଡା।

**ଜଗନ୍ନାଥ ମନ୍ଦିର**

ଆମ୍ଭଭଣା, ଅତାବିରା, ବରପାଲି, ବିଜେପୁର, ବୋରାସମ୍ବର, ବର୍କେଲ, ଦୀପ୍ତିପୁର, ଗଇସିଲଟ, ଗଣିଆପଲୀ, କାମଗାଁ, କୁମ୍ଭାରୀ, ଲରମ୍ଭା, ମେଲଛାମୁଣ୍ଡା, ପଦମପୁର, ସୋହେଲା, ଗୋଦାଭଗା, ମୁଗା, ତଳସିରିଗୁଡ଼ା, ତମ୍ବରାସରା, କଣ୍ଟାପାଲି, ଖେଆଁ, କରବାର, କୁମ୍ଭାରୀ, ବେସାମ୍, ଆମ୍ଭଭରା, ବରଜିପାଲି, ତୋରା, ଡାଲମ୍ପୁର, କୋଡ଼ବାହାଲ, ଉଦୟପୁର, ରାଜାପୁର, ସାର୍ମା, ବର୍ଦ୍ଧଲ, ବିଶିପାଲି, ବରପାଲି, ଦେଣ୍ଡେରପାଲି, ସତ୍‌ଲମା, କଳାପାଲି, ଅଡ଼ଗାଁ, ପାଲଣ୍ଡା, କୁସୁମଲ, ଶିରଦା, କଳଟଡ଼ୁମୁରା, କୁଳିତୁତୁକୁରା, କଳାମାଟି, ଖଣ୍ଡଳା, ବ୍ରହ୍ମକେଲା, ରମେଲା, ଡରମ୍ଭା, ତୁଲାଣ୍ଡି, ଖଜୁରୀଟିକିରା, ତଳିପଡ଼ା, କୁଟାଟୁକୁରା, ଜମଗଡ, କୋଟଣା, ଲକ୍ଷ୍ମଣା, ଭୁନରୀ, ଜାମୁଡ଼ା, ମହୁଲପାଲି, ସାରଗିବାହାଲ, ଖଇରାପାଲି, ଦାଙ୍ଗଛଞ୍ଚା, ପତ୍ରପାଲି, ବର୍ଦ୍ଧାର, ବରିକୁପାରୀ, ଜାମତପାଲି, ଐନାଳା ବାହାଲ, ଗୋକେନମୁଣ୍ଡା, ଜଗାଇପଟା, ଲମୁଣ୍ଡା, ସନିମଲ୍, ବଡ଼ବ୍ରାହ୍ମଣୀ, କୁରୁକୁଟା, ଯୋଗୀପାଲି, ଝରା, କଣ୍ଡକୀପାଲି, ବାଉନସେନାପାଲି, ପାଣିମୋରା, ଅଇନାବାହାଲ, ରାଜବର୍ଷଣପୁର, ଗୁଳ, ପତ୍ରପାଲି, ପଦମପୁର ସିଧିରା, ଖରମୁଣ୍ଡା।

**ବଳଦେବଜୀଉ ମନ୍ଦିର :** ରେମେଣ୍ଡା

**ଭଦ୍ରକ : ଜଗନ୍ନାଥ ମନ୍ଦିର**

ଆଗରପଡ଼ା, ବିଜିପୁର, ଧାମନଗର, ଡିହଭଞ୍ଜସାହି, କାଉପୁର, କୁପାରୀ, ଭରତ, ତ୍ରିଲୋଚନପୁର, ବନ୍ଧାଟିଆ, ସିଳାଣ୍ଡି, ନୀଳକ, ନଦୀଗାଁ, ଉତ୍ତରବାଡ଼, ଜଗନ୍ନାଥପୁର, ଇଶାନପୁର, ମାଟିପଲା, ଗବସାହି, ପୁରୁଣାବଜାର (ସଦାବ୍ରତ ମଠ), ଭଦ୍ରକାଳୀ, ନୟନଦା, ଗଣ୍ଡପଡ଼ା, ନୟାବଜାର, ଅପର୍ତ୍ତିବିନ୍ଧା, ସାଳନ୍ଦୀ ବାଇପାସ, ସନ୍ଥିଆ, ଶଙ୍କରପୁର, ଉତ୍ତରବାହିନୀ, ବରାଳ ପୋଖରୀ, ଧନାଶୁଣି।

**ବଳଦେବଜୀଉ ମନ୍ଦିର**

ଚାନ୍ଦବାଲି, ରଣଜିତ୍(ଆଖୁଆପଦା), କେଶରପୁର, ରଣଜିତ୍(ମୁରୀ ରୋଡ଼), ପଣସପଦା, ଘଟପୁର, ମାଳତୀରା।




**ଦଧିବାମନ ମନ୍ଦିର**

ମେଳିମେଘା, ଓଲଙ୍ଗ, ଶିରାପୁର, ତଳପଦା, କଟସାହି, କଳିପଡ଼ା, ଇରମ, ଗୁଆମାଳ, ଗୋବିନ୍ଦପୁର, ଆଲାଲପୁର ।

**ପତିତପାବନ ମନ୍ଦିର:** ବାଙ୍କାବଜାର

**ବଲାଙ୍ଗୀର: ଜଗନ୍ନାଥ ମନ୍ଦିର**

ଅଗଲାପୁରା, ଆଟଗାଁ, ବଲାଙ୍ଗୀର, ଧଣ୍ଡମୁଣ୍ଡା, ଧରାପଦର, ହରିଶଙ୍କର, ଲୋଇସିଙ୍ଗା, ପାଟଣାଗଡ଼, ସଇଁତଲା, ସିନ୍ଧେକେଲା, ଟିଟିଲାଗଡ଼, ତୁରେକେଲା, ତୁଷାରଗଡ଼, ବିଲେଇସରଡ଼ା, ଗଇଁତଲା, ଭାନପୁର, କୁଟେସେଙ୍ଗା, ପଇଁତଲା, ମାହିମୁଣ୍ଡା, ଆଗଲପୁର, ନୂଆଗାଁ, ଫୁସୁଡ଼ା, ବଟିଆଭଟ, ଖରିଆପାଲି, ମୁରସୁଣ୍ଡ, ଶୈଳଶ୍ରୀ ରାଜପ୍ରାସାଦ, ଜଗନ୍ନାଥପୁର (ବଲାଙ୍ଗୀର ଟାଉନ), ଦେଉଳାଗାଁ, ଜଟିଆବାହାଲ, ଧଣ୍ଡମୁଣ୍ଡା, ମଣ୍ଡଳ, ଭଇଁସା, ଦାଣ୍ଡେରା, ଧରପାଗଡ଼ା, କୁସ୍‌କେଲା, କୁଟାସିଂହା, ଖେଲାନ, ଲେବେଡା, ସିନ୍ଧେଇକେଲା, ବେଲଗାଁ ।

**ଦଧିବାମନ ମନ୍ଦିର**

ବଙ୍ଗମୁଣ୍ଡା, ମୁରିବାହାଲ, ତରଭା, ଶାଳଭଡା, ସୌନ୍ତପୁର, ରୋଥେସ୍, ପୁଇଁତଳା, ବୁଢ଼ୀସିନ୍ଧୋଲ, ତେନ୍ତଲାକୁନ୍ତୀ, ସିରାଳେ, ଦେଶିଲା, ଟିଟିଲାଗଡ଼, ପାଟପଡ଼ା, ଛୁଦ୍ରୁତୋରା, କୁରୁସୁଦ, କୁସାଙ୍ଗ, ଛେବରାପାଲି, ସିନ୍ଧେଇକେଲା, ଡେଙ୍ଗ, ବାଗବାହଲ ।

**ବଳଦେବଜୀଉ ମନ୍ଦିର**

ସାଲେପାଲି, ବ୍ରହ୍ମପୁରା, ଶିବତଳା, ପୀରପଡ଼ା, ପାଟଣାଗଡ଼, ଚନ୍ଦନହାତୀ, ବାଥରଲା ।

**ବୌଦ: ଜଗନ୍ନାଥ ମନ୍ଦିର**

ବୌଦ, ଗନ୍ଧରାଡି(ନୀଳମାଧବ ରୂପ), ବନ୍ଧଗଡ଼, ହରଭଙ୍ଗା, ବୋହିରା, ଜଗତି, ରାମଗଡ଼, ଗମ୍ଭାରୀଗୋଡ଼ା, କୁତୁଲି, ବୌଦଟାଉନ, ଜି.ଉଦୟଗିରି, ବାଉଁଶୁଣୀ, କଣ୍ଟାମାଳ, ବୌଦ ରାଜବାଟି, ପୋଡ଼ାପଡ଼ା, ଅଢେଣୀଗଡ଼, ସରସରା, ବଳିସିଙ୍ଗା, ଖୁଣ୍ଟାବନ୍ଧ, ନାରାୟଣ ନଗର, ଧୁଣ୍ଡୁରବାହାଲ, ଡାହିଆ, ବାଘପାଲି, ତିଳେଶ୍ୱର, ଖଜୁରିଆ, କମିରା, ଫାଉବାଳି, ମଧୁରା, ଆମ୍ବଗାହାଣ, ଗୁଣ୍ଟୁପାଲି, ସହଜପାଲ, ଜାପଙ୍ଗ, ପୁରୁଣା କଟକ, ବୀରନରସିଂହପୁର ।

**ଦଧିବାମନ ମନ୍ଦିର**

ମନମୁଣ୍ଡା, ଆମ୍ବଗାହାଣ, ବାଉଁଶୁଣୀ, ପଳାଶବଟ, କଣ୍ଟାମାଳ, ରୁଣ୍ଡିମାହାଲ, ଘଣ୍ଟପଡା, ଆମ୍ବଗାଁ ।

**ପତିତପାବନମନ୍ଦିର:** ପଦ୍ମନାଭପୁର

**ଢେଙ୍କାନାଳ: ଜଗନ୍ନାଥ ମନ୍ଦିର**

ଢେଙ୍କାନାଳ ଟାଉନ, ହିନ୍ଦୋଳ, କରଣ୍ଡା, ବଙ୍ଗା, ଶତୃଘ୍ନପାଟଣା (ଜଗମୋହନ ରୂପରେ)

**ଦଧିବାମନ ମନ୍ଦିର**

ଭୁବନ, ଯୋରନ୍ଦା, କାମାକ୍ଷାନଗର, ରାସୋଲ, ତଳବର କୋଫା, ନୀଳକାନ୍ତପୁର, ତଳମୂଳପାଟଣା, କୋବରା, କୁସପାଙ୍ଗୀ, ଉଲିମାଳ, ଭୁନିପୁର, ଢେଙ୍କାନାଳ, ମୀନାବଜାର, ନୀଳକଣ୍ଠପୁର, ମାରଣ୍ଡା, କନ୍ଦର, ଖୁଣ୍ଟାଝରି, ମଙ୍ଗଳଡିହ, ତଳବାଙ୍କୋଟ, ବଡ଼ସିଙ୍ଗା ଗୌଣ୍ଡିଆ, ଏପିଟଟ, ବାଣସିଂହା, ବହଳିପାଲ, ଡାଲୁଅ, ଅଳତୁମା, କନ୍ଧାରୀ, ଗଡ଼ଗଙ୍ଗପୁର, ମୁକ୍ତାଦେଇପୁର ।

**ବଳଦେବଜୀଉ:** ଲହଡ଼ା, ଢେଙ୍କାନାଳ

**ପତିତପାବନ**

ପୁରୁଣାକୋଟ, ବୈତାଳପୁର, ପରଜଙ୍ଗ, ଗଡ଼ପରଜଙ୍ଗ

**ଗଜପତି: ଜଗନ୍ନାଥ ମନ୍ଦିର**

ଗୁମାଗଡ଼, ଗୁରାଣ୍ଡି, କାଶିନଗର, ମହେନ୍ଦ୍ରଗିରି, ପାରଳାଖେମୁଣ୍ଡି, ଆର୍. ଉଦୟଗିରି, ଗଡ଼ବାନ୍ଧ, ବାରାଣସୀ, ଅଣୁକୁଡ଼, ରାୟଗଡ଼ା, ଗରଡ଼ାହାଟ

**ବଳଦେବଜୀଉ ମନ୍ଦିର :** ଜିରାଙ୍ଗ

**ଗଞ୍ଜାମ: ଜଗନ୍ନାଥ ମନ୍ଦିର**

ଆଠଗଡ଼ ମାରଦା (ଶରଣ ଶ୍ରୀକ୍ଷେତ୍ର), ଆସ୍କା, ବଡ଼କୋଦଣ୍ଡ, ବ୍ରହ୍ମପୁର, ବାଲିଛେଲି, ବୁଗୁଡ଼ା, ଛତ୍ରପୁର, ଚିକିଟି,



ଧରାକୋଟ, ଦିଗପହଣ୍ଡି, ଗୋସାଇଁ ନୂଆଗାଁ, କେଦାରେଶ୍ୱର, ପେଟା, ଖଲିକୋଟ, କୁଲାଲଗଡ଼, ମନ୍ତ୍ରୀଡିହ, ନିର୍ମଳଝର, ରଣଝଲି, ସୋରାଡ଼ା, ସୁରଙ୍ଗୀଗଡ଼, ବିଜୟନଗର, ଛତ୍ରପୁରର ଧାବା ଜଗନ୍ନାଥ ।

**କଟକ: ଜଗନ୍ନାଥ ମନ୍ଦିର**

ବାଲି(ଆଠଗଡ଼), ବଡ଼ମ୍ବାଗଡ଼, ଚଣ୍ଡୀଖୋଲ, ଛତିଆ, ଅଭିନବ-ବାରଣାସୀ-କଟକ, କୁଳାଶ୍ରୀ, ଗଜରାଜପୁର, ଗୋପୀନାଥପୁର, କତାରପୁର, ନରସିଂହପୁର, ରଗାଡ଼ି, ସୁବର୍ଣ୍ଣପୁର, ତଳମୁଣ୍ଡଳି, ଡିଗିରିଆ, ଅଛଲକାଟ, ବିରୁଡ଼ା, ନିଜିଗଡ଼(ବଡମ୍ବାଗଡ଼), ବନମାଳୀପୁର, ପୁରଣାଗଡ଼, ନିଜିଗଡ଼(ନରସିଂହପୁର), କାନପୁର, ଆଠଗଡ଼ ଟାଉନ୍, ଜଗନ୍ନାଥ ବଲ୍ଲଭ ମଠ, ଜାଗିଲୋ, ଯୋଡ଼ାମ୍ବୁ, କୁଡୁମୁ, କୁସୁପାଙ୍ଗୀ, ଚାନ୍ଦିନୀଚୌକ, ତେଲେଙ୍ଗାବଜାର, ବକ୍ସିବଜାର, ତୁଳସୀପୁର, ବଙ୍ଗାଳୀସାହି, ମହାନଦୀବିହାର, ପୁରାମ, ପାଲି, କିଲ୍ଲାପଟିଆ, ମାଧବ, ନରାଜ, ଜିଗନିପୁର, ଟିଖିରି, ଚାଉଳିଆଗଂଜ, ସାନିଲୋ ।

**ଦଧିବାମନ ମନ୍ଦିର**

ଅସୁରେଶ୍ୱର, ସସାଙ୍ଗ, ପାଟପୁର, ଶ୍ରୀୟାପୁର, ଏଲାମାପୁର, ସତ୍ୟଭାମାପୁର, କୁମାରପୁର, ଗୌଡ଼ଝର, ଗୋବରା, ସଉରିଆ, ବୁଣ୍ଟାପଡ଼ା, ଜୋରନ୍ଦା, କୁମାରପୁର, ବାଳି, ନଡୁଆପଦା, ଗୋପୀନାଥପୁର, କାଣ୍ଟେଲୋ, ପାଂଚଗାଁ, ବିଗୁଡ଼ା, ବନ୍ଧାଳୋ, ଘୋଲାପୁର, ତଳଗଡ଼, ନାରଙ୍ଗ, ଗୋବିନ୍ଦପୁର, ଘୋଲାଲପୁର, ଓସଟିଆ, ଗୋପାଳପୁର, ଅିରା, ବାରବାଟି, ଝାଞ୍ଜିରମଙ୍ଗଳା, ବାରଡ଼ା, ବାଗଲପୁର, ଉରାଳି, ଓଳାସିଙ୍ଗ, କୁଣ୍ଡି, ସୋଲୋଗାଁ, ପାଣ୍ଡିଆ, ନପାଙ୍ଗ, ରଘୁନାଥପୁର, ଅଗ୍ରହାଟ, ମୂଳବସନ୍ତ, ନାରଦା, ଲେଖନପୁର, ସୁଦାସାଇଲେ, ବରିଷାନ, କୁଳିଆ ।

**ପତିତପାବନ ମନ୍ଦିର**

ମାଣିଆବନ୍ଧ, କାକୁଡ଼ିଆ, ଜଗନ୍ନାଥ ପ୍ରସାଦ, ବାଲିସାହି, ତାରାଡିଙ୍ଗ, ନୂଆପାଟଣା, କୁରଙ୍ଗାଶାସନ, ଦୋଳମୁଣ୍ଡାଇ, ରଘୁନାଥପୁର

**ବଳଦେବଜୀଉ:** କୁମାରପୁର

**ଦେବଗଡ଼: ଜଗନ୍ନାଥ ମନ୍ଦିର**

ବାରକୋଟ, ଦେବଗଡ଼, ବାମଣ୍ଡା, କାଲ୍ଲା, ପୁରୁଣାଗଡ଼, ନଈକୂଳ, ବାଲମ, ସାମ୍ନାଳି, ମିଲ୍ଲିନିପୁର, କନ୍ଧାଳ, ଧର୍ମଶାଳା ଜଗନ୍ନାଥ, ବୁରୁପଦା, ଗେଣ୍ଡୁଲାନିଦୁପାଲି, ହୁମ୍ମା, ହୁଣ୍ଡିଆ, ଜଗନ୍ନାଥପୁର, କଣକାଇ, କୋଂଚୁଡୁ, କାର୍ତ୍ତୁଲି, ଲଣ୍ଡାବଂଶ, ମକରଝୋଟା, ପ୍ରଥାପୁର, ରାମଚନ୍ଦ୍ରପୁ. ରମ୍ଭା, ରନ୍ଝଳି, ଟଙ୍ଗଣପାଲି, ଉପଳାପତି, ସାରୁ, ଦିଗପଡ଼ା, ଅରଖପୁର, ଆଠଗଡ଼, ବୋଇରାମ, ବୋରିଦା, ବିକ୍ରମପୁର, ଖରିଦାବୀରା, ବାଲିଛାଇ, ଚିଙ୍ଗୁଡ଼ିସାହି, ଧୁମ୍କାପଡ଼ା, ଗୁଡ଼ିଆଳି, ଗୁଡ଼ିଆପାଲି, କୋଦଳା, କୋଇରାଶି, ମଥୁରା, ପୋଲସରା, ପଥରା, ଶିକୁଳା, ବାବିଲିଆ, ହାତିଓତା, କୋଇଛମା, ସକ୍କଡ଼ା, ଝୁଲିମ୍ପୂ, କମା ନଳିନାକ୍ଷ୍ୟପୁର, ରାମୋମା ରାୟପୁର, କହ୍ନେଇପୁର, ଶଣ୍ଢାମୂଳ ସାଦୋକୋ, ନିମିନିଆ, ସୀତାରାମପାଲି, ରାଇପୁର, ମାରିକ୍ୟପୁର, ଜଳେଶ୍ୱରଖଣ୍ଡି, ଦାନପୁର, କଣ୍ଟାପଡ଼ା, ଫାସି, ରଙ୍ଗୁଡ଼ାପୁର, ତଳସରି, କବିସୂର୍ଯ୍ୟନଗର, ଖଣ୍ଡାଦେଉଳି, ଆମ୍ବଛାପାଲି, ବିରାଳିଗଡ଼, ତିରିଡ଼ା, ଲାକ୍ୟପୁର, ବଳରାମପୁର, ରାମଗଡ଼ପାଲୁର, କେଶପୁର, ସୁନାଧାର, ବେରୁଆଁବାଡ଼ି, ଚିକିଲି, ଛତ୍ରପୁର, ବାଙ୍ଗରଡ଼ା, ବେକ୍ଷାଳି, କସ୍‌ପା ଷ୍ଟ୍ରୀଟ୍, ହଳଦୀପଦା, କୁକୁଡ଼ାଖଣ୍ଡି, ଲିପାଲି, ଅମ୍ବାପୁର, ମାଣିତ୍ରିଡ଼ି, ଓଲାରିଗଡ଼, ପଦ୍ମନାଭପୁର, ରାନ୍ଧା, ସୋନପୁର, ପାତ୍ରପୁର, ଶମୀହାରପେଣ୍ଠ, ଶରଡିଜାନଦା, ପୋମାଗ୍ରାମ, ଖଜୁରିଆ, ଚିକିଟ, ବିଷମଗିରି, ଦେଙ୍ଗାଡି, ହରିପୁର, ଫାସୀଗୁଡ଼ା, ରାଧାଦେଇପୁର, ସିଦ୍ଧେଶ୍ୱର, ସିଙ୍ଗିପୁର, ବାସୁଦେବପୁର, ନୂଆଗଡ଼, ଲାଙ୍ଗୁଳାଦେଇ, ବହରମ୍ପୁର, ପ୍ରତାପଗିରି, ଛେଲା, ଅଗସ୍ତି ନୂଆଗାଁ, ମାଦରା, କୋଟପେଟା, ଭାଟକୁମରଦା, କେରଡ଼ାଗଡ଼, ପଡ଼ାଡିଗି, ବଡ଼ାଙ୍ଗୀ, ନୂଆଗାଁ, ଗୋପୀନାଥପୁର, ତହରା, ବଡ଼କୋଦଣ୍ଡ, ସୁମାମ୍ୱୋ ଷ୍ଟ୍ରିଟ, ଆସ୍କା, ଛସ୍‌ପିଟାଳୋ, ଧୌଗାମ, ଶେରଗଡ଼, ଗୋବିନ୍ଦପୁର, ନଳବେଣ୍ଟ, କଳାଶରଧାପୁର, ବେଲଗୁଣ୍ଠା, ବାଲିଛାଇ, ବୁଗୁଡ଼ା, ଗୋଳିଆ, ଖେମରେଡି, କୁଲାଡ଼, ପାଇଲିପଡ଼ା, ବିରିକୋଟ, ବାଲିଡ଼ି, ଜିଲୁଷା, ସୁରଦା, କର୍ଦ୍ଦେଖମା, ବଡ଼ଗଡ଼, ଧରାକୋଟ, ଦୁର୍ଗାମାଧବପୁର, ଚିକିଟି,

ଜୟପୁର, କୁରୁଳ, ସିଧନାଇ ପିଟାଳ, ନିରାଳ, କାମଗଡ଼, ଜହଦା, ଉଦୟଗିରି, ଭାବସାର।

**ଦଧିବାମନ ମନ୍ଦିର**

ଜଗନ୍ନାଥ ପ୍ରସାଦ, କଟକଳ, ପ୍ରତାପଗଡ଼, ଜରଦାଗଡ଼(ଜଗନ୍ନାଥଙ୍କୁ ପୂଜାକରାଯାଏ ପାର୍ଥସାରଥି ରୂପରେ), ଚିରିକାପଡ଼ା ଶାସନ, ଗୋଛବାଡ଼, କାକରପାଣି, ରୁମାଗଡ଼, ଖଜାପାଲି, ମଥୁରାପାଟଣା, ବାରିଦା, କାଲାମ୍ବୋ, ଦିଗପହଣ୍ଡି, ନୂଆପଡ଼ାପେଣ୍ଠ, କଙ୍କରଡା, ପାଟପୁର, ବଡ଼ଦୁମୁଳା, ବଡ଼ଖେମୁଣ୍ଡି, ସାନଖେମୁଣ୍ଡି, ଗହାଙ୍ଗୁ, ଧନୁଜୟ, ପୁଣ୍ଡନେଲା, ଆଦିପୁର, ବେଲିପଦର, ଛାମୁଣ୍ଡା, ଗେଲେରି, ଗୋବରା, ଜଗନ୍ନାଥପ୍ରସାଦ, କଦୁପଡ଼ା, କୁଲଡା, ପଞ୍ଚପତି, ତଳଶେକର, କୋଟକୋଲୁ, ବଡ଼ାଙ୍ଗୀ, କୋନୋଛାଇ, କୋକଳବା, ଗଳିଆ, କଟକୋଳା, କଣଛାଇ, ଯୋକାମରି, ତଳନାରା।

**ବଳରାମ ମନ୍ଦିର : ସୁରଙ୍ଗୀ**

**ଜଗତ୍‌ସିଂହପୁର: ଜଗନ୍ନାଥମନ୍ଦିର**

ଅଡ଼ଙ୍ଗଗଡ଼, ବାଲିକୁଦା, ଗାରୋଇ, ଜଗତ୍‌ସିଂହପୁର ଟାଉନ୍, ଖମ୍ବକୁଡ଼ା, କୁଜଙ୍ଗ, ସରବଣ୍ଟା, ଜୟବାଡ଼, ବସନ୍ତପୁର, ମାଳସାହି, ଅଧାପତି, ପାରାଦୀପ, ହଂସୁରା, ଗଣ୍ଡକୀପୁର, ଫତେପୁର, ବାଲିଆ, ବାଗେଇ, ମଲ୍ଲାସାହି।

**ଦଧିବାମନ ମନ୍ଦିର**

ସୁଇଘରପୁର, ସୁଇଲୋ, ବାଲୁଙ୍କେଶ୍ୱର, କଣଦାଡିହ, ଧାମିନ ଶାସନ କମାରପଡ଼ା, ବାବଲପୁର, ବାଲିପଡ଼ିଆ, ରୈତସିଂ, ନେଉଳା, ଓରସୁଦା, ନାଳିଆପାଲ, କୁଣ୍ଟାଲୋ।

**ପତିତପାବନ ମନ୍ଦିର**

ଅଣଖିଆ, ତଣ୍ଡିକୁଳ, କିଆଡିଙ୍ଗି, ସାଥଲପୁର, ବାଲିସାହି

**ବଳଦେବଜୀଉ ମନ୍ଦିର**

ପୋକପୁର, ଆମ୍ବଶାଳ, ଛନ୍ଦକପାଟଣା, ବଡ଼ପାଳ, ନାଗୁପୁର, ହସିଣା, ହଂସପୁରଗଡ଼, କଙ୍କରଡିଆ, ପଳାଶୋଲ, ଭୂତମୁଣ୍ଡାରୀ, କୁଜଙ୍ଗ।

**ଯାଜପୁର: ଜଗନ୍ନାଥ ମନ୍ଦିର**

ଯାଜପୁର, ବ୍ୟାସସରୋବର, ମଲ୍ଲିକାପୁର, ହରିଦାସପୁର, ବେନ୍ତଡ଼ା, ନରସିଂହପୁର, ହରିପୁର, ହାସନାପୁର, ଜିଳାନାସି, ବାରିକୁଳ, କାଟିକଟା, ବଳରାମପୁର, ନିଶିମାଳା, ମଧୁପୁରଗଡ଼, ସୁକିନ୍ଦା, ନୂଆଗାଁ, ଇଚ୍ଛାପୁର, ପାଛିକୋଟ, ବାରିବାଗଡ଼ା, ଔରଙ୍ଗାବାଦ, ପରାସଡିହ, ବଡ଼ନନ୍ଦପୁର, ରାଜାପୁରମଠ, ଚଉଷଠିପଡ଼ା, ଅଞ୍ଜିରା।

**ବଳଦେବଜୀଉ ମନ୍ଦିର**

ବଳଡିଆ (ତାରାପୁର), କଲ୍ୟାଣପୁର, ଛାରପଡ଼ା, ଗଡ଼ମଧୁପୁର, ଜାହାନ, କନ୍ତିପୁର, ବଳଦିଆ(କୋରେଇ), ଇଚ୍ଛାପୁର, ନରେନ୍ଦ୍ର, ଭୋଗକାନ୍ତାର।

**ଦଧିବାମନ ମନ୍ଦିର**

ନାହାର, ପ୍ରୀତିପୁର, କପିଳା, କୁମ୍ଭେଇବେରା, ପଲେଇ, ତାଲୁକପଡ଼ା, ରତଲଙ୍ଗ, ପୁରୁଣାସାହି, ବରଦା, କଦେଇ, ବନଦା, ବାରକାଟି, ବିରୁଡ଼ା, ଶାସନଦା, ତୋଳକଣି, ପାଛିକୋଟ, ପାଇକସ୍ତା, ଲକ୍ଷ୍ମୀନଗର।

**ପତିତପାବନ ମନ୍ଦିର: କୁଆଁରପୁର**

**ଝାରସୁଗୁଡ଼ା: ଜଗନ୍ନାଥ ମନ୍ଦିର**

କୁକୁରଜଂଘା, ତିଙ୍ଗିସମା, ପାଞ୍ଚପଡ଼ା, ସୁରବାହାଲ, ତଳପଟିଆ, ବୁରୋହାଲ, ବେହେରମାଲ, ଲଖନପୁର, ମହାଦ୍ର, ବାଘମୁଣ୍ଡା, ଲଛେପାଲି, ମାରୁଆଡ଼ିପଡ଼ା, ବାବୁପଡ଼ା, ବିଶୋଇଗଡ଼, ବେଲପାହାଡ଼, ତିଙ୍ଗିତମାଳ, ଗୁମାଡେରା, କୁଦାଲୋ, ସାମ୍ବରାଭାଗ, ଛିଛିଦା, ଭାସ୍କର ଟେକ୍‌ସଟାଇଲ ମିଲ୍ କମ୍ପ୍ଲେକ୍ସ।

**କଳାହାଣ୍ଡି: ଜଗନ୍ନାଥ ମନ୍ଦିର**

ଭବାନୀପାଟଣା, ଦାଦପୁର, ଜୟପାଟଣା, ଜୁନାଗଡ଼, କେସିଙ୍ଗା, ମଦନପୁର, କାଲୁପୁଲା, କୁଇରିପଦର, କୁଲୁପଡ଼ା, କୁଲମପୁର, ତୋମରା, କାଶୀବାହାଲ, ଉତ୍କଳ, ଚେଲିଆ ମାହାଲ, ତୁଲୁକ, ମେଣ୍ଡିଲି, ତେନାସିଂ, ଗଜବାହାଲ, ରସିଡା, କାଉଡୋଳା, ବେହେରା, ଲାଗଡ଼, ଭାଲେମର, ଗୋଟାମୁଣ୍ଡି,

ଜଡ଼ମୁଣ୍ଡା, ଗୋଥମରା, ମୁଖିଗୁଡ଼ା, ରାମଚନ୍ଦ୍ରପୁର, ଗୋପୀନାଥପୁର(ଦେପୁର), ଧନପୁର, ବେଲଖଣ୍ଡି, ଶେରାଗଡ଼, ସୁଗସିବାଡ଼ି, ଖଲଣା, ଜଡ଼ମୁଣ୍ଡା, ଗୋଥମରା, କଣ୍ଟୋଳା, ଭୁଲିସୁକିଆ, ଆମପାଳ, କାଲମପୁର, ସିନାପାଲି, କାଦେଲ।

**ଦଧିବାମନ ମନ୍ଦିର**

ଗୋପୀନାଥପୁର (ଭବାନୀପାଟଣା), ଜୁନାଗଡ଼ (ଧରମଗଡ଼), ମେଦିନୀପୁର, ଦାଦପୁର (ଭବାନୀପାଟଣା), କସୁରପଡ଼ା, ରୂପ୍ରା।

**କେନ୍ଦ୍ରାପଡ଼ା: ଜଗନ୍ନାଥ ମନ୍ଦିର**

ଇନ୍ଦୁପୁର, ବଜାର ମଠ (ପଣସୁଦା), କେଦାରଗଡ଼, ରିଗାଗଡ଼, କଖାରୁଣି, ଚାରିଗାଁ, ଚାରୁଡିଆ।

**ଦଧିବାମନ ମନ୍ଦିର**

ଦେଶାଇ, ବଡ଼ରାହାମା, ଜଅଁର ବାଡ଼ିମୂଳ, ତମାଳ ଶାସନ, ନୂଆଗାଁ, ସରକା, ତେନ୍ତୋଳ, ମାଣ୍ଡଳା, ଚନ୍ଦ୍ରା, ବନ୍ଧମାଳ ଡମରପୁର, ମଳଦୁଲିଆ, ମଧୁଶାସନ, ଖସଡିହି, ଡେରାବିଶ, ରାଜନଗର, ପାଞ୍ଚପଡ଼ା, ଦୁମୁଖାତ୍, ନେମାଳ, ଗୋଲାରହାଟ, କେଦାରଗଡ଼, ମହୁରୀଗାଁ, ବରାଙ୍ଗ, ଛାଦେଶ, ନୂଆଗାଁ, ବଡ଼ାମାସ, ରାଜଗଡ଼, ମହିଷପୁର, ବାଦୋଲରା, କାଳିଡିହ, ଜଳଧାପୁର, ଭରତପୁର।

**ପତିତପାବନ ମନ୍ଦିର:** ଡାଳିକରିନ୍ଦା

**ବଳଦେବଜୀଉ ମନ୍ଦିର**

କେନ୍ଦ୍ରାପଡ଼ା, ଇଚ୍ଛାପୁର, ବାଲିପଡ଼ା, ଗରଦପୁର, ବଣି, ନରେନ୍ଦ୍ରଭୋଗ, ରିଗାଗଡ଼, ଯନ୍ତୁଆଳି।

**କେଉଁଝର : ଜଗନ୍ନାଥ ମନ୍ଦିର**

ଚମ୍ପୁଆ, ହୁନ୍ଦା, କେଉଁଝରଗଡ଼, ଶାଳପଦା, ସିଧମଥା, ଖପରଖାଇ, ପାତ୍ରସାହି, ଖଣ୍ଡହଟ୍ଟା।

**ଦଧିବାମନ ମନ୍ଦିର**

ଆନନ୍ଦପୁର, ଫକୀରପୁର, ଗୋନାସିକା, କେନ୍ଦୁକଣ୍ଡା, ବାଞ୍ଜୋ, କେସଦୁରାପାଳ, ପଣ୍ଡୁଆ, ହାଟଡିହ, ତରୁଆଁ, ମଦନପୁର, ସଧା, ବାଙ୍ଗୋରା, ବଳରାମପୁର, ପଞ୍ଚୁପାଲି, କଣ୍ଟଳା, ଗୋବରାଗଳି, ଡଙ୍କାରି, ଦହିପୋଖରୀ, ଶଙ୍ଖୁରା, ଶାଳକିଆ, ମଟବଜା, କାଳିକାପ୍ରସାଦ, ଜ୍ୟୋତିପୁର, ଚମ୍ପୁଆ, ରାଜନଗର, ତେନ୍ତୁଳିପଦା, ବେଟିରା, ଶାଳବଣି, ଛେନାପଦି, ବଡ଼ରମ୍ପାସ, ଜଳକଳାଙ୍ଗ।

**ବଳଦେବଜୀଉ ମନ୍ଦିର**

କେନ୍ଦୁଝରଗଡ଼, ପୁରୁଣାଗଡ଼, ରାଜନଗର, ସାମାନା, ମାରୁଆ, ନୟାଗଡ଼, ଶାସନ୍ତପୁର, ଅଙ୍ଗାରୁଆ, ବସନ୍ତପୁର, ମାରିଗାଁ, ପୁରୁଣାବନ୍ଧଗୋଡ଼ା, ବାଟଣୀକଣ୍ଟାଳି, ନୂଆଗାଁ।

**ଖୋର୍ଦ୍ଧା: ଜଗନ୍ନାଥ ମନ୍ଦିର**

ନୀଳାଦ୍ରିପ୍ରସାଦ, ହାରାପୁର, ବେଗୁନିଆ, କାକୋଦରପୁର, ମାହୁଖଣ୍ଡା, ପଟିଆକିଲ୍ଲା, ଏଗ୍ରିକଲଚର୍ କଲୋନୀ, ଓଲଡଟାଉନ୍, କୋରଡ଼କଣ୍ଟା, ଅସୁରଳା, ଓରଡ଼ା, ବୋଲାଗଡ଼, ଗୋଡ଼ିଆଳି, ନାନପଦା, ଭୂଷଣ୍ଡପୁର, ଭି.ଏସ୍.ଏସ୍. ନଗର, ଆଚାର୍ଯ୍ୟବିହାର, ଟଙ୍କପାଣି ରୋଡ଼, ଶୈଳଶ୍ରୀବିହାର, ଉତ୍କଳ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ, କିଟ୍ କ୍ୟାମ୍ପସ୍, ରେଲୱେ କଲୋନୀ(ଚନ୍ଦ୍ରଶେଖରପୁର), ପାଣ୍ଡରା, ନାଗପୁର।

**ଦଧିବାମନ ମନ୍ଦିର**

ବାଲୁଗାଁ, ରନ୍‌ପୁର, ଶିଶୁପାଳଗଡ଼, ଜଗନ୍ନାଥ ପ୍ରସାଦ, ମାଳିପଦା, କଳାମାଟିଆ, ରଘୁନାଥପୁର, ଦାରାହା, ଝାରପଡ଼ା, ଆଇଗଣିଆ, କନ୍ହେଇପୁର, ମୋରାମୋରେଇ, ସାହସପୁର, ଅଶ୍ୱାରିପାଟଣା, ଜଗତପୁର, କୁସୁପଲ୍ଲା, ବଡ଼ତୋଟା, ଖୁଣ୍ଟିସାହି, କଦମପାଟଣା, ବାମାଗଡିଆ, ସାଗତଗାଁ, କାନୁମନ୍ତପ୍ରସାଦ, ମାଣ୍ଡାଲିଙ୍ଗ, ଦୀରଜରା, ବେଲେରୀ, ଇନାଜନ୍‌ପୁର, ମୁକୁନ୍ଦପୁର, ଶିଖରପଡ଼ା, ଗଡ଼ସଣପୁର, ଓହ୍ଲଣ, ଭେଲେରି, ପାଣିଗଡ଼ସିଂ, ନାଳିଗଡ଼ିଆ, ଓଡ଼ଗାଁ, ପାରିକୁଦ, କଣାଟି, ରାମଚନ୍ଦ୍ରପୁର, ଛଣାଗିରି, ଗୋପାଳପ୍ରସାଦ, ସୁଆଁଳ, ବଡ଼ଗାଁ, କଦମପୁର, ବାଙ୍କୋଇ, ଗୋଲାବାଇ, ବାଜପୁର, ସିକୋ, ଦେଉଳି, ନରେନ୍ଦ୍ରପୁର, ନିଜିଗଡ଼, ଜୟମଙ୍ଗଳା, ରତନପୁର, ଚୁଡ଼ା, ହାଟସାହି, କୁମୁଟିସାହି, ସନ୍ତରାପୁର, ବଡ଼ପାରି, ଖଙ୍ଗୁରିଆ।



**ପତିତପାବନ ମନ୍ଦିର**

ବଡ଼ଗଡ଼, ପ୍ରତାପପୁର, ପଣସପାଟଣା, ବାଲିଅନ୍ତା, ମଙ୍ଗଳଜୋରି, ହରିପୁର, ଚାନ୍ଦେଶ୍ୱର, ପାଟପୁର, ବଡ଼ପୋଖରିଆ, ଅରିକଣା, ସାନପଦର, ବାଣପୁର, ଗୋଳବାଇ ଶାସନ, ଗମ୍ଭାରିମୁଣ୍ଡା, ଚମ୍ପାଗଡ଼, କନ୍ଧନୟାଗଡ଼, କାଟେଗଡ଼, ଗୁରୁଜଙ୍ଗ, ବଉଳାବନ୍ଧ, କୋକାସିଂ, ଗୋଡ଼ିପଦା, ଦିବ୍ୟସିଂହପୁର, ପାହାଳ।

**ବଳଦେବଜୀଉ ମନ୍ଦିର:** ବାଗଲପୁର

**କୋରାପୁଟ**

ଶାବର ଶ୍ରୀକ୍ଷେତ୍ର, ବନ୍ଧୁଗାଁ, ଭୈରବସିଂପୁର, ଗୁଡ଼ାରି, ଜୟପୁର ଟାଉନ, କୋଟପାଡ଼, ଲକ୍ଷ୍ମୀପୁର, ମାଛକୁଣ୍ଡ, ନନ୍ଦପୁରା, ନାରାୟଣପାଟଣା, ପଟାଙ୍ଗୀ, ବିଷମ କଟକ, ମନ୍ଦିର ଉନ୍ନୟନ ସଂସ୍ଥା, ମାଛକୁଣ୍ଡ, ନବରଙ୍ଗପୁର, ନନ୍ଦପୁର, ରାମଗିରି, ଦଶମନ୍ତପୁର, କୋଟିଆ, ଖର୍କିରିଗୁମ୍ଫା, ସୁନାଗରା, ଦାମନଯୋଡ଼ି, କୋଲାପନଗର, ଖଟିଗୁଡ଼ା, ଫେରୁବାଲି, ଇନ୍ଦ୍ରାବତୀ।

**ଜଗନ୍ନାଥ ମନ୍ଦିର:** ଗୋବିନ୍ଦପାଲି, ଚିତ୍ରକୋଣ୍ଡା

**ମୟୂରଭଞ୍ଜ: ଜଗନ୍ନାଥ ମନ୍ଦିର**

ବାରିପଦା, ହରିପୁର, ରନ୍ପୁର, ରାଇରଙ୍ଗପୁର

**ଦଧିବାମନ ମନ୍ଦିର:** ପ୍ରତାପପୁର, ବାରିପଦା, ନବରଙ୍ଗପୁର

**ଜଗନ୍ନାଥ ମନ୍ଦିର**

ନବରଙ୍ଗପୁର, ଜଗନ୍ନାଥପୁର, ଅଞ୍ଚଳଗୁମ୍ଫା, କୋରାମୁଣ୍ଡୁଣ୍ଡୀ, ଦାଣ୍ଡମୁଣ୍ଡ, ହଳଦୀ, ଗମ୍ଭାରିଗଡ଼, ବାରିଗୁଡ଼ା, ଫଟକି, ଝରିଗ୍ରାମ, ଚନ୍ଦାହାଣ୍ଡି।

**ନୟାଗଡ଼**

କଣ୍ଟିଲୋ, ଖଣ୍ଡପଡ଼ାଗଡ଼, କୁବନ(ଦଶପଲ୍ଲା), ନୟାଗଡ଼, ରଣପୁର, ବାଉଁଶିଆପଦା, ସିନ୍ଧୁରିଆ, ଲାଠିପଡ଼ା, ବଉଳାସାହି, ବାଲିଆଡିହ, ବାଲୁଗାଁ, ନନ୍ଦୀଘୋରା, କଣ୍ଡୁଧିପି, ନିଜିଗଡ଼, ଐରାସାରି, ଗୋପାଳପୁର, ଜୋରୁମ, ମଧ୍ୟକାଣ୍ଡ, ଜଗନ୍ନାଥପ୍ରସାଦ, ସିଆଁଳ, ଖଲିସାହି।

**ଦଧିବାମନ ମନ୍ଦିର**

କୁରାଳ, ବିରୁଡ଼ା, ଶିଖରପୁର, ଚମ୍ପତିପୁର, ବାହାଡ଼ଝୋଲା, ହରିପୁର, ମାହିପୁର, ଜୟମଙ୍ଗଳପ୍ରସାଦ, ସାକେଦ, ପାଇକବାଙ୍କତରା, କଣ୍ଟାବଣିଆ, ସୁନାମୁହିଁ, ଡିମିସରା, ଡମସାହି, ଗୋଡ଼ଡାଲି, କରଦା, ଟାଙ୍ଗୀ, ସାହାଗଡ଼, ଗୋଡ଼ାବାଙ୍କିଲୋ, ଅହଲାପଟା, ଲକ୍ଷ୍ମୀପ୍ରସାଦ, ଶାସନ, ବିଟାଖୋଲି, ଦୁଧସର, ବେଲପଡ଼ା, ଅରିଆଳପଦା, ଜତ୍ତୁପଥପୁର ଶାସନ।

**ପତିତପାବନ ମନ୍ଦିର:** ମୌରିଝାଳିଆ, ସିମଳା, ବାଗଲ

**ବଳଦେବଜୀଉ ମନ୍ଦିର:** ପୁରୁଣା ଦଶପଲ୍ଲା

**ନୂଆପଡ଼ା: ଜଗନ୍ନାଥ ମନ୍ଦିର**

କୋମନା, କୋଟଗାଁ, ପାତାଳଗଙ୍ଗା, ଖରିଆର, ତାନପୁର, ପାଟଣାଗଡ଼, ପିଉଳଗାଁ, କରନାଳ, ଗୋଣ୍ଡାବାହାଲ, ସିନାପାଲି, ସଗୁନବାଦି, ଖଲଣା ଘୁଚାଗଡ଼।

**ଦଧିବାମନ ମନ୍ଦିର:** ଖରିଆର, ତଳଭା, ନୂଆପଡା।

**ଫୁଲବାଣୀ: ଜଗନ୍ନାଥ ମନ୍ଦିର**

ବାଲିଘୁରା, ବନ୍ଧଗଡ଼ା, ଚକାପାଦ, ଫିଙ୍ଗିରିଆ, କଟିଙ୍ଗିଆ, କେଳାପଡ଼ା, ଖଜୁରିଆପଡ଼ା, ଫୁଲବାଣୀ, ଡୁମୁଡ଼ିବନ୍ଧ, ଉଦୟଗିରି, ଟିକାବାଲି।

**ପୁରୀ: ଜଗନ୍ନାଥ ମନ୍ଦିର**

କୋଣାର୍କ, ନିଆଳି, ନିମାପଡ଼ା, ତ୍ରିବେଣୀ, ବାରାହାପୁର, ବୀରପ୍ରତାପପୁର, ପୁରୀ ଟାଉନ, ଦଣ୍ଡିମାଳ ସାହି, ଅଥାସିଆ, ଇନ୍ଦୋଳା, ଖୁଣ୍ଟିଆ ସାହି, ସାରଙ୍ଗିଜୋଡ଼ି, ପଥୁରିଆ ସାହି, ହରଚଣ୍ଡୀ ସାହି, ମୁଣ୍ଡିହାଟ, କୁଣ୍ଢେଇବେଣ୍ଟ ସାହି

**ଦଧିବାମନ ମନ୍ଦିର**

ଚନ୍ଦନପୁର, ସୁବୁଦ୍ଧିପାଟଣା, ଖଜୁରିଆ, ନାହା'ରା, ଇନ୍ଦୁପୁର, ଚୈନପୁର, ମଳିବରାହୀ, ଚଇତେଣା।





**ପତିତପାବନ ମନ୍ଦିର**

ଅନ୍ତର୍ବେଦୀ ମଠ, ଚଉରାଶି, ହରିଦାସପୁର, ସତ୍ୟବାଦୀ, କାକଟପୁର, ଲଡା, ବରିମୁଣ୍ଡା, କରଡୋଳା, ଚିପିଲିମା, କୁରିଆ, ପରମାଣପୁର, ଗମ୍ହାରିପଣିଆ, ବସନ୍ତପୁର, ଧାମୁଣ୍ଡା, ବରଜିପାଲି, ଗୋଳାବନ୍ଧ, ଗଡ଼ମୁଣ୍ଡା, ବରହମ୍ପୁର, ଘେନୁପାଲି, ଖଲିଆପାଲି, ଭୁଜିଟିକିରା, ବାଇଦାମୁଣ୍ଡା।

**ବଳଦେବଜୀଉ: ଝାରୁଆପଦା, ତବଲ**

**ସୋନପୁର: ଜଗନ୍ନାଥ ମନ୍ଦିର**

ବିନିକା, ବୀରମହାରାଜପୁର, ଧୁଙ୍ଗ୍ରିପାଲି, ଖଣ୍ଡାହାଟଗଡ଼, ପାଲିଗାଁ, କୋଟସମଲାଇ, ରାମପୁର, ସୁବଳୟା, ସୋନପୁର ଟାଉନ୍, ସୁବର୍ଣ୍ଣପୁର, ତରଭା, ଗଡ଼ଭିତର, ବିଙ୍କା, ମେଣ୍ଡ, ବାଗ୍‌ବରା, ଖଣ୍ଡାହାଟ, ପିଟାମହୁଲ, କରତଙ୍ଗା, ମେଘାଳ, ଡୁରେଇକେଲା।

**ଦଧିବାମନ ମନ୍ଦିର**

ହିକୁଡ଼ି, କସାଁରିପଡ଼ା, କପୂରଦା, ରକ୍ଷା, ସୋନପୁର, ବିଙ୍କା, କମାଲପୁର, କଂସପଡ଼ା, ସାରସମଲ, ମାରିଗାଁ, ତରଭା

**ସୁନ୍ଦରଗଡ଼: ଜଗନ୍ନାଥ ମନ୍ଦିର**

ବୀରମିତ୍ରପୁର, ବଣେଇଗଡ଼, ଗାଙ୍ଗପୁର, କୁମରମୁଣ୍ଡା, ଲାଠିକଟା, ବେଦବ୍ୟାସ, ସୁବଦେଗା, ମହଲଗାଁ, ତୋପିରା, ଜଓ୍ୱହାଟ, ଘୁଘର, ଭାଲୁଲତା, ଗମ୍ଭାରିଡିହ, ଫର୍ଟିଲାଇଜର ଟାଉନ୍‌ସିପ୍ (ରାଉର୍‌କେଲା), ସହଜବାହାଲ, କଳାବିରା, ରାଜାବାଡ଼ି, ସୁନାରିପଡ଼ା ମହିଷିଡିହ, ଶଙ୍କରଗାଁ, ରାଉରକେଲା(ସେକ୍‌ଟର ୩), ତଳପଟିଆ, କୁମରକେଲା, ରୁପାଡିହ, କରମଡିହ।

**ବଳଦେବଜୀଉ ମନ୍ଦିର**

ମଝିପଡ଼ା, ଇନ୍ଦ୍ରାଲୁ, କୁଅଁର, ଖୁଣ୍ଡେଇ, ପାଇକପଡ଼ା, ଉତ୍ତରବାଡ଼, ମାଳିବରାଡ଼, ଛତାବର, ମଙ୍ଗଳଯୋଡ଼ି, ନନ୍ଦକିଶୋର, ଖଣ୍ଡପଡ଼ା, ଗଡ଼ସାହି, ଦେଉଳି, ଦୁର୍ଗାଦାସପୁର, ଭାନ୍ତି, ବଳରାମପୁର, ଅଙ୍କିଆ, ଗୋପୀନାଥପୁର, ଅଲଗମ୍, ପାଟପୁର, ପାଣିଦୋଳ, ଦମ୍ପିଲୋ, ବନ୍ତପୁର, ଦେଉଳି ଇନ୍ଦିପୁର।

**ବଳଦେବଜୀଉ ମନ୍ଦିର:** ପିପିଲି, ଶୋଧରପୁର, ରୂପାଦେଇପୁର, ବିଶ୍ୱାଳପଦା, ଏରବଙ୍ଗ

**ରାୟଗଡ଼ା: ଜଗନ୍ନାଥ ମନ୍ଦିର**

ବିଷମକଟକ, ଡେରାପେଣ୍ଠ, ଗୁଣୁପୁର, ପଦ୍ମପୁର, ପାଇକପଡ଼ା, ରାୟଗଡ଼ା, କୁଳି, କାଶୀପୁର।

**ସମ୍ବଲପୁର: ଜଗନ୍ନାଥ ମନ୍ଦିର**

ବସ୍ତିପାଲି(ଫୁଲଝର), ବୁର୍ଲା, ଚାରମାଳ, ଗୋପାଳଜୀ ମଠ, ଚିପିଲିମା, ହାତୀବାରି, ହୋତାପଦ, ଜୁଜୋମୁରା, ମୁଡିପଦ, ପୂଜାରୀପାଲି, ରେଢ଼ାଖୋଲ, ସମ୍ବଲପୁର ଟାଉନ, ଶାସୋଦ, ସାହାସପୁର, କେଶପାଲି, ଲପାଙ୍ଗ, ରେଙ୍ଗାଲି, ସାମୀସିଂହଣୀ, ନୂଆପାଲି, ଉଲ୍ଲାସଗାଁ, ବଡ଼ାଇଲସିଂ, ବୁଗୁପାଲି, ମାଛିନ୍ଦା, ବାଘମୁଣ୍ଡା, ସୁନାରୀ, ତଳିବାହାଲ, ରେମେଦା, ଭେଦିଟିକିରା, ତଳକା, ମେଦିପଡ଼ା, ବାଘ୍ରା, ତହୁଦା, ଥେମାରା, ବଡ଼ଗାଁ, ଖଲିଆପାଲି, ବଳଲିଙ୍ଗା, ଗୁଳମାଳ, ଗୌରପାଲି, ଜଙ୍ଗଳା, ବାହୁଛାମୂଲି, ରାମପଲଙ୍ଗା, ବଡ଼ଡୁଙ୍ଗ୍ରି, ପଣ୍ଡାରିପଲି, ରେମେଦା, ବାଇଜମୁଣ୍ଡା, ପିତାପଲି, କଟରାବଗା, ପିପରଦା, କୁଳସରା, ଗୋଳାବନ୍ଧ, ଭୁରସିପାଲି, କେଲାଣି, ଡୁହୁଦା, ଗମ୍ଭାରପାଲି, ତିଳିଆ, ପିପଲିପାଣି, ରମ୍ପେଲା, ସରବାଳା, ବଳଙ୍ଗା, ବାହାମ, ସିହାଲପଲି, ଖଣ୍ଡୁଆଳ ନାଇକୁଳ, ବେହେରାପାଲି, ନୂଆପାଲି, ନୂଆମୁରା, ବଳଙ୍ଗା, ବୁଢ଼ାରାଜା, ସାଖିପଡ଼ା, କ୍ଷେତ୍ରରାଜପୁର, ଭାତରା।

**ଦଧିବାମନ ମନ୍ଦିର:** ମହାନ୍ତିପଡା, ଝଙ୍କରପାଲି, ରାମପଲଙ୍ଗ, ରେଙ୍ଗାଲି, ଅଡ଼ା।

ଇଏ ହେଲା ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଥିବା ଜଗନ୍ନାଥ ମନ୍ଦିରର ଏକ ପରିସଂଖ୍ୟାନଗତ ଉପସ୍ଥାପନା ଯାହା ୨୦୦୮ ମଧ୍ୟରେ ସଂଗୃହୀତ। ଏହା ଭିତରେ ଆହୁରି ଅନେକ ନୂଆମନ୍ଦିର ଗଢ଼ିଉଠିଛି। ବୃଦ୍ଧିପାଇଛି ଜଗନ୍ନାଥକୈନ୍ଦ୍ରିକ ଚେତନା। କେତେବେଳେ ପତିତପାବନ ରୂପରେ ତ କେତେବେଳେ ଦଧିବାମନ ରୂପରେ। ଏଥିସହିତ ବଳଦେବଜୀଙ୍କୁ ଅଗ୍ରଭାଗରେ





ରଖି ଅନେକ କ୍ଷେତ୍ରରେ ଜଗନ୍ନାଥ ନିଜକୁ ଗୌଣ ଭାବରେ ଉପସ୍ଥାପିତ କରିବାର ଉଦାହରଣ ମଧ୍ୟ ବେଶ ସୁଲଭ। ତେବେ ଯେଉଁ ରୂପରେ ଯେଉଁଠାରେ ପ୍ରଭୁ ଅବସ୍ଥାପିତ ଥାଆନ୍ତୁ ନା କାହିଁକି ସବୁଠି ରହିଛି ରଥଯାତ୍ରା ମାଧ୍ୟମରେ ତାଙ୍କର ବହିଃପ୍ରକାଶର ପ୍ରବଣତା। ପ୍ରଭୁ ନିଶ୍ଚୟ ଗମନ କରିବେ ଭକ୍ତପାଖକୁ ନିଜ ରଥ ମାଧ୍ୟମରେ। ନିଶ୍ଚୟ ଭକ୍ତର ତାପିତ ଚିତ୍ତ ଶୀତଳ କରିବେ ନିଜର କରୁଣା ବାରିରେ।

ଜଗନ୍ନାଥଙ୍କର ଏହି ସାର୍ବଜନୀନ ରଥଯାତ୍ରା ଚେତନାର ପ୍ରତିଫଳନ ଲକ୍ଷ୍ୟ ପରାଯାଏ ଓଡ଼ିଶାର ଧର୍ମୀୟ ପରମ୍ପରାରେ। ଚୈତ୍ରମାସ ଅଶୋକାଷ୍ଟମୀ ଦିନ ଅନୁଷ୍ଠିତ ହୁଏ ମହାପ୍ରଭୁ ଲିଙ୍ଗରାଜଙ୍କ ରୁକୁଣା ରଥଯାତ୍ରା ଯାହା ଅଣଲେଉଟା ଅର୍ଥାତ୍ ରଥଟି ଆଉ ଫେରେନାହିଁ। ବିରଜା ମନ୍ଦିରରେ ଦୁର୍ଗାପୂଜା ଅବସରରେ ଅନୁଷ୍ଠିତ ହୁଏ ରଥଯାତ୍ରା ଯାହା ଅବଶ୍ୟ ଭ୍ରମଣ କରିଥାଏ ମନ୍ଦିର ପରିସର ଭିତରେ। ରଥଟି ନଅଦିନ ସନ୍ଧ୍ୟାବେଳେ ମନ୍ଦିର ପରିସର ଭିତରେ ଭ୍ରମଣ କରେ ଯେଉଁଥିରେ ଅବସ୍ଥାପିତ ଥାଆନ୍ତି ଦେବୀଙ୍କର ବିଜେରୂପ। ଏପ୍ରକାର ରଥଯାତ୍ରା ମହୀଶୂରର ଚାମୁଣ୍ଡା ମନ୍ଦିରରେ ଅନୁଷ୍ଠିତ ହେବାର ପରମ୍ପରା ରହିଛି। ବାରିପଦାରେ ଅନୁଷ୍ଠିତ ରଥଯାତ୍ରାରେ ସୁଭଦ୍ରାଙ୍କ ରଥ କେବଳ ମହିଳାମାନଙ୍କ ଦ୍ୱାରା ଟଣାଯାଇଥାଏ।

ରଥଯାତ୍ରା ଓଡ଼ିଆ ଲୋକ ସଂସ୍କୃତିର ଏକ ଅନବଦ୍ୟ ଅଙ୍ଗ ଯାହାର ପ୍ରତିଫଳନ ଦେଖିବାକୁ ମିଳେ ଆମର ସାମାଜିକ ଓ ଧର୍ମୀୟ ଚଳଣିରେ। ତେବେ ବିଭିନ୍ନ ଦେବତାଙ୍କ ଅନୁଷ୍ଠିତ ବିଭିନ୍ନ ଯାତ୍ରା ପାର୍ବଣ ମଧ୍ୟରୁ ପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରା ଏକ ସାର୍ବଜନୀନ ପର୍ବ ଯାହା ଅନ୍ତର୍ଜାତୀୟ ସ୍ତରରେ ମଧ୍ୟ ସୃଷ୍ଟିକରିଛି ନିଜର ଏକ ଅନନ୍ୟ ପରିଚୟ। ସାମ୍ୟ, ଐକ୍ୟ, ଭ୍ରାତୃତ୍ୱ ଓ ମାନବିକତା ଆଧାରିତ ଜଗନ୍ନାଥ ଚେତନା ଆଜିର ବିଶ୍ୱଗ୍ରାମରେ ନିଜସ୍ୱ ଶାନ୍ତି ଓ ସୌହାର୍ଦ୍ଦର ବାର୍ତ୍ତାକୁ ବେଶ ନିବିଡ଼ ଭାବରେ ଉପସ୍ଥାପିତ କରି ନୀଳାଚଳ ବାନାକୁ ରୂପାନ୍ତରିତ କରେ ମାନବଧର୍ମୀ ଧ୍ୱଜାକୁ। ଆଉ ଏହି ବାର୍ତ୍ତାର ଧ୍ୱଜାଧାରୀ ମହାପ୍ରଭୁ ଜଗନ୍ନାଥ ମହୋଦଧି ତଟରେ ବସି, ମିଟି ମିଟି ହସି ସାରା ବିଶ୍ୱକୁ ଆହ୍ୱାନ ଦେଉଛନ୍ତି ପ୍ରେମ ଓ ଶାନ୍ତିର ରଜ୍ଜୁରେ ନିଜକୁ ବାନ୍ଧିରଖିବା ପାଇଁ। ଏକବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକର ଅଶାନ୍ତ ପୃଥିବୀରେ ସିଏ ବୁହାଉଛନ୍ତି ଶାନ୍ତି ଓ ପ୍ରୀତିର ମଳୟ।

**ସହାୟକ ଗ୍ରନ୍ଥସୂଚୀ**


Sree Jagannath: The Lord of Universe- Prof. S. N. Dash, Bhubaneswar, 2008

ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଓ ଯାନିଯାତ୍ରା– ଉତ୍କଳ ପାଠକ ସଂସଦ, ୧୯୯୪, କଟକ

ରଥଯାତ୍ରା: ଶବ୍ଦରେ ଶବ୍ଦରେ, ସଂଗୃହୀତ ଓ ସମ୍ପାଦିତ– ମନୀନ୍ଦ୍ର ମହାନ୍ତି: ଭଦ୍ରକ, ୨୦୧୪

ଶ୍ରୀମନ୍ଦିର, ନବକଳେବର ବିଶେଷାଙ୍କ, ଜଗନ୍ନାଥ ପ୍ରଶାସନ, ପୁରୀ, ୨୦୧୫

ଉତ୍କଳ ପ୍ରସଙ୍ଗ, ମେ / ଜୁନ୍, ୨୦୧୫, ଜୁଲାଇ, ୨୦୧୫

ଦାରୁଦିଅଁ, ନବକଳେବର ସଂଖ୍ୟା, ଧରିତ୍ରୀ ପ୍ରକାଶନ, ଭୁବନେଶ୍ୱର, ୨୦୧୫



ପ୍ରାଧ୍ୟାପିକା, ଇତିହାସ ବିଭାଗ

ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର












# ଏସିଆନ୍ ଆଥ୍‌ଲେଟିକ୍ସ ଚମ୍ପିଆନ୍‌ସିପ୍ସ – ୨୦୧୭

## କ୍ରୀଡ଼ା ଇତିହାସରେ ଏକ ନୂତନ ଅଧ୍ୟାୟ : ଭାରତ ଗୌରବାନ୍ୱିତ









ଏହା ବାରମ୍ବାର ପ୍ରମାଣିତ ହୋଇଆସୁଛି ଯେ, ଭାରତର ଅଗ୍ରଣୀ ରାଜ୍ୟମାନଙ୍କ ମଧ୍ୟରେ ଅନ୍ୟତମ ରାଜ୍ୟ ଓଡ଼ିଶା ପ୍ରତ୍ୟେକ କ୍ଷେତ୍ରରେ ସଫଳତା ଲାଭ କରିଆସୁଛି । ଏହାର ସମୃଦ୍ଧ ସଂସ୍କୃତି, ଐତିହ୍ୟ, ପରମ୍ପରା ଓ ଇତିହାସ ଏ ଦିଗରେ ବିଶେଷ ସହାୟକ ହୋଇପାରିଛି । ଏଣୁ ଏହି କ୍ରମରେ କଥିତ ଅଛି, 'ଜଗତ-ସରସେ ଭାରତ କମଳ, ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ' ।

ବାସ୍ତବିକ୍ ପ୍ରାଚୀନ କଳିଙ୍ଗ ନାମରେ ପରିଚିତ ଓଡ଼ିଶାର ଏକ ମୌଳିକ ସାଂସ୍କୃତିକ ଭିତ୍ତିଭୂମି ସହ ଗୌରବମୟ ଇତିହାସ ଅଛି । ଦକ୍ଷିଣ-ପୂର୍ବ ଏସୀୟ ଦେଶମାନଙ୍କ ସହ ଏହାର ସମୃଦ୍ଧ ନୌବାଣିଜ୍ୟ ଆଜି ବି ପରମ୍ପରାରେ ପାଳିତ । ଏକଦା ଏହାର ଭୌଗୋଳିକ ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଏଥି ନିମନ୍ତେ ସାହସୀ କଳିଙ୍ଗବାସୀଙ୍କୁ କୁହାଯାଏ 'କଳିଙ୍ଗାଃ ସାହସିକାଃ' ।

ସତେ ଯେମିତି ଆଜି ଆମକୁ ଲାଗୁଛି ଯେ, କଳିଙ୍ଗର ସେହି ହୃତ୍‌ଗୌରବ ପୁଣି ଫେରିଆସିଛି । ଅଧୁନା ଓଡ଼ିଶା ପ୍ରତ୍ୟେକ କ୍ଷେତ୍ରରେ ସାମୂହିକ ଅଭିବୃଦ୍ଧି ସହ ଆଗକୁ ଆଗେଇ ଚାଲିଛି । ଆମର କୃଷି ଉତ୍ପାଦନ ଜାତୀୟ ସ୍ତରରେ ଉଚ୍ଚ ପ୍ରଶଂସିତ ହେବା ସହ ଆମ ଚାଷୀଭାଇମାନଙ୍କର ରୋଜଗାର ଦ୍ୱିଗୁଣିତ ହୋଇପାରିଛି । ଓଡ଼ିଶାରେ ପୁଞ୍ଜି ବିନିଯୋଗ ନିମନ୍ତେ ଅନେକ ଶିଳ୍ପସଂସ୍ଥା ସେମାନଙ୍କର ଆଗ୍ରହ ପ୍ରକାଶ କରୁଛନ୍ତି । ଅନେକଗୁଡିଏ ନୂତନ କଳକାରଖାନା ମଧ୍ୟ ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧିରେ ସହାୟକ ହୋଇପାରିଛି । ଏମିତି କହିବାକୁ ଗଲେ, ସରକାର ଗରିବ ଜନସାଧାରଣଙ୍କ ହିତରେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ବିଭିନ୍ନ ଜନମଙ୍ଗଳକାରୀ ଯୋଜନା ପ୍ରଣୟନ କରିଛନ୍ତି । ସାମାଜିକ ନିରାପତ୍ତା ବଳିଷ୍ଠ ହୋଇଛି । କହିବା ବାହୁଲ୍ୟ ଯେ, ବିକାଶର ଶୀର୍ଷରେ ଥାଇ ଅଧୁନା ଓଡ଼ିଶା ଭାରତର ଏକ ବିକଶିତ ରାଜ୍ୟଭାବେ ଉଭା ହୋଇଛି ।

ବିଗତ ଦୁଇଦଶନ୍ଧି ମଧ୍ୟରେ ଓଡ଼ିଶାର ଜି.ଏସ୍.ଡି.ପି. ଅଭିବୃଦ୍ଧି ହାର ୮.୨ ପ୍ରତିଶତରେ ପହଞ୍ଚିଛି । ଯଦି ଆମେ ମହାରାଷ୍ଟ୍ର ସହ ଏହି ଅଭିବୃଦ୍ଧି ହାର ତୁଳନା କରିବା ତେବେ ଏଠାରେ ଏହି ହାର ୬.୧ ପ୍ରତିଶତ ଏବଂ ଗୁଜୁରାଟରେ ୭.୬୦ ପ୍ରତିଶତ ଅଛି । ତେଣୁ ଅନ୍ୟ ରାଜ୍ୟମାନଙ୍କଠାରୁ ଓଡ଼ିଶାର ଜି.ଏସ୍.ଡି.ପି. ଅଭିବୃଦ୍ଧି ହାର ଆଗରେ ଅଛି । ପୁନଶ୍ଚ ଯଦି ଆମେ ଓଡ଼ିଶାର ଜି.ଡି.ପି. ଅଭିବୃଦ୍ଧି ସମଗ୍ର ଦେଶସହ ତୁଳନା କରିବା ତେବେ ବିଗତ ୩ବର୍ଷରେ ଓଡ଼ିଶାର ଜି.ଡି.ପି. ଅଭିବୃଦ୍ଧି ୮.୧ ପ୍ରତିଶତରେ ଥିବାବେଳେ ଦେଶର ଅଭିବୃଦ୍ଧି ହାର ୬.୧ ପ୍ରତିଶତରେ ଅଛି ।

ଗ୍ରାମୀଣ ରାସ୍ତା ନିର୍ମାଣ କ୍ଷେତ୍ରରେ ଦେଖିଲେ ଓଡ଼ିଶାର ବାର୍ଷିକ ରାସ୍ତା ନିର୍ମାଣ ୪୧,୦୩୧ କି.ମି. ଥିବାବେଳେ ଗୁଜୁରାଟ ଏବଂ ଝାଡଖଣ୍ଡରେ ଏହା ଯଥାକ୍ରମେ ୧୧,୩୪୫ କି.ମି. ଏବଂ ୧୫,୭୨୭ କି.ମି. ରହିଛି । ଏଣୁ ଗ୍ରାମୀଣ ରାସ୍ତା ନିର୍ମାଣ କ୍ଷେତ୍ରରେ ଓଡ଼ିଶା ବହୁ ଆଗରେ ଅଛି । ଏତଦ୍‌ବ୍ୟତୀତ ସାରା ଭାରତରେ ଗ୍ରାମ୍ୟ ଗୃହ ନିର୍ମାଣ ସଂଖ୍ୟା ୨୨ ଲକ୍ଷ ଥିବା ସ୍ଥଳେ କେବଳ ଓଡ଼ିଶାରେ ଏହା ୧୦ ଲକ୍ଷରେ ପହଞ୍ଚିଛି । ଗୁଜୁରାଟ ରାଜ୍ୟ କ୍ଷେତ୍ରରେ ଦେଖିଲେ ଏହା ମାତ୍ର ୨୫୮୭୩ରେ ଅଛି ।

ଏହା ଆଉଥରେ ପ୍ରମାଣିତ ହୋଇଛି ଯେ, ଓଡ଼ିଶା ଯେକୌଣସି ଆହ୍ୱାନର ସମ୍ମୁଖୀନ ହୋଇ ଇପ୍ସିତ ଫଳ ଲାଭ କରିପାରେ । ଓଡ଼ିଶା ରାଜ୍ୟର ରାଜଧାନୀ ତଥା ସ୍ମାର୍ଟ ସିଟି ଭୁବନେଶ୍ୱରସ୍ଥିତ କଳିଙ୍ଗ ଷ୍ଟାଡିୟମ୍‌ରେ ନିକଟରେ ଆୟୋଜିତ ଏସିଆନ୍ ଆଥଲେଟିକ୍ସ ଚମ୍ପିଆନ୍‌ସିପ୍ସ – ୨୦୧୭ର ସଫଳ ଆୟୋଜନ ଏହାର ଜ୍ୱଳନ୍ତ ପ୍ରମାଣ ରଖେ ।



ଘଟଣାପ୍ରବାହ :– ଏସିଆନ୍ ଆଥଲେଟିକ୍ସ ଚମ୍ପିଆନ୍‌ସିପ୍ସ – ୨୦୧୭ ରାଞ୍ଚିଠାରେ ଆୟୋଜନ ନିମନ୍ତେ ଝାଡ଼ଖଣ୍ଡ ସରକାରଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । କିନ୍ତୁ ଦୌଡକୁଦ ଆୟୋଜନ ପାଇଁ ଅଳ୍ପଦିନ ବାକି ଥିବାବେଳେ ଝାଡ଼ଖଣ୍ଡ ସରକାର ଏଥିନିମନ୍ତେ ନିଜର ଅସହାୟତା ପ୍ରକାଶ କରିଥିଲେ । ଯେତେବେଳେ ଏହି ପ୍ରସ୍ତାବ ଓଡ଼ିଶା ସରକାରଙ୍କ ନିକଟକୁ ପଠାଗଲା ସେତେବେଳେ ମାତ୍ର ୯୦ଦିନ ହାତରେ ଥିଲା । ଓଡ଼ିଶା ସରକାର ଏହାକୁ ଏକ ଆହ୍ୱାନ ମନେକରି ଏଥିସକାଶେ ସମ୍ମତି ପ୍ରଦାନ କରିଥିଲେ ଏବଂ ଏହାର ସଫଳତା ନିମନ୍ତେ ଦିନରାତି ଅକ୍ଲାନ୍ତ ପରିଶ୍ରମ କରିଥିଲେ ।

## ଏସିଆନ୍ ଆଥଲେଟିକ୍ସ ଚମ୍ପିଆନ୍‌ସିପ୍‌ସ – ୨୦୧୭ ନିମନ୍ତେ ଚଳଚଞ୍ଚଳ ସ୍ମାର୍ଟ ସିଟି

ଭୁବନେଶ୍ୱରର କଳିଙ୍ଗ ଷ୍ଟାଡିୟମ୍‌ଠାରେ ଗତ ଜୁଲାଇ ୬ ତାରିଖରୁ ୯ ତାରିଖ ମଧ୍ୟରେ ଅନୁଷ୍ଠିତ ୨୨ତମ ଏସିଆନ୍ ଆଥଲେଟିକ୍ସ ଚମ୍ପିଆନ୍‌ସିପ୍‌ସ – ୨୦୧୭ ପାଇଁ ଖେଳାଳିମାନଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ସହ ସ୍ୱାଗତ କରିବା ସକାଶେ ଭୁବନେଶ୍ୱର ସହର ସାଜସଜ୍ଜାରେ ଝଲସି ଉଠିଥିଲା । ଜୁଲାଇ ୫ ତାରିଖ ସନ୍ଧ୍ୟାରେ ଏହାର ଉଦ୍‌ଘାଟନୀ ଉତ୍ସବ ମହାସମାରୋହରେ ଅନୁଷ୍ଠିତ ହୋଇଥିଲା । ପ୍ରଥମଥର ପାଇଁ ଓଡ଼ିଶାରେ ଆୟୋଜିତ ହେବାକୁ ଥିବା ଏପରି ଏକ ପ୍ରମୁଖ କାର୍ଯ୍ୟକ୍ରମରେ ସମଗ୍ର ଏସିଆର ୪୫ ଗୋଟି ଦେଶରୁ ପାଖାପାଖି ୧୦୦୦ ଖେଳାଳି ଏବଂ ପ୍ରତିନିଧି ଅଂଶ ଗ୍ରହଣ କରିଥିଲେ । ଭାରତର ଦିଲ୍ଲୀ ଓ ପୁନେଠାରେ ଏପରି ଆୟୋଜନ ପରେ ଭୁବନେଶ୍ୱର ଥିଲା ତୃତୀୟ ।

ପୂର୍ବରୁ ଏହି ଚମ୍ପିଆନ୍‌ସିପ୍ ଆୟୋଜନ ନିମନ୍ତେ ରାଞ୍ଚିକୁ ବଛାଯାଇଥିଲା । କିନ୍ତୁ ଏହା ମନା କରିଦେବା ପରେ ଶେଷ ମୁହୂର୍ତ୍ତରେ ଭୁବନେଶ୍ୱରକୁ ଏହି ଦାୟିତ୍ୱ ଦିଆଯାଇଥିଲା । ଓଡ଼ିଶା ହାତରେ ମାତ୍ର ୯୦ ଦିନ ସମୟ ଥିବାରୁ ଏହାକୁ ଏକ ଆହ୍ୱାନ ମନେକରି ଯୁଦ୍ଧକାଳୀନ ଭିତ୍ତିରେ ପ୍ରତ୍ୟେକ କାର୍ଯ୍ୟ ସମ୍ପାଦନ କରାଯାଇଥିଲା । ନୂତନ ସିନ୍ଥେଟିକ୍ ଟ୍ରାକ୍‌ଗୁଡିକ ବିଛାଯାଇଥିଲା । ଉଚ୍ଚ ମାନର ଶକ୍ତିଶାଳୀ ବିଦ୍ୟୁତ୍ ବ୍ୟବସ୍ଥା କରାଯାଇଥିଲା । ଏଥିସହିତ ଅନ୍ୟ କେତେକ ଜରୁରୀ କାର୍ଯ୍ୟ ତତ୍‌କ୍ଷଣାତ୍ ଭିତ୍ତିରେ ଶେଷ କରାଯାଇଥିଲା । ଆଗକୁ ଏହି କଳିଙ୍ଗ ଷ୍ଟାଡିୟମ୍‌ରେ ଅନେକଗୁଡିଏ ଅନ୍ତର୍ଜାତୀୟ ଖେଳକୁଦର ଆୟୋଜନ ହେବାକୁ ଅଛି ।

## ଷ୍ଟାଡିୟମ୍ ପ୍ରସ୍ତୁତି

ମୁଖ୍ୟ ଷ୍ଟାଡିୟମ୍‌ରେ ଆଗରୁ ପଡିଥିବା ରିଲେଟ୍ରାକ୍‌କୁ ବଦଳାରେ ତା' ସ୍ଥାନରେ ଅନ୍ତର୍ଜାତୀୟ ମାନର ସିନ୍ଥେଟିକ୍ ଟ୍ରାକ୍ ବିଛାଯାଇଥିଲା । ଫ୍ଲଡ ଷ୍ଟାଣ୍ଡଗୁଡିକ ସ୍ଥାପନ କରାଯାଇଥିଲା । ଲଙ୍ଗ ଜମ୍ପ, ହାଇ ଜମ୍ପ ଇତ୍ୟାତି ଖେଳପାଇଁ ସ୍ୱତନ୍ତ୍ର ଟ୍ରାକ୍‌ଗୁଡିକର ବ୍ୟବସ୍ଥା କରାଯାଇଥିଲା । ୧୫ହଜାର ଦର୍ଶକ ବସିଲା ଭଳି ବ୍ୟବସ୍ଥା କରାଯାଇଥିଲା । ପୂର୍ବରୁ ଭାଙ୍ଗିଯାଇଥିବା ଅନେକଗୁଡିଏ ଚୌକିକୁ ବଦଳାଇ ଦିଆଯାଇଥିଲା । ଏହି ଖେଳକୁଦ ନିମନ୍ତେ ରାଜ୍ୟ ସରକାର ୪୩ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଖର୍ଚ୍ଚ କରିଥିଲେ ।

## ନଗର ସୌନ୍ଦର୍ଯ୍ୟକରଣ

ଏପରି ଏକ ବୃହତ ଚମ୍ପିଆନ୍‌ସିପ୍ସ ଆୟୋଜନକୁ ଦୃଷ୍ଟିରେ ରଖି ଭୁବନେଶ୍ୱର ସ୍ମାର୍ଟ ସିଟିକୁ ବିଭିନ୍ନ ଢଙ୍ଗରେ ସଜ୍ଜା ଯାଇଥିଲା । ପ୍ରାଚୀରଗୁଡିକରେ ସହରୀ ଜୀବନର ଦୃଶ୍ୟ ସମ୍ବଳିତ ଚିତ୍ର ଚମତ୍କାର ଭାବେ ଅଙ୍କା ଯାଇଥିଲା । ଏତଦ୍‌ବ୍ୟତୀତ ଷ୍ଟାଡିୟମ୍ ସମ୍ମୁଖରେ ଥିବା ପ୍ରାଚୀରଗୁଡିକରେ ସଚ୍ଚିନ ତେନ୍ଦୁଲକର, ମିଲ୍‌ଖା ସିଂ, ଏମ୍.ଏସ୍. ଧୋନୀ, ସାନିଆ ମିର୍ଜା ଏବଂ ଏପରି ଆହୁରି ଅନେକ ବିଖ୍ୟାତ କ୍ରୀଡାବିତ୍‌ଙ୍କ ଚିତ୍ର ଅଙ୍କାଯାଇଥିଲା । ଷ୍ଟାଡିୟମ୍ ସମ୍ମୁଖରେ ଥିବା ସ୍ଥାନଗୁଡିକ ସୌନ୍ଦର୍ଯ୍ୟବର୍ଦ୍ଧକ ବିଭିନ୍ନ ଉଦ୍ଭିଦ ଦ୍ୱାରା ସାଜସଜ୍ଜା କରାଯାଇଥିଲା । ଖେଳାଳିମାନେ ସହରର ବିଭିନ୍ନ ହୋଟେଲ୍‌ମାନଙ୍କରେ ରହୁଥିବାରୁ ସେମାନେ ଯାତାୟାତ କରୁଥିବା ରାସ୍ତାର ମଝି ମେଡିଆନ୍‌ଗୁଡିକ ମଧ୍ୟ ବିଭିନ୍ନ ପ୍ରକାରେ ଚିତ୍ରିତ କରାଯାଇଥିଲା । ଉକ୍ତ ମାର୍ଗରେ ନୂତନ ଚାରା ରୋପଣ କରାଯାଇଥିଲା ।

ଷ୍ଟାଡିୟମ୍ ନିକଟସ୍ଥ ରାସ୍ତାର ଆଲୋକୀକରଣ ସହ ବିଭିନ୍ନ ମୁଖ୍ୟ ରାସ୍ତାଗୁଡିକ ମରାମତି କରାଯାଇଥିଲା । ଏହାର ଆଖପାଖ ସ୍ଥାନଗୁଡିକ ସଫାସୁତୁରା କରାଯାଇଥିଲା । ଚାରାରୋପଣ ଓ ପ୍ରାଚୀର ଚିତ୍ରଦ୍ୱାରା ଭୁବନେଶ୍ୱର ସ୍ମାର୍ଟ ସିଟିକୁ ଆକର୍ଷଣୀୟ କରାଯାଇଥିଲା ।





## ଟ୍ରାଫିକ୍ ନିୟନ୍ତ୍ରଣ

ଏପରି ଏକ ବିରାଟ ଆୟୋଜନକୁ ଦୃଷ୍ଟିରେ ରଖି ଭୁବନେଶ୍ୱର ଏବଂ କଟକ ପୋଲିସ୍ ପକ୍ଷରୁ ସହରରେ ଟ୍ରାଫିକ୍ ନିୟନ୍ତ୍ରଣ ପାଇଁ ଅନେକଗୁଡ଼ିଏ ପଦକ୍ଷେପ ଗ୍ରହଣ କରାଯାଇଥିଲା । ଷ୍ଟାଡିୟମ୍‌ରେ ହଜାର ହଜାର ସଂଖ୍ୟକ ଦର୍ଶକ ପହଞ୍ଚିବାକୁ ଥିବାରୁ ସହରର ବିଭିନ୍ନ ମାର୍ଗରେ ସ୍ୱତନ୍ତ୍ର ଟ୍ରାଫିକ୍ କଟକଣା ଜାରି କରାଯାଇଥିଲା । ଦର୍ଶକମାନଙ୍କ ସୁବିଧା ନିମନ୍ତେ ଟ୍ରାଫିକ୍ ନିୟନ୍ତ୍ରଣ ସମ୍ପର୍କରେ ବିଭିନ୍ନ ଗଣମାଧ୍ୟମରେ ବିଜ୍ଞାପନ ଦିଆଯାଇଥିଲା ।

## ସାଂସ୍କୃତିକ କାର୍ଯ୍ୟକ୍ରମ

ଏହି ଚମ୍ପିଆନ୍‌ସିପ୍ସର ଉଦ୍‌ଘାଟନୀ ଉତ୍ସବ ଅବସରରେ ଏକ ସ୍ୱତନ୍ତ୍ର ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜନ କରାଯାଇଥିଲା । ୫ଶହରୁ ଅଧିକ କଳାକାରଙ୍କ ଦ୍ୱାରା ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା । ୫ତାରିଖ ସଂଧ୍ୟାର ଉଦ୍‌ଘାଟନୀ ଉତ୍ସବ ଅତ୍ୟନ୍ତ ଚିତ୍ତାକର୍ଷକ ଥିଲା । ଓଡ଼ିଶୀ ଏହାର ମୁଖ୍ୟ ଆକର୍ଷଣ ଥିଲା । ପୁଣି ଓଡ଼ିଶାର ସଂସ୍କୃତି ଓ ପରମ୍ପରା ସମ୍ପର୍କିତ ଦୃଶ୍ୟ ପ୍ରଦର୍ଶିତ ହୋଇଥିଲା । ଅନ୍ୟାନ୍ୟ ପାରମ୍ପରିକ ନୃତ୍ୟ ମଧ୍ୟ ଏହି ଉତ୍ସବ ଅବସରରେ ପରିବେଷଣ କରାଯାଇଥିଲା ।

ବିଶିଷ୍ଟ ଓଡ଼ିଶୀ ନୃତ୍ୟଶିଳ୍ପୀ ଅରୁଣା ମହାନ୍ତିଙ୍କ ପ୍ରୋତ୍ସାହନରେ ଓଡ଼ିଶୀ ନୃତ୍ୟଶିଳ୍ପୀମାନେ ଓଡ଼ିଶାର ଇତିହାସ ସମ୍ପର୍କରେ ନୃତ୍ୟ ମାଧ୍ୟମରେ ପ୍ରଦର୍ଶନ କରି ଦର୍ଶକଙ୍କୁ ବିମୋହିତ କରିଥିଲେ । ଏଥିରେ ୪୦୦ରୁ ଉର୍ଦ୍ଧ୍ୱ ନୃତ୍ୟଶିଳ୍ପୀ ଅଂଶଗ୍ରହଣ କରିଥିଲେ । ଏତଦ୍‌ବ୍ୟତୀତ ପ୍ରସିଦ୍ଧ ସମ୍ବଲପୁରୀ ଗୀତ ରଙ୍ଗବତୀ ମଞ୍ଚରେ ଗାନ କରାଯାଇଥିଲା । ଏହି ରଙ୍ଗବତୀ ଗୀତର ମୂଳ ଗାୟକଙ୍କୁ ଏହି ଗୀତ ଗାଇବାକୁ ମଞ୍ଚକୁ ଡକାଯାଇଥିଲା । ପରେ ବଲିଉଡ୍ ଗାୟକ ତଥା ସଙ୍ଗୀତ ନିର୍ଦ୍ଦେଶକ ଶଙ୍କର ମହାଦେବନ୍ ତାଙ୍କ ସାଥୀଙ୍କ ସହ ମଧ୍ୟ ଏହି ଗୀତ ଗାଇଥିଲେ । କିଟ୍ ଏବଂ କିସ୍‌ର ଛାତ୍ରଛାତ୍ରୀମାନେ ଏହି ଅବସରରେ ଅଂଶଗ୍ରହଣ କରିଥିଲେ । ଏହାପରେ ଚମତ୍କାର ଆତସବାଜୀ ପ୍ରଦର୍ଶିତ ହୋଇଥିଲା ।

## ଆତସବାଜୀ ପ୍ରଦର୍ଶନ ମଧ୍ୟରେ ପାରମ୍ପରିକ ଭାବେ ଖେଳାଳିମାନଙ୍କୁ ସ୍ୱାଗତ

କଳିଙ୍ଗ ଷ୍ଟାଡିୟମ୍‌ଠାରେ ଓଡ଼ିଆ ସଂସ୍କୃତିଭିତ୍ତିକ ନୃତ୍ୟ, ସଂଗୀତ ଏବଂ ମନୋମୁଗ୍ଧକର ଆତସବାଜୀ ପ୍ରଦର୍ଶନ ଜରିଆରେ ୨୨ତମ ଏସିଆନ୍ ଆଥଲେଟିକ୍ସ ଚମ୍ପିଆନ୍‌ସିପ୍ସ ଆନୁଷ୍ଠାନିକ ଭାବେ ଉଦ୍‌ଘାଟିତ ହୋଇଥିଲା । ଦର୍ଶକ ପରିପୂର୍ଣ୍ଣ ଷ୍ଟାଡିୟମ୍ ୪୫ଗୋଟି ଏସୀୟ ଦେଶରୁ ଆସିଥିବା ୧ହଜାରରୁ ଉର୍ଦ୍ଧ୍ୱ କ୍ରୀଡାବିତ୍‌ଙ୍କୁ ଭବ୍ୟ ସ୍ୱାଗତ କରିଥିଲା । ନୂତନ ଭାବେ ବିଛାଯାଇଥିବା ଅନ୍ତର୍ଜାତୀୟ ମାନର ସିନ୍ଥେଟିକ୍ ଟ୍ରାକ୍ ଉପରେ ଯେତେବେଳେ ୯୫-ସଦସ୍ୟ ବିଶିଷ୍ଟ ଭାରତୀୟ ଦଳ ଆଗକୁ ଆଗେଇବା ଆରମ୍ଭ କଲେ, ସେତେବେଳେ ସେମାନଙ୍କୁ ବିପୁଳ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଘରୋଇ ଦଳ ପାଇଁ ଟିଣ୍ଟୁ ଲୁକା ଧ୍ୱଜାଧାରଣ କରିଥିବା ବେଳେ ଓଡ଼ିଆ ଧାବିକା ଶ୍ରାବଣୀ ନନ୍ଦ କ୍ରୀଡାବିତ୍‌ମାନଙ୍କ ପକ୍ଷରୁ ଚମ୍ପିଆନ୍‌ସିପ୍ ଶପଥ ଗ୍ରହଣ କରିଥିଲେ ।

## ଶେଷ ମୁହୂର୍ତ୍ତର ପ୍ରସ୍ତୁତି ପରେ ବିରାଟ ସଫଳତା

ଉଦ୍‌ଘାଟନୀ ସନ୍ଧ୍ୟାର ଅତିଥିମାନଙ୍କ ମଧ୍ୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ସହ କ୍ରୀଡା ଜଗତର ଅନେକ ପଦାଧିକାରୀ ଉପସ୍ଥିତ ଥିଲେ । ଏହି ବର୍ଷ ମାର୍ଚ୍ଚ ମାସରେ ଝାଡଖଣ୍ଡ ସରକାର ଶେଷ ମୁହୂର୍ତ୍ତରେ ଏହାର ଆୟୋଜନ ନିମନ୍ତେ ଅକ୍ଷମତା ପ୍ରକାଶ କରିବାରୁ ଓଡ଼ିଶା ସରକାର ଏପରି ଏକ ଗୁରୁ ଦାୟିତ୍ୱ ଗ୍ରହଣ କରିଥିବାରୁ ଆଇଏଏଏଫ୍‌ର ମୁଖ୍ୟ ସେବାଷ୍ଟିଆନ୍ କୋଏ, ଏସିଆନ୍ ଆଥଲେଟିକ୍ସ ଫେଡେରେସନ୍‌ର ଅଧ୍ୟକ୍ଷ ଦହଲାନ୍ ଅଲ୍-ହମାଦ୍ ଏବଂ କ୍ରୀଡା ସଂଘଗୁଡିକର ଅନ୍ୟାନ୍ୟ ସଦସ୍ୟଗଣ ଓଡ଼ିଶା ସରକାରଙ୍କୁ ଏଥିପାଇଁ ଭୂୟସୀ ପ୍ରଶଂସା କରିଥିଲେ । ମାତ୍ର ୯୦ ଦିନର ସମୟସୀମା ମଧ୍ୟରେ ନୂତନ ଟର୍ଫ, ଫ୍ଲଡ ଲାଇଟ୍, ସିନ୍ଥେଟିକ୍ ଟ୍ରାକ୍ ଏବଂ ଅନ୍ୟାନ୍ୟ କ୍ରୀଡା ସହାୟତା ସହ କଳିଙ୍ଗ ଷ୍ଟାଡିୟମ୍ ଏକ ନୂତନ ରୂପ ନେଇଥିଲା ।





ଏହି ଚମ୍ପିଆନ୍‌ସିପ୍‌ରେ ଅଂଶଗ୍ରହଣ କରୁଥିବା କ୍ରୀଡାବିତ୍ ନିଜର ପ୍ରଦର୍ଶନ ବଳରେ ଲଣ୍ଡନରେ ଆୟୋଜିତ ହେବାକୁ ଥିବା ବିଶ୍ୱ ଚମ୍ପିଆନ୍‌ସିପ୍ ନିମନ୍ତେ ଯୋଗ୍ୟତା ଅର୍ଜନ କରିବେ ।

## କାର୍ଯ୍ୟକ୍ରମର ଶୁଭାରମ୍ଭ

ଉଦ୍‌ଘାଟନୀ ସନ୍ଧ୍ୟାର ପ୍ରମୁଖ ଆକର୍ଷଣ ସ୍ୱରୂପ ପ୍ରିନ୍ସ୍ ଡ୍ୟାନ୍ସଗ୍ରୁପ୍ ତରଫରୁ ଚିତ୍ତାକର୍ଷକ କାର୍ଯ୍ୟକ୍ରମ ସହ 'ସୂର୍ଯ୍ୟ'ଙ୍କ ଉପରେ ଆଧାରିତ ଏକ କାର୍ଯ୍ୟକ୍ରମ ମଧ୍ୟ ପରିବେଷଣ କରାଯାଇଥିଲା । ସେମାନଙ୍କର ଅଭିନୟ ଭିତରେ କଳିଙ୍ଗ ଯୁଦ୍ଧ ପ୍ରଦର୍ଶିତ ହେବା ସହ ସମ୍ରାଟ ଅଶୋକଙ୍କର ଚଣ୍ଡାଶୋକରୁ ଧର୍ମାଶୋକକୁ ପରିବର୍ତ୍ତନର ଝଲକ ମଧ୍ୟ ଏହି କାର୍ଯ୍ୟକ୍ରମରେ ଦେଖିବାକୁ ମିଳିଥିଲା । ଏତଦ୍‌ବ୍ୟତୀତ ଉକ୍ତ ସଂଧ୍ୟାରେ ଓଡ଼ିଶୀ, ଗୋଟିପୁଅ, ଛଉ ଏବଂ ଅନ୍ୟାନ୍ୟ ପାରମ୍ପରିକ ନୃତ୍ୟକଳା ପ୍ରଦର୍ଶିତ ହୋଇଥିଲା ।

ଏତଦ୍‌ବ୍ୟତୀତ ଥାଇଲାଣ୍ଡରୁ ଆସିଥିବା ଏକ ନୃତ୍ୟଦଳ ବିଭିନ୍ନ ତାଳ, ଭଙ୍ଗୀ ସହ ରଙ୍ଗାରଙ୍ଗ କାର୍ଯ୍ୟକ୍ରମ ମାଧ୍ୟମରେ ବୌଦ୍ଧ ଧର୍ମ ଉପରେ ନୃତ୍ୟ ପ୍ରଦର୍ଶନ କରିଥିଲେ । ଏହି ସମୟରେ ଉଡନ୍ତା ବେଲୁନ୍ ଦ୍ୱାରା ଦୋଳାୟମାନ ଅବସ୍ଥାରେ ଗୋଟିଏ ନୃତ୍ୟ ଦଳ ମନୋମୁଗ୍ଧକର ଷ୍ଟଣ୍ଟ୍ ଦ୍ୱାରା ଉପସ୍ଥିତ ଦର୍ଶକଙ୍କୁ ବିମୋହିତ କରିଥିଲେ । ଓଲିଉଡ୍ ଚିତ୍ରତାରକା ଅର୍ଚ୍ଚିତା ସାହୁ ଏବଂ ସବ୍ୟସାଚୀ ମିଶ୍ର ଅନେକଗୁଡିଏ ଓଡ଼ିଆ ସଙ୍ଗୀତର ତାଳେ ତାଳେ ମଞ୍ଚ ଉପରେ ପ୍ରଦର୍ଶନ ସହ ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରିଥିଲେ । ତେବେ ବଲିଉଡ୍ ଗାୟକ ତଥା ସଙ୍ଗୀତ ନିର୍ଦ୍ଦେଶକ ଶଙ୍କର ମହାଦେବନ୍ ସମ୍ବଲପୁରୀ ଗୀତ ରଙ୍ଗବତୀ ମାଧ୍ୟମରେ ଦର୍ଶକମାନଙ୍କ ହୃଦୟ ଜିଣି ପାରିଥିଲେ ।

## ଉଦ୍‌ଘାଟନୀ କାର୍ଯ୍ୟକ୍ରମରେ ଓଡ଼ିଶାର ଐତିହ୍ୟ, ବୀରତ୍ୱ ଏବଂ କଳା ନିପୁଣତା ପ୍ରଦର୍ଶିତ

କଳିଙ୍ଗ ଷ୍ଟାଡିୟମ୍‌ରେ ଆୟୋଜିତ ୨୨ତମ ଏସିଆନ୍ ଆଥଲେଟିକ୍ସ ଚମ୍ପିଆନ୍‌ସିପ୍ସ ଅବସରରେ ଓଡ଼ିଶାର ସମୃଦ୍ଧ ସାଂସ୍କୃତିକ ଐତିହ୍ୟ ପ୍ରଦର୍ଶିତ ହେବା ସହ ପ୍ରାଚୀନ କଳିଙ୍ଗରୁ ଆଜିର ଆଧୁନିକ ଓଡ଼ିଶା ପର୍ଯ୍ୟନ୍ତ ଯାତ୍ରାକୁ ନିଖୁଣ ଭାବେ ପରିବେଷଣ କରାଯାଇଥିଲା । ୪୫ଗୋଟି ଦେଶର ପ୍ରତିନିଧି ଷ୍ଟାଡିୟମ୍‌ରେ ମାର୍ଚ୍ଚପାଷ୍ଟ କରିଥିଲେ । ଜାତୀୟ ସଙ୍ଗୀତ ଗାନ ପରେ ପ୍ୟାରେଡ୍ ଶେଷ ହୋଇଥିଲା । ଉପସ୍ଥିତ ପଦାଧିକାରୀ ସଂକ୍ଷିପ୍ତ ବକ୍ତବ୍ୟ ପ୍ରଦାନ କରିବା ସହ ପତାକା ଉତ୍ତୋଳନ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା ।

ମାର୍ଚ୍ଚପାଷ୍ଟରେ ଅଂଶଗ୍ରହଣକାରୀ ଓଡ଼ିଶୀ ହ୍ୟାଣ୍ଡ୍‌ଲୁମ୍ ଶାଢୀ ପରିଧାନ କରିଥିଲେ । ଏହି ଅବସରରେ ପ୍ରାଚୀନ କଳିଙ୍ଗର ପାରମ୍ପରିକ ସମରକଳା ପ୍ରଦର୍ଶିତ ହୋଇଥିଲା । ଇଣ୍ଡୋନେସିଆରୁ ଆସିଥିବା ୨୮ ଜଣ ସଦସ୍ୟ ବିଶିଷ୍ଟ ନୃତ୍ୟ ଦଳ 'ବୁଦ୍ଧଙ୍କର ୧ହଜାର ହାତ' ଶୀର୍ଷକ କାର୍ଯ୍ୟକ୍ରମ ପରିବେଷଣ କରିଥିଲେ ।

## ଦୀର୍ଘ ୪୪ବର୍ଷ ପରେ ପ୍ରଥମ ଥର ପାଇଁ ଆୟୋଜକ ଭାରତ ପଦକ ତାଲିକାର ଶୀର୍ଷରେ

କଳିଙ୍ଗ ଷ୍ଟାଡିୟମ୍‌ରେ ଗତ ଜୁଲାଇ ୯ ତାରିଖରେ ଉଦ୍‌ଯାପିତ ହୋଇଯାଇଥିବା ଏସିଆନ୍ ଆଥ୍‌ଲେଟିକ୍ସ ଚମ୍ପିଆନ୍‌ସିପ୍ସରେ ୪୪ବର୍ଷ ପରେ ପ୍ରଥମ ଥର ପାଇଁ ଭାରତ ପଦକ ତାଲିକାର ଶୀର୍ଷରେ ରହିଥିଲା । ୧୨ଗୋଟି ସ୍ୱର୍ଣ୍ଣ, ୫ଗୋଟି ରୌପ୍ୟ ଏବଂ ୧୨ଗୋଟି ବ୍ରୋଞ୍ଜ ପଦକ ସହ ସମୁଦାୟ ୨୯ ଗୋଟି ପଦକ ଲାଭ କରି ଭାରତ ପଦକ ତାଲିକାର ଶୀର୍ଷରେ ଉପନୀତ ହେଲା । ଏଥିରେ ୩ଜଣ ଓଡ଼ିଆ ଆଥଲେଟ୍ ଦୂତୀ ଚାନ୍ଦ, ଶ୍ରାବଣୀ ନନ୍ଦ ଏବଂ ପୂର୍ଣ୍ଣିମା ତିନିଗୋଟି ବ୍ରୋଞ୍ଜ ପଦକ ଲାଭ କରିବା ସହ ଓଡ଼ିଶାକୁ ଗୌରୋବାନ୍ୱିତ କରିଥିଲେ ।

ଏସିଆନ୍ ଆଥ୍‌ଲେଟିକ୍ସ ଚମ୍ପିଆନ୍‌ସିପ୍ସର ଉଦ୍‌ଯାପନୀ ଉତ୍ସବରେ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା । ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଆୟୋଜନର ସମାପ୍ତି ଘୋଷଣା କରିଥିଲେ ଏବଂ ଆଗକୁ ୨୦୧୯ରେ ଏହି





ଆୟୋଜନ କାତାରର ଦୋହାଠାରେ ଅନୁଷ୍ଠିତ ହେବାକୁ ଥିବାରୁ କାତାର ଆଥ୍ଲେଟିକ୍ ଫେଡେରେସନ୍‌ର ସେକ୍ରେଟାରୀ ଦହଲାନ୍ ଅଲ୍ ହମାଡ୍‌ଙ୍କୁ ବ୍ୟାଟନ୍ ହସ୍ତାନ୍ତର କରିଥିଲେ । ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ବିଜୟୀ ଭାରତୀୟ ଦଳକୁ ବିଜେତା ଟ୍ରଫି ପ୍ରଦାନ କରିଥିବା ବେଳେ ସେଠାରେ ଉପସ୍ଥିତ ଥିବା ଓଡ଼ିଶା ହାଇକୋର୍ଟର ମାନ୍ୟବର ମୁଖ୍ୟ ବିଚାରପତି ବିନୀତ୍ ଶରଣ ଚୀନ୍ ଦଳକୁ ରନର୍ସଅପ୍ ଟ୍ରଫି ପ୍ରଦାନ କରିଥିଲେ । ଉଦ୍‌ଯାପନୀ ଉତ୍ସବରେ ମାନ୍ୟବର ମୁଖ୍ୟମନ୍ତ୍ରୀ କହିଥିଲେ ଯେ, ଏପରି ଏକ ପ୍ରମୁଖ କାର୍ଯ୍ୟକ୍ରମର ସଫଳ ଆୟୋଜନ ସବୁଦିନ ପାଇଁ ଏସିଆ ସହ ସ୍ୱତନ୍ତ୍ର ସମ୍ପର୍କ ଯୋଡିବା ଦିଗରେ ଓଡ଼ିଶା ପାଇଁ ବିଶେଷ ସହାୟ ହେବ ।




ଉଦ୍‌ଯାପନୀ ଉତ୍ସବ ଅବସରରେ ବିଶିଷ୍ଟ ପଦାଧିକାରୀଙ୍କ ବକ୍ତବ୍ୟ ଉପସ୍ଥାପନ ପରେ ପରେ ମୁମ୍ବାଇର ଜେନିଥ୍ ନୃତ୍ୟ ଦଳ ନୃତ୍ୟ ପରିବେଷଣ କରିଥିଲେ । ଏଥିରେ କିସ୍‌ର ଛାତ୍ରଛାତ୍ରୀମାନେ ମଧ୍ୟ ଭାଗ ନେଇଥିଲେ । ଏହା ପରେ ପରେ ଆକାଶକୁ ଆଲୋକିତ କରି ଚିତ୍ତାକର୍ଷକ ଆତସବାଜୀ ପ୍ରଦର୍ଶିତ ହୋଇଥିଲା । ଏହିପରି ଭାବେ ଓଡ଼ିଶାର ସର୍ବବୃହତ କ୍ରୀଡା କାର୍ଯ୍ୟକ୍ରମର ସଫଳତା ପୂର୍ବକ ସମାପ୍ତି ଘଟିଥିଲା ।

## ପଦକ ତାଲିକା

| ଦେଶ | ସ୍ୱର୍ଣ୍ଣ | ରୌପ୍ୟ | ବ୍ରୋଞ୍ଜ | ସମୁଦାୟ |
|---|---|---|---|---|
| **ଭାରତ** | **୧୨** | **୫** | **୧୨** | **୨୯** |
| ଚୀନ୍ | ୮ | ୯ | ୪ | ୨୧ |
| କାଜାଖସ୍ତାନ୍ | ୪ | ୨ | ୨ | ୮ |
| ଇରାନ୍ | ୪ | ୦ | ୧ | ୫ |
| ଭିଏତ୍‌ନାମ୍ | ୨ | ୨ | ୦ | ୪ |
| ସାଉଥ୍ କୋରିଆ | ୨ | ୧ | ୧ | ୪ |
| କୁଏତ୍ | ୨ | ୧ | ୦ | ୩ |
| କିର୍ଗୀଜ୍‌ସ୍ତାନ୍ | ୨ | ୦ | ୧ | ୩ |
| ଶ୍ରୀଲଙ୍କା | ୧ | ୪ | ୦ | ୫ |
| ଥାଇଲାଣ୍ଡ୍ | ୧ | ୨ | ୨ | ୫ |
| ଫିଲିପାଇନ୍ସ୍ | ୧ | ୧ | ୧ | ୩ |



| ଦେଶ | ସ୍ୱର୍ଣ୍ଣ | ରୌପ୍ୟ | ବ୍ରୋଞ୍ଜ | ସମୁଦାୟ |
|---|---|---|---|---|
| ଚାଇନିଜ୍ ତାଇପେଇ | ୧ | ୧ | ୧ | ୩ |
| ତାଜିକିସ୍ତାନ | ୧ | ୦ | ୦ | ୧ |
| ଉଜ୍‌ବେକିସ୍ତାନ | ୧ | ୦ | ୦ | ୧ |
| କାତାର | ୦ | ୬ | ୧ | ୭ |
| ଜାପାନ | ୦ | ୫ | ୯ | ୧୪ |
| ହଙ୍ଗକଙ୍ଗ | ୦ | ୨ | ୧ | ୩ |
| ୟୁ.ଏ.ଇ. | ୦ | ୧ | ୦ | ୧ |
| ମାଲେସିଆ | ୦ | ୧ | ୦ | ୧ |
| ନର୍ଥ କୋରିଆ | ୦ | ୧ | ୦ | ୧ |
| ସାଉଦି ଆର୍ବିଆ | ୦ | ୦ | ୩ | ୩ |
| ସିରିଆ | ୦ | ୦ | ୧ | ୧ |
| ଓମାନ୍ | ୦ | ୦ | ୧ | ୧ |
| **ସମୁଦାୟ** | **୪୩** | **୪୪** | **୪୧** | **୧୨୮** |







# ଓଡ଼ିଶା : ବିପର୍ଯ୍ୟୟ ପରିଚାଳନାରେ ଭାରତବର୍ଷର ସର୍ବଶ୍ରେଷ୍ଠ ରାଜ୍ୟ

ଓଡ଼ିଶା ମୁଖ୍ୟତଃ ଏକ ବିପର୍ଯ୍ୟୟ ପ୍ରବଣ ରାଜ୍ୟ । ବନ୍ୟା, ବାତ୍ୟା ଓ ମରୁଡି ଭଳି ବିପର୍ଯ୍ୟୟ ଦ୍ୱାରା ଏହା ନିୟମିତଭାବେ ପ୍ରଭାବିତ ହୋଇଥାଏ । ଏମିତି ଗୋଟିଏ ବର୍ଷ ବି ନାହିଁ ଯେଉଁ ବର୍ଷ ଆମ ରାଜ୍ୟରେ କୌଣସି ବଡ ଧରଣର ବିପର୍ଯ୍ୟୟ ଘଟିନାହିଁ ।

୧୯୯୯ ମହାବାତ୍ୟା ପରେ ପରେ ଆମ ସରକାର କ୍ଷମତାକୁ ଆସିଥିଲେ । ଏହାର ଠିକ୍ ପୂର୍ବରୁ ଆବଶ୍ୟକ ପ୍ରସ୍ତୁତି ଅଭାବରୁ ମହାବାତ୍ୟା ଦ୍ୱାରା ପ୍ରଭାବିତ ଅଞ୍ଚଳର ଜନସାଧାରଣ ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଭୋଗିଥିଲେ । ସେହି ଦୃଷ୍ଟିରୁ ରାଜ୍ୟର ଜନସାଧାରଣଙ୍କୁ କିପରି ବିପର୍ଯ୍ୟୟଜନିତ ଦୁଃଖ ଦୁର୍ଦ୍ଦଶାରୁ ରକ୍ଷା କରାଯାଇପାରିବ, ତାହା ଆମ ସରକାରଙ୍କ ନିକଟରେ ପ୍ରାଥମିକତା ଥିଲା । ତେଣୁ ଓଡ଼ିଶାକୁ ଏକ ବିପର୍ଯ୍ୟୟ ପ୍ରତିରୋଧ ରାଜ୍ୟଭାବେ ଗଢି ତୋଳିବା ପାଇଁ ସରକାର ସୁଚିନ୍ତିତ ପଦକ୍ଷେପମାନ ଗ୍ରହଣ କରିଛନ୍ତି ।

ଗତ ୧୭ବର୍ଷ ମଧ୍ୟରେ ବିଭିନ୍ନ ବିପର୍ଯ୍ୟୟକୁ ସାମନା କରିବା ନିମିତ୍ତ ଆବଶ୍ୟକ ସାମର୍ଥ୍ୟ ବୃଦ୍ଧି ପାଇଁ ପଦକ୍ଷେପମାନ ଗ୍ରହଣ କରାଯାଇଅଛି । ୨୦୦୧, ୨୦୦୩, ୨୦୦୬, ୨୦୦୮ ଓ ୨୦୧୧ ମସିହାରେ ଘଟିଥିବା ପ୍ରଳୟଙ୍କରୀ ବନ୍ୟା, ୨୦୧୦, ୨୦୧୧ ଓ ୨୦୧୫ର ମରୁଡି ଓ ୨୦୧୩ ମସିହାରେ ସଂଘଟିତ ଫାଇଲିନ୍ ଏବଂ ୨୦୧୪ ମସିହାରେ ହୁଦ୍‌ହୁଦ୍‌କୁ ଆମ ସରକାର ସଫଳତାର ସହ ମୁକାବିଲା କରିବାରେ ସକ୍ଷମ ହୋଇଛନ୍ତି । ୧୯୯୯ ମସିହାରେ ସଂଘଟିତ ମହାବାତ୍ୟାରେ ପାଖାପାଖି ୧୦,୦୦୦ ଜଣ ବ୍ୟକ୍ତିଙ୍କର ମୃତ୍ୟୁ ହୋଇଥିବା ବେଳେ ୨୦୧୩ ମସିହାରେ ଫାଇଲିନ୍ ବାତ୍ୟା ଯୋଗୁଁ ହୋଇଥିବା ମୃତ୍ୟୁ ସଂଖ୍ୟା ୨୧ରେ ସୀମିତ କରାଯାଇପାରିଛି । ଏଥିପାଇଁ ଦେଶ ବିଦେଶରୁ ଆମ ସରକାରଙ୍କୁ ଭୂୟସୀ ପ୍ରଶଂସା ମିଳିଛି । ଜାତିସଂଘ ମହାସଚିବଙ୍କ ସ୍ୱତନ୍ତ୍ର ପ୍ରତିନିଧି ମାର୍ଗାରେଟ୍ ୱାଲଷ୍ଟମ୍ ଭୁବନେଶ୍ୱର ଆସି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ଏଥିପାଇଁ ସମ୍ବର୍ଦ୍ଧିତ କରିଥିଲେ । ସେହିପରି ଇଣ୍ଡିଆ ଟୁଡେ କ୍ଲବରେ ତତ୍କାଳୀନ ରାଜସ୍ୱ ମନ୍ତ୍ରୀ ଓ ସ୍ୱତନ୍ତ୍ର ରିଲିଫ୍ କମିଶନରଙ୍କୁ ସ୍ୱତନ୍ତ୍ର ଟ୍ରଫି ପ୍ରଦାନ କରିଥିଲେ । ବିଶ୍ୱବ୍ୟାଙ୍କ ମଧ୍ୟ ଏଥିପାଇଁ ସରକାରଙ୍କ କାର୍ଯ୍ୟକୁ ଉଚ୍ଚ ପ୍ରଶଂସା କରିଛନ୍ତି । ତେବେ ଏ ପ୍ରଶଂସା ଦ୍ୱାରା ଆତ୍ମତୃପ୍ତି ପୂର୍ବକ ରାଜ୍ୟ ସରକାର ଶିଥିଳ ନ ହୋଇ ବିପର୍ଯ୍ୟୟ ପ୍ରଶମନ ପ୍ରକ୍ରିୟାକୁ ଅଧିକ ଗତିଶୀଳ କରିବା ପାଇଁ ପ୍ରୟାସ ଜାରି ରଖିଛନ୍ତି ।

**ଜାତୀୟ ବାତ୍ୟା ଆପଦ ପ୍ରଶମନ ପ୍ରକଳ୍ପ**

ଏହି ପ୍ରକଳ୍ପର ବ୍ୟୟ ଅଟକଳ ୭୦୨.୨୦ କୋଟି ଟଙ୍କା ଅଟେ । ବିଶ୍ୱ ବ୍ୟାଙ୍କ ସହାୟତାରେ ଏହି ପ୍ରକଳ୍ପ ଜରିଆରେ ରାଜ୍ୟରେ ବହୁମୁଖୀ ବାତ୍ୟା ଆଶ୍ରୟସ୍ଥଳୀ, ଆଶ୍ରୟସ୍ଥଳୀକୁ ସବୁଦିନିଆ ରାସ୍ତା, ଲୁଣାବନ୍ଧର ସୁଦୃଢୀକରଣ କାର୍ଯ୍ୟମାନ କରାଯାଇଅଛି । ଏହି ପ୍ରକଳ୍ପ ଅଧୀନରେ ସମସ୍ତ ୧୫୪ଟି ବାତ୍ୟା ଆଶ୍ରୟସ୍ଥଳୀର ନିର୍ମାଣକାର୍ଯ୍ୟ ଶେଷ ହୋଇଅଛି । ୧୪୩ଟି ରାସ୍ତା (୨୧୮.୫୦୦କି.ମି.) ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଅଛି । ସେଥିମଧ୍ୟରୁ ୧୩୮ଟି ରାସ୍ତାର (୨୦୭.୬୦୦କି.ମି.) ନିର୍ମାଣ




କାର୍ଯ୍ୟ ଶେଷ ହୋଇଅଛି । ଧାର୍ଯ୍ୟ ଥିବା ୫୮.୨୨୫କି.ମି. ଲୁଣାବନ୍ଧ ମଧ୍ୟରୁ ୫୩.୭୧୫ କି.ମି. ଲୁଣାବନ୍ଧ ସୁଦୃଢୀକରଣ କରାଯାଇଅଛି ।

NCRMP ଅତିରିକ୍ତ ସହାୟତା ଅନୁସାରେ ଆଉ ଅଧିକା ୧୬୨ଟି ବହୁମୁଖୀ ବାତ୍ୟା ଆଶ୍ରୟସ୍ଥଳୀ ଓ ୧୦୦ଟି ସବୁଦିନିଆ ରାସ୍ତା ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଅଛି । ସେଥିମଧ୍ୟରୁ ୮୯ଟି ବହୁମୁଖୀ ବାତ୍ୟା ଆଶ୍ରୟସ୍ଥଳୀ ଏବଂ ୧୩୮.୬୬କି.ମି. ଦୀର୍ଘ ୯୦ ଗୋଟି ରାସ୍ତା ନିର୍ମାଣ କାର୍ଯ୍ୟ ଶେଷ ହୋଇଅଛି । ଏହି ଅତିରିକ୍ତ ସହାୟତାର ବ୍ୟୟ ଅଟକଳ ୪୭୮.୨୭ କୋଟି ଟଙ୍କା ଅଟେ ।

Early Warning Dissemination System (EWDS) : ରାଜ୍ୟର ସମୁଦ୍ର ତଟବର୍ତ୍ତୀ ଅଞ୍ଚଳର ଜନସାଧାରଣମାନଙ୍କୁ ବାତ୍ୟା ଓ ସୁନାମୀର ଆଗୁଆ ସୂଚନା ଦେବା ପାଇଁ ରାଜ୍ୟର ୬ଟି ସମୁଦ୍ର ଉପକୂଳବର୍ତ୍ତୀ ଜିଲ୍ଲାର ୨୨ଟି ବ୍ଲକ୍ ଅଧୀନସ୍ଥ ୧୨୨ଟି ସ୍ଥାନରେ Alert Siren Tower, NCRMP ପ୍ରକଳ୍ପ ଜରିଆରେ ନିର୍ମାଣ କରାଯାଉଅଛି । ଏହି Alert Siren Tower ଜରିଆରେ ଜନସାଧାରଣମାନେ ବାତ୍ୟା ଓ ସୁନାମୀର ଆଗୁଆ ସୂଚନା ଶବ୍ଦ ଓ ସ୍ୱର ମାଧ୍ୟମରେ ପାଇପାରିବେ । ଯାହାଦ୍ୱାରା ଜନସାଧାରଣଙ୍କ ଧନଜୀବନ ହାନୀକୁ ସୀମିତ କରାଯାଇପାରିବ । ଏହିଭଳି ପ୍ରକଳ୍ପ ସାରା ଦେଶରେ ପ୍ରଥମ ଅଟେ ଏବଂ ଏହି ପ୍ରକଳ୍ପ ଆସନ୍ତା ଜୁଲାଇ ମାସ ଶେଷ ସୁଦ୍ଧା କାର୍ଯ୍ୟକ୍ଷମ ହେବାର ଯୋଜନା ରହିଛି ।

Odisha Disaster Recovery Project (ODRP) : ବିଶ୍ୱ ବ୍ୟାଙ୍କ ସହାୟତାରେ ଏହି ପ୍ରକଳ୍ପର ବ୍ୟୟ ଅଟକଳ ୧୧୫୧ କୋଟି ଟଙ୍କା ଅଟେ । ଏହି ପ୍ରକଳ୍ପ ଜରିଆରେ ଫାଇଲିନ୍ ବାତ୍ୟାରେ ଅଧିକ କ୍ଷତିଗ୍ରସ୍ତ ଗଞ୍ଜାମ, ଖୋର୍ଦ୍ଧା ଜିଲ୍ଲାରେ ସମୁଦ୍ର ଉପକୂଳଠାରୁ ୫କି.ମି. ଅଞ୍ଚଳ ମଧ୍ୟରେ ବିପଦସଂକୁଳ ଅବସ୍ଥାରେ ବସବାସ କରୁଥିବା ପରିବାରଙ୍କ ପାଇଁ ୧୬୫୭୨ଟି ବିପର୍ଯ୍ୟୟ ପ୍ରତିରୋଧକ ବାସଗୃହ ନିର୍ମାଣ କରାଯାଉଅଛି । ତନ୍ମଧ୍ୟରୁ ୧୪୫୬୩ଟି ବାସଗୃହର ନିର୍ମାଣ କାର୍ଯ୍ୟ ଶେଷ ହେଲା ପରେ ଏଗୁଡ଼ିକୁ ପରିବାରଙ୍କୁ ହସ୍ତାନ୍ତର କରାଯାଇଛି । ଏହି ବାସଗୃହଗୁଡ଼ିକରେ ବିଦ୍ୟୁତ୍ ସଂଯୋଗ ପ୍ରଦାନ ସହ ଶୌଚାଗାର ସୁବିଧା ଯୋଗାଇ ଦିଆଯାଇଥିବା ବେଳେ ୨୪ ଘଣ୍ଟା ଜଳଯୋଗାଣ ବ୍ୟବସ୍ଥା ମଧ୍ୟ କରାଯାଇଅଛି ।

ରାଜ୍ୟ ସରକାର ପ୍ରଚଣ୍ଡ ଗ୍ରୀଷ୍ମ ପ୍ରବାହର ମୁକାବିଲା ପାଇଁ ସମସ୍ତ ପ୍ରତିକାରମୂଳକ ବ୍ୟବସ୍ଥା ଓ ସଚେତନତା ପଦକ୍ଷେପମାନ ଗ୍ରହଣ କରିଆସୁଛନ୍ତି । ୧୯୯୮ ମସିହାରେ ଅଂଶୁଘାତଜନିତ ମୃତ୍ୟୁ ସଂଖ୍ୟା ୨୦୪୨ ଥିଲାବେଳେ ପରବର୍ତ୍ତୀ ସମୟରେ ଏହି ମୃତ୍ୟୁ ସଂଖ୍ୟାକୁ ସୀମିତ କରାଯାଇପାରିଛି । ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ଅଂଶୁଘାତ ପ୍ରତିଷେଧକ କାର୍ଯ୍ୟଧାରା (Heat Wave Management Action Plan) ଜାତୀୟ ସ୍ତରରେ ଉଚ୍ଚ ପ୍ରଶଂସିତ ହୋଇଅଛି ।

୨୦୧୫ ମସିହାରେ ରାଜ୍ୟରେ ଭୟଙ୍କର ମରୁଡ଼ି ପରିସ୍ଥିତି ସୃଷ୍ଟି ହୋଇଥିଲା । ଏହାକୁ ରାଜ୍ୟ ସରକାର ସଫଳତାର ସହ ମୁକାବିଲା କରିଥିଲେ । ଏଣିକି ରାଜ୍ୟରେ ମରୁଡ଼ି ଘୋଷଣା କରିବା ପାଇଁ ବିଜ୍ଞାନସମତ ପରିମାପକର ବ୍ୟବହାର କରାଯିବ । ଏଗୁଡ଼ିକ ହେଲା – (୧) ବୃଷ୍ଟିପାତର ପରିମାଣ (୨) ଉପଗ୍ରହ ପ୍ରାମାଣିକ ଚିତ୍ର (୩) ମୃତ୍ତିକା ଆର୍ଦ୍ରତା ସୂଚନାଙ୍କ । ଉପରୋକ୍ତ ପରିମାପକଗୁଡ଼ିକ ମୂଲ୍ୟାୟନ ପାଇଁ ରାଜ୍ୟରେ ସମସ୍ତ ଗ୍ରାମପଞ୍ଚାୟତର ମୁଖ୍ୟାଳୟରେ ସ୍ୱୟଂଚାଳିତ ବୃଷ୍ଟିମାପକ ଯନ୍ତ୍ର ୧୦୦କୋଟି ଟଙ୍କା ବ୍ୟୟରେ ସ୍ଥାପନ କରାଯିବ ।

Drought Monitoring Cell : ମରୁଡ଼ି ପରିସ୍ଥିତିର ପରିଚାଳନା ପାଇଁ ରାଜ୍ୟ ସରକାର ଓଏସ୍ଡିଏମ୍ଏ ସଂସ୍ଥାରେ ଏକ Drought Monitoring Cell ଗଠନ କରିଛନ୍ତି ।

ରାଜ୍ୟରେ ବିପର୍ଯ୍ୟୟଜନିତ ପରିସ୍ଥିତିର ସୁପରିଚାଳନା ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ସର୍ବଦା ପ୍ରାଥମିକତା ଦେଇଆସିଛନ୍ତି । ରାଜ୍ୟ ସରକାରଙ୍କର ଏହି ସୁଚିନ୍ତିତ ପ୍ରୟାସ ଆଗାମୀ ଦିନମାନଙ୍କରେ ମଧ୍ୟ ଜାରି ରହିବ ।



# କ୍ରୀଡ଼ା ଓ ଯୁବ ସେବା ବିଭାଗର ସଫଳତା

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ରାଜ୍ୟ ସରକାର କ୍ରୀଡାର ବିକାଶ ଏବଂ ଯୁବ ସଶକ୍ତିକରଣ ଦିଗରେ ଗୁରୁତ୍ୱ ଦେଇଆସୁଛନ୍ତି ।

ରାଜ୍ୟ ସରକାରଙ୍କର ବହୁମୁଖୀ କାର୍ଯ୍ୟପନ୍ଥା ହେତୁ, ବିଗତ କିଛିବର୍ଷ ମଧ୍ୟରେ ଭୁବନେଶ୍ୱର ବିଶ୍ୱ କ୍ରୀଡା ମାନଚିତ୍ରରେ ଏକ ପ୍ରମୁଖ କ୍ରୀଡାସ୍ଥଳୀ ଭାବେ ସ୍ଥାନ ପାଇପାରିଅଛି ।

୬ରୁ ୯ ତାରିଖ ଜୁଲାଇ ୨୦୧୭ ମଧ୍ୟରେ ୨୨ତମ ଏସିଆନ୍ ଆଥ୍‌ଲେଟିକ୍ସ ଚମ୍ପିଆନ୍‌ସିପ୍ସ ୨୦୧୭, ଭୁବନେଶ୍ୱରରେ ଆୟୋଜିତ ହୋଇଯାଇଛି । ଏଥିରେ ୪୫ଟି ଦେଶର ୧,୨୦୦ ଖେଳାଳି ଏବଂ ଆୟୋଜନକାରୀ ଭାଗ ନେଇଥିଲେ ।

କଳିଙ୍ଗ ଷ୍ଟାଡିୟମରେ ଥିବା ବିଶ୍ୱସ୍ତରୀୟ ହକି କମ୍ପ୍ଲେକ୍ସଠାରେ ୮ଗୋଟି ଦେଶକୁ ନେଇ ୬ରୁ ୧୪ ତାରିଖ ଡିସେମ୍ବର ୨୦୧୪ରେ ହକି ଚମ୍ପିୟାନସିପ୍ ସଫଳତାର ସହ ଆୟୋଜନ କରାଯାଇଥିଲା ।

ଆସନ୍ତା ୨୦୧୭ ଡିସେମ୍ବର ମାସ (୬ରୁ ୧୪ତାରିଖ) ଆନ୍ତର୍ଜାତିକ ହକି ବିଶ୍ୱ ଲିଗ୍ (ପୁରୁଷ) ବିଭାଗ ଏବଂ ଏଫ୍‌ଆଇଏଚ୍ ୱାର୍ଲ୍ଡ କପ୍–୨୦୧୮ (ତା. ୨୮ ନଭେମ୍ବରରୁ ୧୬ ଡିସେମ୍ବର ୨୦୧୮ ମଧ୍ୟରେ) ଭୁବନେଶ୍ୱରଠାରେ ଆୟୋଜିତ ହେବାକୁ ଯାଉଅଛି ।

ଏହି ସ୍ଥାନରେ ବାର୍ଷିକ ହକି ଇଣ୍ଡିଆ ଲିଗ୍ ମଧ୍ୟ ଆୟୋଜନ କରାଯାଉଅଛି । ଏହା ମଧ୍ୟ ଗର୍ବର ବିଷୟ ଯେ ରାଜ୍ୟ ସରକାରଙ୍କ 'କଳିଙ୍ଗ ଲ୍ୟାନ୍‌ସରସ୍' ଦଳ ୨୦୧୭ରେ ଚମ୍ପିୟାନ୍‌ସିପ୍ ଆଖ୍ୟା ଅର୍ଜନ କରିଥିଲା ।

ଓଡ଼ିଶା ସରକାର ରାଜ୍ୟରେ କ୍ରୀଡା ଓ କ୍ରୀଡା ଭିତ୍ତିଭୂମିର ବିକାଶ ନିମନ୍ତେ ଏବଂ ବିଭିନ୍ନ କ୍ରୀଡା ବର୍ଗରେ କୃତି କ୍ରୀଡାବିତ୍ ପ୍ରସ୍ତୁତ କରିବା ପାଇଁ ସର୍ବଦା ଉଦ୍ୟମରତ । ରାଜ୍ୟସ୍ତରୀୟ, ଜିଲ୍ଲାସ୍ତରୀୟ ଏବଂ ବ୍ଲକ୍ ସ୍ତରରେ କ୍ରୀଡା ଭିତ୍ତିଭୂମିର ବିକାଶ ପାଇଁ ନିମ୍ନଲିଖିତ ଉଦ୍ୟମ କରାଯାଉଅଛି ।

**୧. କଳିଙ୍ଗ ସ୍ପୋର୍ଟସ୍ କମ୍ପ୍ଲେକ୍ସ: ହକି ଏବଂ ଦୌଡକୁଦ ପାଇଁ ବିଶ୍ୱସ୍ତରୀୟ ଭିତ୍ତିଭୂମିର ବିକାଶ କରାଯାଇଅଛି ।**

ଏହି ଭିତ୍ତିଭୂମିର ଉନ୍ନତିକରଣ ପ୍ରାଥମିକତାର ସହ କରାଯାଉଅଛି ।

୨୦୧୫ ମସିହାରେ ନିର୍ମିତ ସୁଟିଙ୍ଗ୍ ରେଞ୍ଜର ସଂପ୍ରସାରଣ କାର୍ଯ୍ୟ ଚାଲୁଅଛି ।

କଳିଙ୍ଗ ଷ୍ଟାଡିୟମ୍‌ଠାରେ ଆନ୍ତର୍ଜାତିକ କ୍ରୀଡା ଛାତ୍ରାବାସ, ସ୍କ୍ୱାସ୍ କୋର୍ଟ ଏବଂ ଫୁଡ୍ କୋର୍ଟର ନିର୍ମାଣ, ହକି କମ୍ପ୍ଲେକ୍ସରେ ଗ୍ୟାଲେରୀ ନିର୍ମାଣ, ମୁଖ୍ୟ ଷ୍ଟାଡିୟମ୍‌ଠାରେ ବୃହତ୍ ଆଲୋକ ବ୍ୟବସ୍ଥା କରାଯାଉଅଛି ।

୨୦୨୦ ମସିହା ଅଲିମ୍ପିକରେ 'କ୍ଷିପ୍ର ଆରୋହଣ'କୁ ଏକ କ୍ରୀଡାଭାବେ ସ୍ଥାନିତ କରାଯିବାକୁ ସ୍ଥିରୀକୃତ ହୋଇଥିବା ବେଳେ ଏହାକୁ ଲକ୍ଷ୍ୟ ରଖି ୨୦୧୭ ମସିହା ସୁଦ୍ଧା କଳିଙ୍ଗ ଷ୍ଟାଡିୟମ୍ ପରିସରରେ ୩.୭ କୋଟି ଟଙ୍କା ବ୍ୟୟରେ ଏକ ଅନ୍ତର୍ଜାତୀୟ ମାନର 'କ୍ଷିପ୍ର ଆରୋହଣ ପାଇଁ କ୍ରୀଡା ଭିତ୍ତିଭୂମି', ଯାହାକି ଆଇଏଫ୍ଏସ୍ସି (ଅନ୍ତଃରାଷ୍ଟ୍ରୀୟ କ୍ଷିପ୍ର ଆରୋହଣ ଫେଡେରେସନ୍) ଦ୍ୱାରା ଅନୁମୋଦିତ ଓ ପ୍ରତିଷ୍ଠା ପାଇଁ ଲକ୍ଷ୍ୟ ରଖାଯାଇଅଛି ।

**୨. ରାଜ୍ୟର ମୁଖ୍ୟ ସହରମାନଙ୍କରେ ସମନ୍ୱିତ କ୍ରୀଡା ପ୍ରାଙ୍ଗଣର ବିକାଶ**

ଜୟପୁର, ବ୍ରହ୍ମପୁର, ଭବାନୀପାଟଣା, ବାଲେଶ୍ୱର, ରାଉରକେଲା ଏବଂ ବାରିପଦାଠାରେ ସମନ୍ୱିତ କ୍ରୀଡା ପ୍ରାଙ୍ଗଣର ନିର୍ମାଣ ପାଇଁ ଯୋଜନା ଅଛି । ଏଥିରେ ବହୁମୁଖୀ ସନ୍ତରଣାଗାର ଏବଂ ଅନ୍ୟାନ୍ୟ ଖେଳର ବ୍ୟବସ୍ଥା ସହିତ ପ୍ରଶିକ୍ଷଣ, ପ୍ରଶାସନିକ କାର୍ଯ୍ୟାଳୟ ଓ ସଭାଗୃହ ପ୍ରତିଷ୍ଠା କରାଯିବା ପାଇଁ ସ୍ଥିର କରାଯାଇଅଛି ।

୩. ଉତ୍କର୍ଷତା ପାଇଁ ରାଜ୍ୟସ୍ତରୀୟ ଏକାଡେମୀ ଯଥା ଗୋପାଳପୁରଠାରେ ଭାରୋତ୍ତୋଳନ ଏକାଡେମୀ, ସୁନ୍ଦରଗଡଠାରେ ତୀରନ୍ଦାଜି ଏକାଡେମୀ ଏବଂ ରାଜ୍ୟ ଫୁଟ୍‌ବଲ୍ ଏକାଡେମୀର ପ୍ରତିଷ୍ଠା କରାଯିବ ।

୪. ଆଞ୍ଚଳିକ ବ୍ୟାଡ୍‌ମିଣ୍ଟନ ଏକାଡେମୀର ମିଳିତ ସହଯୋଗରେ ଇନ୍‌ଡୋର ହଲ୍, ସହିଦ୍ ନଗରଠାରେ ଆରମ୍ଭ କରାଯାଇଅଛି ।

**୫. ଜିଲ୍ଲାସ୍ତରୀୟ ଭିତ୍ତିଭୂମିର ବିକାଶ :**

ସମସ୍ତ ୩୦ଟି ଜିଲ୍ଲା ସଦରମହକୁମାଠାରେ ସନ୍ତରଣାଗାର ପ୍ରତିଷ୍ଠା କରାଯିବା ପାଇଁ ସ୍ଥିରୀକୃତ ହୋଇଅଛି (ବର୍ତ୍ତମାନ–୨, ଅନୁମୋଦିତ–୬) ।

୭,୩୫,୭୦,୦୦୦ ଟଙ୍କାରେ ନିର୍ମିତ ସମ୍ବଲପୁରଠାରେ ଥିବା ସନ୍ତରଣାଗାର ୨୦୧୬ ମସିହାରୁ ଆରମ୍ଭ କରାଯାଇଅଛି ।

ବୁର୍ଲାଠାରେ ୨୮.୮୧୦ ଏକର ସ୍ଥାନରେ ଏକ କ୍ରୀଡା ପ୍ରାଙ୍ଗଣ ପ୍ରତିଷ୍ଠା ପାଇଁ ୭୪ କୋଟି ଟଙ୍କାର ବ୍ୟୟବରାଦ କରାଯାଇଅଛି ।

୨୦୧୩–୧୪ରୁ ୨୦୧୬–୧୭ ବର୍ଷ ମଧ୍ୟରେ ଜିଲ୍ଲାସ୍ତରରେ ନୂତନ କ୍ରୀଡା ଭିତ୍ତିଭୂମି ଏବଂ ପୁନର୍ନିର୍ମାଣ ନିମନ୍ତେ ଟ.୮୦.୪୭ କୋଟି ମଞ୍ଜୁର କରାଯାଇଅଛି ।

**୬. ବ୍ଲକ୍ ଓ ସହରାଞ୍ଚଳରେ କ୍ଷୁଦ୍ର–କ୍ରୀଡାଙ୍ଗନ ଯୋଜନା**

ଏହି ଯୋଜନା ମାଧ୍ୟମରେ ରାଜ୍ୟର ସମସ୍ତ ବ୍ଲକ୍ ଓ ସହରାଞ୍ଚଳ ପୌର ପରିଷଦମାନଙ୍କରେ ୨୫ ଲକ୍ଷ ଟଙ୍କା ବ୍ୟୟରେ କ୍ଷୁଦ୍ର କ୍ରୀଡାଙ୍ଗନ ପ୍ରତିଷ୍ଠା ପାଇଁ ଲକ୍ଷ୍ୟ ରଖାଯାଇଛି, ଯେଉଁଥିରେ ୨୦ ଲକ୍ଷ ରାଜ୍ୟ ସରକାର ଏବଂ ୫ଲକ୍ଷ ଏମ୍‌ପି/ଏମ୍ଏଲ୍ଏ ଏଲ୍ଏଡି ମାଧ୍ୟମରେ ବିନିଯୋଗ ହୋଇଥାଏ । ୨୦୧୬–୧୭ ମସିହା ସୁଦ୍ଧା ସମସ୍ତ ୩୧୪ ବ୍ଲକ୍ ଏଥିରେ ଅନ୍ତର୍ଭୁକ୍ତ । ୨୦୧୭–୧୮ ଆର୍ଥିକ ବର୍ଷରେ ସମସ୍ତ ୧୧୧ ସହରାଞ୍ଚଳ ପୌର ପରିଷଦ ଅନ୍ତର୍ଭୁକ୍ତ କରାଯିବାର ଯୋଜନା କରାଯାଇଅଛି । ଅଦ୍ୟାବଧି ୭୭.୪୦ କୋଟି ଟଙ୍କା ବ୍ୟୟବରାଦ କରାଯାଇ ୩୧୪ (ଗ୍ରାମାଞ୍ଚଳ)+ ୭୮ (ସହରାଞ୍ଚଳ) ପ୍ରକଳ୍ପ ଅନ୍ତର୍ଭୁକ୍ତ ହୋଇଅଛି । ୨୦୧୭–୧୮ ଆର୍ଥିକ ବର୍ଷରେ ୧୦୦ଟି ନିର୍ମିତ ପ୍ରକଳ୍ପରେ ୧୫ଲକ୍ଷ ଟଙ୍କାରେ ନୂତନ ଇନ୍‌ଡୋର ହଲ୍, ଟଏଲେଟ୍ ଏବଂ ଓପନ୍ ଜିମ୍ ପ୍ରତିଷ୍ଠା କରାଯିବା ପାଇଁ ଯୋଜନା କରାଯାଇଅଛି ।

**୭.** ୨୦୧୭–୧୮ ଆର୍ଥିକ ବର୍ଷରେ ଏକ ନୂତନ ପରିଯୋଜନା–କ୍ରୀଡା କ୍ଷେତ୍ରରେ ଆନ୍ତର୍ଜାତିକ କୃତିତ୍ୱ ହାସଲ ନିମନ୍ତେ ପ୍ରଚେଷ୍ଟା (ସ୍ୱର୍ଣ୍ଣ) । ତୃଣମୂଳ ସ୍ତରରେ କ୍ରୀଡା ଭିତ୍ତିଭୂମିର ବିକାଶ ଓ ପରିଚାଳନା ନିମନ୍ତେ ଏହି ଯୋଜନାରେ ପ୍ରାରମ୍ଭିକ ଖର୍ଚ୍ଚଭାବେ ୯୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଅଛି ।



ଉଦୀୟମାନ କ୍ରୀଡା ପ୍ରତିଭାଙ୍କ ବିକାଶ ନିମନ୍ତେ ଏବଂ ସେମାନଙ୍କ ପାଇଁ ଏକ ସହଯୋଗୀ ବାତାବରଣ ସୃଷ୍ଟି କରି ବିଶ୍ୱସ୍ତରୀୟ ଖେଳାଳି ତିଆରି କରିବା ପାଇଁ ନିମ୍ନଲିଖିତ ଉଦ୍ୟମ କରାଯାଉଅଛି ।

**୧. ପ୍ରତିଭା ଅନ୍ୱେଷଣ ଏବଂ କ୍ରୀଡା ଛାତ୍ରାବାସରେ ପ୍ରବେଶ**

ରାଜ୍ୟର ୧୫ଟି ଜିଲ୍ଲାରେ ୧୬ଟି କ୍ରୀଡା ଛାତ୍ରାବାସ କାର୍ଯ୍ୟକ୍ଷମ ଅଛି । ୧୧ଟି କ୍ରୀଡା ଶୃଙ୍ଖଳାରେ ମୋଟ୍ ୧,୨୫୦ କ୍ରୀଡା ଅନ୍ତେବାସୀ (୯୫୦ ବାଳକ ଓ ୩୦୦ ବାଳିକା)ଙ୍କ ପାଇଁ ବ୍ୟବସ୍ଥା ଅଛି । ବାର୍ଷିକ ପ୍ରତିଭା ଅନ୍ୱେଷଣ ଓ ସିଧାସଳଖ ପ୍ରବେଶ ମାଧ୍ୟମରେ କ୍ରୀଡା ଛାତ୍ରାବାସ ପାଇଁ ଚୟନ କରାଯାଇଥାଏ । ନବ ପ୍ରତିଭାଙ୍କ ପ୍ରବେଶ ନିମନ୍ତେ ୧୨ବର୍ଷ ଏବଂ ସିଧାସଳଖ ପ୍ରବେଶ ନିମନ୍ତେ ୨୦ ବର୍ଷ ବୟସ ସ୍ଥିର ହୋଇଅଛି । ଉଚିତ୍ ପ୍ରଦର୍ଶନ ଜରିଆରେ ଜଣେ ପ୍ରତିଯୋଗୀ କ୍ରୀଡା ଛାତ୍ରାବାସରେ ୨୫ବର୍ଷ ବୟସ ପର୍ଯ୍ୟନ୍ତ ନିରନ୍ତର ରହିପାରିବ ।

**୨. କ୍ରୀଡା ଛାତ୍ରାବାସମାନଙ୍କରେ ଉତ୍କର୍ଷ ତାଲିମର ବ୍ୟବସ୍ଥା**

ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରର ପ୍ରତିଷ୍ଠିତ ପ୍ରଶିକ୍ଷକଙ୍କ ଦ୍ୱାରା ରାଜ୍ୟର କ୍ରୀଡା ଛାତ୍ରାବାସରେ କାର୍ଯ୍ୟରତ ପ୍ରଶିକ୍ଷକ ଏବଂ କ୍ରୀଡା ଅନ୍ତେବାସୀଙ୍କ ନିମନ୍ତେ ତାଲିମ/ଶିକ୍ଷା କାର୍ଯ୍ୟକ୍ରମର ବ୍ୟବସ୍ଥା ଅଛି । ବାର୍ଷିକ ବ୍ୟୟବରାଦ ୨କୋଟି ଟଙ୍କା କରାଯାଇଅଛି ।

**୩. ରାଜ୍ୟ କ୍ରୀଡା ଆୟୋଜନ ନିମନ୍ତେ ଆର୍ଥିକ ବ୍ୟବସ୍ଥା**

୨୦୧୮-୧୯ ମସିହାରୁ ପ୍ରତି ୨ବର୍ଷରେ ଥରେ ଆୟୋଜନ କରାଯିବ, ଯାହାର ବ୍ୟୟବରାଦ ୪କୋଟି ଟଙ୍କା ଅଟେ ।

**୪. ବାର୍ଷିକ ଜନଜାତି କ୍ରୀଡା**

ଜନଜାତି ଯୁବଗୋଷ୍ଠୀ ମଧ୍ୟରେ କ୍ରୀଡା ପ୍ରତିଭାର ଅନ୍ୱେଷଣ

ଦ୍ୱିସ୍ତରୀୟ ଆୟୋଜନର ବ୍ୟବସ୍ଥା, ଜିଲ୍ଲାସ୍ତରୀୟ-ରାଜ୍ୟସ୍ତରୀୟ

ବାର୍ଷିକ ବ୍ୟୟବରାଦ ୪କୋଟି ଟଙ୍କା

**୫. ଆନ୍ତର୍ଜାତିକ କ୍ରୀଡାରେ ଭାଗ ନେବା ପାଇଁ ଆର୍ଥିକ ସହାୟତା, ଉଚ୍ଚତର ତାଲିମ ଏବଂ ପ୍ରଶିକ୍ଷଣ**

ଦେଶ ମଧ୍ୟରେ ଓ ଦେଶ ବାହାରେ ତାଲିମ ନେବା ନିମନ୍ତେ ଆର୍ଥିକ ସହାୟତା ପ୍ରଦାନ ।

ଦେଶ ବାହାରେ ତାଲିମ ନିମନ୍ତେ ସର୍ବାଧିକ ୫୦ ଲକ୍ଷ ଟଙ୍କାର ସହାୟତା ବିଶେଷଜ୍ଞ କମିଟିର ଆକଳନରେ ପ୍ରଦାନ କରାଯିବ ।

ଏହି ବ୍ୟବସ୍ଥାରେ ସବ୍-ଜୁନିୟରବର୍ଗଠାରୁ ଆରମ୍ଭ କରି ସିନିୟରବର୍ଗ ସାମିଲ ହେବେ ।

ବାର୍ଷିକ ବ୍ୟୟବରାଦ ୩.୮୦ କୋଟି ଟଙ୍କା କରାଯାଇଅଛି ।

**୬. କୃତି କ୍ରୀଡାବିତ୍‌ଙ୍କୁ ଆର୍ଥିକ ପ୍ରୋତ୍ସାହନ ଓ ପୁରସ୍କାର ବ୍ୟବସ୍ଥା**

ଅଲିମ୍ପିକରେ ସ୍ୱର୍ଣ୍ଣ ପଦକ ବିଜେତାଙ୍କ ପାଇଁ ଆର୍ଥିକ ପ୍ରୋତ୍ସାହନ ୧କୋଟି ଟଙ୍କାକୁ ବୃଦ୍ଧି (ବ୍ୟକ୍ତିଗତ ଖେଳ କ୍ଷେତ୍ର ପାଇଁ) କରାଯାଇଅଛି ତଥା ଦଳଗତ ଖେଳ ବର୍ଗରେ ଏହାର ୫୦% ଦିଆଯାଉଅଛି । ଗତ ୩ ବର୍ଷ ମଧ୍ୟରେ ମୋଟ୍ ୮୯୬ ଜଣ କ୍ରୀଡାବିତ୍‌ଙ୍କୁ (ଭିନ୍ନକ୍ଷମ କ୍ରୀଡାବିତ୍‌ଙ୍କୁ ମିଶାଇ) ମୋଟ୍ ୪.୦୧ କୋଟି ଟଙ୍କାର ଆର୍ଥିକ ପ୍ରୋତ୍ସାହନ ଦିଆଯାଇଅଛି ।



୨୦୧୬-୧୭ ଆର୍ଥିକ ବର୍ଷରେ ୪୫୫ଜଣ କ୍ରୀଡାବିତ୍ ଏବଂ ୨ଜଣ ପ୍ରଶିକ୍ଷକଙ୍କୁ ମୋଟ୍ ୧,୪୮,୬୧,୫୦୦/- କୋଟି ଟଙ୍କାର ଆର୍ଥିକ ପୁରସ୍କାର ଦିଆଯାଇଅଛି ।

**୭. କ୍ରୀଡାବିତ୍‌ମାନଙ୍କୁ ଓଡ଼ିଶା ପୋଲିସ୍‌ରେ ସିଧାସଳଖ ନିଯୁକ୍ତି**

କୃତି କ୍ରୀଡାବିତ୍‌ମାନଙ୍କୁ ରାଷ୍ଟ୍ରୀୟ ଓ ଆନ୍ତଃରାଷ୍ଟ୍ରୀୟ କ୍ରୀଡା ପ୍ରତିଯୋଗିତାରେ ଉଚ୍ଚ ପ୍ରଦର୍ଶନ କରିବା ନିମନ୍ତେ ଉତ୍ସାହିତ କରିବା ପାଇଁ ସଫଳତା ମାନଦଣ୍ଡଙ୍କୁ ଆଧାର କରି ଓଡ଼ିଶା ପୋଲିସର 'ଗ୍ରୁପ୍-ଏ', 'ଗ୍ରୁପ୍-ବି' ଓ 'ଗ୍ରୁପ୍-ସି' ସ୍ତରରେ ସିଧାସଳଖ ନିଯୁକ୍ତି ଦିଆଯାଇଥାଏ । ଅଦ୍ୟାବଧି ୬୦ ଜଣ କୃତି କ୍ରୀଡାବିତ୍‌ଙ୍କୁ ଓଡ଼ିଶା ପୋଲିସ ବିଭାଗରେ ନିଯୁକ୍ତି ଦିଆଯାଇଛି । ୨୦୧୦ ମସିହା ରାଜ୍ୟ ଗୋଷ୍ଠୀ କ୍ରୀଡାରେ ସ୍ୱର୍ଣ୍ଣ ପଦକପ୍ରାପ୍ତ ଆନ୍ତର୍ଜାତିକ ଭାରୋତ୍ତୋଳକ ଶ୍ରୀ କେ. ରବି କୁମାରଙ୍କୁ ସିଧାସଳଖ ଡି.ଏସ୍.ପି ପାହ୍ୟାରେ ଅବସ୍ଥାପିତ କରାଯାଇଅଛି ।

**୮. କୃତି କ୍ରୀଡାବିତ୍‌ମାନଙ୍କୁ ରାଜ୍ୟ ସରକାରୀ ଅନୁଷ୍ଠାନ/ସରକାରୀ ଉଦ୍ୟୋଗମାନଙ୍କରେ ନିଯୁକ୍ତି**

ସରକାରୀ ଅନୁଷ୍ଠାନ/ସରକାରୀ ଉଦ୍ୟୋଗମାନଙ୍କରେ କୃତି କ୍ରୀଡାବିତ୍‌ମାନଙ୍କୁ ନିଯୁକ୍ତି ଦେବା ନିମନ୍ତେ ସରକାରୀ ବିଜ୍ଞପ୍ତି ପ୍ରକାଶ କରାଯାଇଅଛି । ୨୦୧୬ ବର୍ଷରେ ରାଜ୍ୟର ୨ଜଣ କୃତି ପ୍ରତିଯୋଗୀ ସୁଶ୍ରୀ ଶ୍ରାବଣୀ ନନ୍ଦ ଓ ସୁଶ୍ରୀ ଦୁତୀ ଚାନ୍ଦଙ୍କୁ ଓଏଚ୍‌ପିସି ଏବଂ ଓଏମ୍‌ସିରେ ନିଯୁକ୍ତି ଦିଆଯାଇଅଛି ।

**୯. କ୍ରୀଡା ସଂଘମାନଙ୍କୁ ସହାୟତା**

କ୍ରୀଡା ସଂଘମାନଙ୍କୁ ଅନୁଦାନ ପାଇଁ ବାର୍ଷିକ ବ୍ୟୟବରାଦ ୧କୋଟି ଟଙ୍କାକୁ ବୃଦ୍ଧି କରାଯାଇଅଛି । ୨୦୧୬-୧୭ ଆର୍ଥିକ ବର୍ଷରେ ରାଜ୍ୟ ଓ ଜିଲ୍ଲାସ୍ତରୀୟ କ୍ରୀଡା ସଂଘମାନଙ୍କୁ ଟ.୮୨.୫ ଲକ୍ଷର ଆର୍ଥିକ ସହାୟତା ଦିଆଯାଇଅଛି । ରାଷ୍ଟ୍ରୀୟ ଓ ଆନ୍ତଃରାଷ୍ଟ୍ରୀୟ ସ୍ତରୀୟ କ୍ରୀଡାର ଆୟୋଜନ ନିମନ୍ତେ କ୍ରୀଡା ସଂଘମାନଙ୍କୁ ଟ. ୨୧.୫ ଲକ୍ଷର ଅନୁଦାନ ଦିଆଯାଇଅଛି । ଏହି ଅନୁଦାନ ସଂଘର ସାଧାରଣ କାର୍ଯ୍ୟ, କ୍ରୀଡା ସାମଗ୍ରୀ କ୍ରୟ ଏବଂ ରାଷ୍ଟ୍ରୀୟ ଓ ଆନ୍ତଃରାଷ୍ଟ୍ରୀୟ ସ୍ତରୀୟ ପ୍ରତିଯୋଗିତା ଏବଂ ପ୍ରଶିକ୍ଷଣ ନିମନ୍ତେ ଦିଆଯାଇଥାଏ ।

**୧୦. କ୍ରୀଡା ପେନ୍‌ସନ୍ (ଅବସରକାଳୀନ ଭତ୍ତା)**

୧୭୦ ଜଣ ଆର୍ଥିକ ଅନଗ୍ରସର କ୍ରୀଡାବିତ୍‌ଙ୍କୁ ମାସିକ ୨,୦୦୦ ଟଙ୍କା ହିସାବରେ ଅବସରକାଳୀନ ଭତ୍ତା ପ୍ରଦାନ କରାଯାଉଅଛି ।

**୧୧. ଓଡ଼ିଶା କ୍ରୀଡା ବିକାଶ ପାଣ୍ଠି**

ବଜେଟ୍‌ରେ ଅନ୍ତର୍ଭୁକ୍ତ ହୋଇନଥିବା କ୍ରୀଡା ବିଷୟମାନଙ୍କରେ ସହାୟତା ନିମନ୍ତେ ଓଡ଼ିଶା କ୍ରୀଡା ବିକାଶ ପାଣ୍ଠିର ବ୍ୟବସ୍ଥା କରାଯାଇଅଛି ।

**ଓଡ଼ିଶା ରାଜ୍ୟ ଯୁବନୀତି**

ଓଡ଼ିଶା ରାଜ୍ୟ ଯୁବନୀତି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ୭ ଅପ୍ରେଲ ୨୦୧୩ ମସିହାରେ ଆରମ୍ଭ କରାଯାଇଥିଲା । ରାଜ୍ୟର ଯୁବବର୍ଗଙ୍କ ପାଇଁ ସୁଯୋଗ, ଅଭିଜ୍ଞତା ଓ ଦକ୍ଷତା ବୃଦ୍ଧି ସକାଶେ ରାଜ୍ୟ ଯୁବନୀତି ୨୦୧୩ର ପରିକଳ୍ପନା କରାଯାଇଅଛି । ଏହି ନୀତିରେ ୯ଟି ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ର ମାଧ୍ୟମରେ ୭୪ଟି ମାର୍ଗଦର୍ଶିକା ତିଆରି ହୋଇଅଛି, ଯାହାକି ୨୨ଟି ସରକାରୀ ବିଭାଗ କାର୍ଯ୍ୟକାରୀ କରିଆସୁଛନ୍ତି ।



**୧. ସକ୍ରିୟ ନାଗରିକତା କାର୍ଯ୍ୟକ୍ରମ**

ଏହି କାର୍ଯ୍ୟକ୍ରମକୁ ଯୁବନୀତିର ଏକ ଅଂଶ ମାଧ୍ୟମରେ ୨୦୧୪-୧୫ ମସିହାରୁ ପରିଚାଳନା କରାଯାଉଅଛି, ଯେଉଁଥିରେ ବାର୍ଷିକ ୪କୋଟି ଟଙ୍କାର ବ୍ୟୟବରାଦର ବ୍ୟବସ୍ଥା ଅଛି । ଏହି କାର୍ଯ୍ୟକ୍ରମକୁ ଦୃଶ୍ୟଚିତ୍ର ମାଧ୍ୟମରେ ବିଭିନ୍ନ ବିଷୟ ଯଥା ନାରୀ ସମ୍ମାନ, ନିଶାମୁକ୍ତି, ଭିନ୍ନକ୍ଷମଙ୍କ ପ୍ରତି ଉଦାରଭାବ, ଦେଶପ୍ରେମ ଓ ସୁନାଗରିକତା ସମ୍ବନ୍ଧୀୟ ଚିତ୍ରଣ କରାଯାଏ । ପ୍ରତିବର୍ଷ ସମସ୍ତ କଲେଜ୍‌ମାନଙ୍କରେ ଏହା ପରିଦର୍ଶିତ କରାଯାଏ ଏବଂ ୬ଲକ୍ଷ ଛାତ୍ରଛାତ୍ରୀ ଏଯାବତ୍ ଉପକୃତ ହୋଇପାରିଛନ୍ତି । ଟେକ୍ନିକାଲ୍ ସପୋର୍ଟ ୟୁନିଟ୍ ମାଧ୍ୟମରେ ଏବଂ ୟୁଏନ୍‌ଏଫ୍‌ପିଏର ସହଭାଗିତାରେ ଏହି କାର୍ଯ୍ୟକ୍ରମ ପରିଚାଳନ କରାଯାଏ । ୨୦୧୭-୧୮ ଆର୍ଥିକ ବର୍ଷରୁ ସକ୍ରିୟ ନାଗରିକତା କାର୍ଯ୍ୟକ୍ରମକୁ ଅଧିକ କ୍ରିୟାଶୀଳ କରିବା ସହ ଯୁବଗୋଷ୍ଠୀ ଏବଂ ସଂଘ ମାଧ୍ୟମରେ ସାମାଜିକ ବିକାଶ ପ୍ରକଳ୍ପମାନ ହାତକୁ ନେବା ପାଇଁ ଏକ ନୂତନ ଯୋଜନା ପ୍ରସ୍ତୁତ କରାଯାଇଅଛି, ଯେଉଁଥିରେ କି ବାର୍ଷିକ ୧୨କୋଟି ଟଙ୍କାର ବ୍ୟୟବରାଦ ଯୋଜନା ଅଛି ।

**୨. ଦୁଃସାହସିକ କାର୍ଯ୍ୟକ୍ରମ ବିକାଶ ଯୋଜନା**

ରାଜ୍ୟ ଯୁବନୀତି ଅନ୍ତର୍ଗତ ଏହି ଯୋଜନା ମାଧ୍ୟମରେ ଉଭୟ ରାଜ୍ୟ ମଧ୍ୟରେ ଏବଂ ରାଜ୍ୟ ବାହାରେ ଯୁବକମାନଙ୍କୁ ଦୁଃସାହସିକ କାର୍ଯ୍ୟକ୍ରମରେ ସାମିଲ୍ କରାଯାଉଅଛି । ବାର୍ଷିକ ୧.୮୦ କୋଟି ବ୍ୟୟବରାଦର ବ୍ୟବସ୍ଥା ୨୦୧୪-୧୫ ମସିହାରୁ କରାଯାଉଅଛି, ଯଦ୍ୱାରା ୫୦ରୁ ଊର୍ଦ୍ଧ୍ୱ ଦୁଃସାହସିକ କାର୍ଯ୍ୟକ୍ରମରେ ୧୦,୦୦୦ରୁ ଊର୍ଦ୍ଧ୍ୱ ଯୁବକଙ୍କୁ ସାମିଲ କରାଯାଇଅଛି । ଗତ ଦୁଇ ବର୍ଷରେ ମାଉଣ୍ଟ୍ ଏଭରେଷ୍ଟ୍ ଏବଂ ମହାଦେଶୀୟ ସର୍ବୋଚ୍ଚ ଶିଖର ଲଙ୍ଘିଥିବା ୪ଜଣ ପର୍ବତାରୋହଣକାରୀଙ୍କୁ ୩୧ ଲକ୍ଷ ଟଙ୍କାର ଆର୍ଥିକ ପ୍ରୋତ୍ସାହନ ଦିଆଯାଇଅଛି ।

**୩. ବିଜୁ ପଟ୍ଟନାୟକ ହିମାଳୟ ଅଭିଯାନ**

ସ୍ୱର୍ଗତ ବିଜୁ ପଟ୍ଟନାୟକ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ, 'ବିଜୁ ପଟ୍ଟନାୟକ ହିମାଳୟ ଅଭିଯାନ' କାର୍ଯ୍ୟକ୍ରମ ଟାଟାଷ୍ଟିଲ୍, ଆଡଭେଞ୍ଚର ଫାଉଣ୍ଡେସନ୍ (ଏହାର ମୁଖ୍ୟ କିମ୍ବଦନ୍ତୀ ପର୍ବତାରୋହୀ ବଚ୍ଛେନ୍ଦ୍ରୀ ପାଲ)ର ବୈଷୟିକ ସହାୟତାରେ ଏକ ବାର୍ଷିକ କାର୍ଯ୍ୟକ୍ରମ ରୂପେ ଆରମ୍ଭ କରାଯାଇଅଛି । ଓଡ଼ିଶାର ଯୁବସମାଜ ମଧ୍ୟରେ ଦୁଃସାହସିକତା, ଶୃଙ୍ଖଳାବଦ୍ଧ ତଥା ନେତୃତ୍ୱ ନେବାର ପରାକାଷ୍ଠା ବିକଶିତ କରିବା ଏହି କାର୍ଯ୍ୟକ୍ରମର ମୂଳ ଲକ୍ଷ୍ୟ । ଏହି କାର୍ଯ୍ୟକ୍ରମକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ୧୫ ସେପ୍ଟେମ୍ବର ୨୦୧୬ରେ ପତାକା ଦେଖାଇ ଅଭିଯାନର ଶୁଭାରମ୍ଭ କରିଥିଲେ । ୧୫ଜଣିଆ ପର୍ବତାରୋହଣକାରୀ ଦଳ ମଧ୍ୟରୁ ୧୩ଜଣ ସଫଳତାର ସହ ମାଉଣ୍ଟ ରୁଦୁଗେରା ଶୃଙ୍ଗ ଆରୋହଣ କରିପାରିଥିଲେ । ୨୦୧୭ ବର୍ଷରେ ମାଉଣ୍ଟ ଥେଲୁ ଶୃଙ୍ଗ (୬୦୦୨ ମିଟର) ଆରୋହଣ ପାଇଁ ଯୋଜନା କରାଯାଇଅଛି ।





# ହସ୍ତତନ୍ତ, ବୟନଶିଳ୍ପ ଓ ହସ୍ତଶିଳ୍ପ ବିଭାଗର ସଫଳତା

**(କ) ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସ୍ୱତନ୍ତ୍ର ପ୍ୟାକେଜ (୨୦୧୨-୧୩ରୁ ୨୦୧୬-୧୭)**

**୧. ବୀମା ଯୋଜନାରେ ଅନ୍ତର୍ଭୁକ୍ତ ହେବା ପାଇଁ ବୁଣାକାର/କାରିଗରମାନଙ୍କୁ ପ୍ରିମିୟମ ସହାୟତା:**

- ଜୀବନବୀମା ଯୋଜନାରେ ୪୯୧୨୩ ବୁଣାକାର ଏବଂ ୪୫୪୨୫ କାରିଗର ଅନ୍ତର୍ଭୁକ୍ତ । ୧୧୩୧ ଜଣ ବୁଣାକାର ଓ ୬ଜଣ କାରିଗରଙ୍କର ମୃତ୍ୟୁଜନିତ ବୀମା ଦାବି ଫଇସଲା । 'ଶିକ୍ଷା ସହାୟକ ଯୋଜନା'ରେ ବୁଣାକାର ପରିବାରର ୬୫୨୧ ଜଣ ବିଦ୍ୟାଳୟ ଛାତ୍ର/ଛାତ୍ରୀ ଅନ୍ତର୍ଭୁକ୍ତ । ଉପରୋକ୍ତ ବୀମା ଯୋଜନାରେ ହିତାଧିକାରୀଙ୍କର ପ୍ରିମିୟମ ଅଂଶ ଦେୟ ବାବଦକୁ ହିତାଧିକାରୀ ପିଛା ୮୦ ଟଙ୍କା ହିସାବରେ ରାଜ୍ୟ ସରକାର ବହନ କରନ୍ତି ।
- ସ୍ୱାସ୍ଥ୍ୟବୀମା ଯୋଜନାରେ ହସ୍ତତନ୍ତ କ୍ଷେତ୍ରର ୪୬୫୩୧ ଜଣ ବୁଣାକାର ପରିବାର ଅନ୍ତର୍ଭୁକ୍ତ । ଏହି ଯୋଜନାରେ ହିତାଧିକାରୀମାନଙ୍କର ପ୍ରିମିୟମ୍ ଅଂଶ ଦେୟ ବାବଦକୁ ହିତାଧିକାରୀ ପିଛା ୧୭୦.୪୦ ଟଙ୍କା ହିସାବରେ ରାଜ୍ୟ ସରକାର ବହନ କରନ୍ତି ।

**୨. ବୁଣାକାର/କାରିଗର ପରିବାରଙ୍କୁ ସୌର ଲଣ୍ଠନ ଯୋଗାଣ**

- ୪୩୯୦୮ ବୁଣାକାର ପରିବାର ଏବଂ ୪୨୪୧୯ କାରିଗର ପରିବାରକୁ ସୌର ଲଣ୍ଠନ ପ୍ରଦାନ ।

**୩. ଟସର ଚାଷୀଙ୍କୁ ଉପଯୋଗୀ ସାମଗ୍ରୀ ଯୋଗାଣ:**

- ୧୩୯୩୬ ଟସର ଚାଷୀଙ୍କୁ ଉପଯୋଗୀ ସରଞ୍ଜାମ (ଛତା, ଟର୍ଚ୍ଚ, ଡାଳକଟା ଯନ୍ତ୍ର, ଗମ୍ ବୁଟ ଇତ୍ୟାଦି) ପ୍ରଦାନ ।

**୪. ରେଶମ ଚାଷୀଙ୍କ ପାଇଁ କଲ୍ୟାଣ ପାଣ୍ଠି:**

- ଜୀବନ ବୀମା ଯୋଜନାରେ ୧୬୯୯୦ ଜଣ ରେଶମ ଚାଷୀ ଅନ୍ତର୍ଭୁକ୍ତ । ୯୯ ଜଣ ମୃତ ରେଶମ ଚାଷୀଙ୍କୁ ମୃତ୍ୟୁଜନିତ ବୀମା ରାଶି ଏବଂ ୧୪୦୮ ଜଣ ବିଦ୍ୟାଳୟ ଛାତ୍ର/ଛାତ୍ରୀଙ୍କୁ ବିଦ୍ୟା ବୃତ୍ତି ପ୍ରଦାନ ।

**୫. ବୁଣାକାର/କାରିଗରମାନଙ୍କୁ କର୍ମଶାଳା ତଥା ବାସଗୃହ ଯୋଗାଣ:**

- ଅଗ୍ନି ନିରୋଧକ କର୍ମଶାଳା ତଥା ବାସଗୃହ ନିର୍ମାଣ ନିମନ୍ତେ ୫୩୮୬ ଜଣ ବୁଣାକାର/କାରିଗରଙ୍କୁ ୩୨୭୩.୫୦ ଲକ୍ଷ ଟଙ୍କାର ସହାୟତା ପ୍ରଦାନ ।

**୬. ବୁଣାକାରଙ୍କୁ ଆର୍ଥିକ ସହାୟତା:**

- ‘ବରିଷ୍ଠ ବୁଣାକାର ସହାୟତା ଯୋଜନା’ ନାମକ ଏକ ନୂତନ ଯୋଜନାର ଆରମ୍ଭ ହୋଇଅଛି । ଚଳିତ ବର୍ଷଠାରୁ କାର୍ଯ୍ୟକାରୀ କରାଯାଉଥିବା ଏହି ଯୋଜନାରେ ୬୦ ବର୍ଷ ବୟସରୁ ଊର୍ଦ୍ଧ୍ୱ ବୁଣାକାରମାନଙ୍କୁ ଆର୍ଥିକ ସହାୟତା ପ୍ରଦାନ କରିବା ବ୍ୟବସ୍ଥା ରହିଛି ଏବଂ ୧୩୫୯ ଜଣ ବୁଣାକାର ଚିହ୍ନଟ ସରିଛି । ୬୦ରୁ ୮୦ ବର୍ଷ ବୟସ ବର୍ଗର ବୁଣାକାରଙ୍କୁ ମାସିକ ୫୦୦ ଟଙ୍କା ଏବଂ ୮୦ ବର୍ଷରୁ ଊର୍ଦ୍ଧ୍ୱ ବୁଣାକାରଙ୍କୁ ମାସିକ ୭୦୦ ଟଙ୍କାର ଆର୍ଥିକ ସହାୟତାର ବ୍ୟବସ୍ଥା ରହିଛି ।

**୭. ରୁଗ୍ଣ ସମବାୟ ସମିତିର ପୁନରୁଦ୍ଧାର:**

- ୪୩ ଗୋଟି ରୁଗ୍ଣ ପ୍ରାଥମିକ ବୁଣାକାର ସମବାୟ ସମିତିର ପୁନରୁଦ୍ଧାର ଏବଂ ୧୫ଗୋଟି ନୂତନଭାବେ ପଞ୍ଜିକୃତ ହୋଇଅଛି ।

**୮. ପ୍ରାଥମିକ ବୁଣାକାର ସମବାୟ ସମିତିର ପୁନର୍ଗଠନ:**

- ପୁନରୁଦ୍ଧାର, ସଂସ୍କାର ଓ ପୁନର୍ଗଠନ ପ୍ୟାକେଜରେ ୪୩୦ ଗୋଟି ପ୍ରାଥମିକ ବୁଣାକାର ସମବାୟ ସମିତି ଏବଂ ୧୦୮୪୨ ଜଣ ବୁଣାକାର ୧୨୫.୯୨ କୋଟି ଟଙ୍କାର ଉପକୃତ ହୋଇଛନ୍ତି । ଏଥିନିମନ୍ତେ ରାଜ୍ୟ ସରକାର ୨୭.୦୪ କୋଟି ଟଙ୍କା ପ୍ରଦାନ କରିଛନ୍ତି ।

**୯. ବୟନଶିଳ୍ପ ପାର୍କ ସ୍ଥାପନ:**

- ୨୦୧୬–୧୭ ବର୍ଷରେ ନୂତନ ‘ପୋଷାକ ପ୍ରସ୍ତୁତି ନୀତି’ (Odisha Apparel Policy, 2016)ର ପ୍ରଣୟନ କରାଯାଇଛି । ପୋଷାକ ପ୍ରସ୍ତୁତି ପାର୍କ ଏବଂ ପୋଷାକ ପ୍ରସ୍ତୁତି ସଂସ୍ଥା ସ୍ଥାପନ ନିମନ୍ତେ ପ୍ରାଥମିକ କାର୍ଯ୍ୟ ଚାଲୁ ରହିଅଛି ।

**୧୦. ନୀତି ପ୍ରଣୟନ:**

- ପ୍ରଥମ ଥର କରି ‘ପୋଷାକ ପ୍ରସ୍ତୁତି ନୀତି’ (Odisha Apparel Policy, 2016)ପ୍ରଣୟନ ହୋଇଅଛି ଏବଂ ଏହାର ରୂପାୟନ ନିମନ୍ତେ ମାର୍ଗଦର୍ଶିକା ପ୍ରଣୀତ କରାଯାଇଛି ।
- ପ୍ରଥମ ଥର କରି ରାଜ୍ୟରେ ‘ହସ୍ତତନ୍ତ ନୀତି’ (Odisha Handloom Policy, 2016) ପ୍ରଣୟନ ହୋଇଅଛି ।

**(ଖ) ଅନ୍ୟାନ୍ୟ ଉଲ୍ଲେଖନୀୟ ସଫଳତା**

**୧୧. ଆୟ:**

- ବୁଣାକାରମାନଙ୍କର ବାର୍ଷିକ ହାରାହାରି ଆୟ ୨୦୧୨–୧୩ ବର୍ଷରେ ଟ. ୨୮,୦୭୪/–ରୁ ୨୦୧୫–୧୬ରେ ଟ. ୪୩,୮୯୪/–କୁ ବୃଦ୍ଧି ହୋଇଅଛି ।

**୧୨. ଉତ୍ପାଦନ:**

- ହସ୍ତତନ୍ତ ବସ୍ତ୍ର ଉତ୍ପାଦନ ୨୦୧୨–୧୩ ବର୍ଷରେ ୧୩୪.୩୮ କୋଟି ଟଙ୍କାରୁ ୨୦୧୫–୧୬ରେ ୨୪୬.୯୬ କୋଟି ଟଙ୍କାକୁ ବୃଦ୍ଧି ହୋଇଅଛି ।

**୧୩. ଦକ୍ଷତା ବୃଦ୍ଧି ତାଲିମ୍:**

- ୭୪୦୬ ବୁଣାକାର ଏବଂ ୧୧୩୩୪ କାରିଗରଙ୍କର ଦକ୍ଷତା ବୃଦ୍ଧି ପାଇଁ ତାଲିମ ପ୍ରଦାନ କରାଯାଇଅଛି ।

- ନକ୍ସା ବିକାଶ କାର୍ଯ୍ୟକ୍ରମରେ ୫୧୪ ଜଣ କାରୀଗରଙ୍କୁ ତାଲିମ ପ୍ରଦାନ କରାଯାଇଅଛି ।
- ୯୯୮ଜଣ ସମବାୟ ସମିତି ବୁଣାକାରଙ୍କୁ ବିପଣନ ଏବଂ ଆର୍ଥିକ ପରିଚାଳନା ବିଷୟରେ ତାଲିମ ଦିଆଯାଇଛି ।

**୧୪. ବିପଣନ:**

- ବୟନିକାର ବ୍ୟବସାୟ ୨୦୧୨-୧୩ ବର୍ଷରେ ୭୦.୬୦ କୋଟି ଟଙ୍କାରୁ ୨୦୧୬-୧୭ ବର୍ଷରେ ୯୫.୭୪ କୋଟି ଟଙ୍କାକୁ ବୃଦ୍ଧି ହୋଇଅଛି । ଏହି ବୃଦ୍ଧି ୨୫କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଅଟେ ।
- ଉତ୍କଳିକାର ବ୍ୟବସାୟ ୨୦୧୨-୧୩ ବର୍ଷରେ ୧୨.୪୯ କୋଟି ଟଙ୍କାରୁ ୨୦୧୬-୧୭ ବର୍ଷରେ ୧୮.୨୭ କୋଟି ଟଙ୍କାକୁ ବୃଦ୍ଧି ହୋଇଅଛି । ଏହି ବୃଦ୍ଧି ୫.୫ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଅଟେ ।
- ପୂର୍ବ ଭାରତର ସର୍ବବୃହତ ହସ୍ତତନ୍ତ ଓ ହସ୍ତଶିଳ୍ପ ମେଳା 'ତୋଷାଳୀ ଜାତୀୟ କ୍ରାଫ୍ଟ୍ସ ମେଳା' ୨୦୧୩ରୁ ୨୦୧୬ ବର୍ଷମାନଙ୍କରେ ସଫଳତାର ସହ ଆୟୋଜନ କରାଯାଇଅଛି । ଗତ ୨ବର୍ଷରେ ଏଥିରେ ହାରାହାରି ୧୫ଲକ୍ଷରୁ ଊର୍ଦ୍ଧ୍ୱ ଜନ ସମାଗମ ହୋଇଥିଲା ବେଳେ ୧୫.୦୦ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ବ୍ୟବସାୟିକ କାରବାର ହୋଇଅଛି ।

**୧୫. ଭିତ୍ତିଭୂମି ସଂରଚନା:**

- ୫୭ଗୋଟି ନୂତନ ସାଧାରଣ ଉପଯୋଗ କେନ୍ଦ୍ର ଏବଂ ଗୋଦାମ ଗୃହ ୨୭୦.୬୦ ଲକ୍ଷ ଟଙ୍କା ବ୍ୟୟରେ ନିର୍ମାଣ କରାଯାଇଅଛି ।
- ଟସର ବସ୍ତ୍ର ନିମନ୍ତେ ରାଜ୍ୟର ପ୍ରଥମ ଛାପା କେନ୍ଦ୍ର ଯାଜପୁର ଜିଲ୍ଲାର ଗୋପାଳପୁରଠାରେ ପ୍ରତିଷ୍ଠା କରାଯାଇଅଛି । ପୁନଶ୍ଚ ବାଲେଶ୍ୱର ଜିଲ୍ଲାର ମାକେଡିଆ, କେନ୍ଦୁଝର ଜିଲ୍ଲାର ଫକିରପୁର ଏବଂ ଯାଜପୁର ଜିଲ୍ଲାର ଗୋପାଳପୁରଠାରେ ଆହୁରି ତିନିଗୋଟି ଛାପା କେନ୍ଦ୍ର ସ୍ଥାପନ କରାଯାଇଅଛି । ଏହା ଖୁବ୍‌ଶୀଘ୍ର କାର୍ଯ୍ୟକ୍ଷମ କରାଯିବ ।
- ବରଗଡ ଜିଲ୍ଲାର ସମ୍ବଲପୁରୀ ବସ୍ତ୍ରାଳୟରେ ୩୫ ଲକ୍ଷ ଟଙ୍କା ବିନିଯୋଗରେ ହସ୍ତତନ୍ତ ବସ୍ତ୍ରରୁ 'ପୋଷାକ ପ୍ରସ୍ତୁତି କେନ୍ଦ୍ର' ସ୍ଥାପିତ ହୋଇଅଛି ।
- ଭାରତ ସରକାରଙ୍କ ବସ୍ତ୍ର ମନ୍ତ୍ରାଳୟର ୧୨.୯୩ କୋଟି ଟଙ୍କା ତଥା ରାଜ୍ୟ ସରକାରଙ୍କ ତରଫରୁ ଜମି ମୂଲ୍ୟ ବାବଦକୁ ୧.୦୧ କୋଟି ଟଙ୍କା ଆର୍ଥିକ ସହାୟତାରେ ଭୁବନେଶ୍ୱରଠାରେ ପୋଷାକ ପ୍ରସ୍ତୁତି ତାଲିମ ଓ ଉତ୍ପାଦନ ନିମନ୍ତେ ଏକ ଇନ୍‌କ୍ୟୁବେସନ କେନ୍ଦ୍ର ସ୍ଥାପନ କରାଯାଉଅଛି ।
- ଭୁବନେଶ୍ୱରଠାରେ ନିର୍ମିତ ଓଡ଼ିଶା କ୍ରାଫ୍ଟ୍ସ ମ୍ୟୁଜିୟମ କାର୍ଯ୍ୟ ପ୍ରାୟ ଶେଷ ପର୍ଯ୍ୟାୟରେ ଏବଂ ଏହା ଖୁବ୍‌ଶୀଘ୍ର ଉଦ୍‌ଘାଟନ ହେବ ।
- ରଘୁରାଜପୁର ଶିଳ୍ପୀ ଗ୍ରାମ ପ୍ରକଳ୍ପ ଖୁବ୍‌ଶୀଘ୍ର ଉଦ୍‌ଘାଟନ ହେବ ।

**୧୬. ଋଣ ନିମିତ୍ତ ଯୋଗସୂତ୍ର:**

- ୧୯୭୯୮ ଜଣ ବୁଣାକାରଙ୍କୁ ବୁଣାକାର କ୍ରେଡିଟ୍ କାର୍ଡ ପ୍ରଦାନ ଏବଂ ୫୮.୦୮ କୋଟି ଟଙ୍କାର ଋଣ ମଞ୍ଜୁର କରାଯାଇଅଛି ।
- ୨୦୧୬-୧୭ ବର୍ଷରେ ୧୫୪୦ ଜଣ ବୁଣାକାରଙ୍କୁ 'ମୁଦ୍ରା ବୁଣାକାର ଯୋଜନା'ରେ ବ୍ୟାଙ୍କ ମାଧ୍ୟମରେ ୮.୬୯ କୋଟି ଟଙ୍କା ଋଣ ମଞ୍ଜୁର କରାଯାଇଅଛି ।

**୧୭. ପ୍ରାଥମିକ ବୁଣାକାର ସମବାୟ ସମିତିକୁ ପ୍ରୋତ୍ସାହନ:**

- ୨୦୧୬–୧୭ ବର୍ଷରେ ପ୍ରଥମ ଥର ପାଇଁ ଉତ୍କୃଷ୍ଟ କାର୍ଯ୍ୟ ସମ୍ପାଦନ କରିଥିବା ୩ଗୋଟି ପ୍ରାଥମିକ ବୁଣାକାର ସମବାୟ ସମିତି ଓ ସର୍ବପୁରାତନ ୩ଗୋଟି ପ୍ରାଥମିକ ବୁଣାକାର ସମିତିକୁ ୯.୦୦ ଲକ୍ଷ ଟଙ୍କାର ଆର୍ଥିକ ସହାୟତା ପ୍ରଦାନ କରାଯାଇଅଛି ।

**୧୮. ରେଶମ କ୍ଷେତ୍ରରେ ସଫଳତା:**

- ଟସର ଜଙ୍ଗଲ କ୍ଷେତ୍ର (ଅସନ/ଅର୍ଜୁନ ବଗିଚା) ୨୦୧୨–୧୩ ମସିହାରେ ୫୦୭୨ ହେକ୍ଟରରୁ ୨୦୧୬–୧୭ ମସିହାରେ ୧୧୦୭୮ ହେକ୍ଟରକୁ ବୃଦ୍ଧି, ଯାହା ଦୁଇଗୁଣରୁ ମଧ୍ୟ ଅଧିକ ।
- ୨୦୧୬–୧୭ ବର୍ଷରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ୭୧ ଜଣ ଟସର ଚାଷୀ ଲାଭଜନକ ଟସର ଚାଷ କରି ୧.୦୦ ଲକ୍ଷ ଟଙ୍କାରୁ ଉର୍ଦ୍ଧ୍ୱ ରୋଜଗାର କରିପାରିଛନ୍ତି । ୨୦୧୬–୧୭ ବର୍ଷରେ ସର୍ବାଧିକ ରୋଜଗାର ୨,୧୪,୭୦୦/– ଅଟେ ।
- ମୌଳିକ ଟସର ବିହନ (ରୋଗମୁକ୍ତ ବିହନ) ଉତ୍ପାଦନ ନିମିତ୍ତ ୧୬ଟି ପାଇଲଟ୍ ପ୍ରକଳ୍ପ କେନ୍ଦ୍ରର ଭିତ୍ତିଭୂମିର ଉନ୍ନତି ପାଇଁ ପଦକ୍ଷେପ ନିଆଯାଉଅଛି । ୨୦୧୨–୧୩ରୁ ୨୦୧୬–୧୭ ବର୍ଷ ମଧ୍ୟରେ ୧୨ଗୋଟି ପାଇଲଟ୍ ପ୍ରକଳ୍ପ କେନ୍ଦ୍ରର ଉନ୍ନତି ପାଇଁ ସରକାରଙ୍କ ଦ୍ୱାରା ୧୨ କୋଟି ଟଙ୍କା ମଞ୍ଜୁର ହୋଇଅଛି । ସେଥିମଧ୍ୟରୁ ୭ଟି କେନ୍ଦ୍ରର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିବା ସ୍ଥଳେ ଅବଶିଷ୍ଟ ୫ଟି କେନ୍ଦ୍ରର କାର୍ଯ୍ୟ ଚାଲୁଅଛି । ୨୦୧୭–୧୮ ବର୍ଷରେ ବଳକା ୪ଟି କେନ୍ଦ୍ର ନବୀକରଣ ହେବ ।
- କେନ୍ଦୁଝର ଜିଲ୍ଲାର ଭଗାମୁଣ୍ଡାଠାରେ ରାଜ୍ୟର ପ୍ରଥମ 'ଟସର ସିଲ୍କ୍ ପାର୍କ' ପ୍ରତିଷ୍ଠା ପାଇଁ ୪.୦୭ କୋଟି ଟଙ୍କା ମଞ୍ଜୁର ହୋଇଅଛି ।

**୧୯. ବିଶ୍ୱ ବ୍ୟାଙ୍କ ପ୍ରକଳ୍ପ:**

- ଉତ୍କର୍ଷ ନାମକ ଏକ ଯୋଜନା UTKARSH-Odisha Crafts Skills Development and Rural employment Project) ଆଗାମୀ ୬ବର୍ଷରେ କାର୍ଯ୍ୟକାରୀ କରିବା ପାଇଁ ୪୬୦.୦୦ କୋଟି ଟଙ୍କାର ପ୍ରସ୍ତାବ ବିଶ୍ୱବ୍ୟାଙ୍କ ନିକଟରେ ଅନୁମୋଦନ ନିମନ୍ତେ ଦାଖଲ କରାଯାଇଅଛି । ବିଶ୍ୱ ବ୍ୟାଙ୍କ ସହାୟତାରେ ଏହିପରି ଏକ ଯୋଜନା ସମଗ୍ର ଦେଶରେ ଏହି କ୍ଷେତ୍ର ପାଇଁ ପ୍ରଥମ ଅଟେ ।







# ବାଣିଜ୍ୟ ଓ ପରିବହନ ବିଭାଗର ସଫଳତା

ରାଜ୍ୟର ଉନ୍ନତି ନିମିତ୍ତ ଓଡ଼ିଶା ସରକାରଙ୍କ ବାଣିଜ୍ୟ ଓ ପରିବହନ ବିଭାଗ ଗତ ୩ବର୍ଷ ମଧ୍ୟରେ ବିଭିନ୍ନ ପରିକଳ୍ପନା ଓ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି ଓ ଆସନ୍ତା ୨ବର୍ଷରେ ଅବଶିଷ୍ଟ କାର୍ଯ୍ୟକ୍ରମର ରୂପାୟନ ପାଇଁ ସଂକଳ୍ପବଦ୍ଧ ।

୧. ରାଜ୍ୟର ସମସ୍ତ ଗ୍ରାମପଞ୍ଚାୟତକୁ ନିର୍ବିଘ୍ନ ପରିବହନ ସେବା ଯୋଗାଇ ଦେବା ପାଇଁ 'ବିଜୁ ଗାଁ ଗାଡି ଯୋଜନା' ନାମରେ ଏକ ସୁସ୍ପଷ୍ଟ ପରିକଳ୍ପନା ୨୦୧୪ ମସିହାରୁ ସରକାର ଆରମ୍ଭ କରିଛନ୍ତି । ଏହି ଯୋଜନାଟି ସରକାରଙ୍କର ବିଭିନ୍ନ ଅଗ୍ରାଧିକାର ଯୋଜନା ମଧ୍ୟରୁ ଅନ୍ୟତମ, ଯାହାର ଲକ୍ଷ୍ୟ ହେଉଛି ସବୁ ଗ୍ରାମପଞ୍ଚାୟତକୁ ପରିବହନ ଯାତ୍ରୀସେବା ଯୋଗାଇଦେଇ ସରକାରଙ୍କର ଲୋକମାନଙ୍କ ପ୍ରତି ଥିବା ପ୍ରତିବଦ୍ଧତା ପୂରଣ କରିବା । ଏହି ଯୋଜନା ମାଧ୍ୟମରେ ଗତ ୩ବର୍ଷ ମଧ୍ୟରେ ୭୦୦ ଗ୍ରାମପଞ୍ଚାୟତକୁ ପରିବହନ ସେବା ଯୋଗାଇ ଦିଆଯିବା ସହ ୫୮୩ଟି ବେସରକାରୀ ଓ ୯୫ଟି ସରକାରୀ (ଓଡ଼ିଶା ସଡକ ପରିବହନ ନିଗମ) ଯାତ୍ରୀବାହୀ ବସ ଚଳାଚଳ କରାଯାଉଛି । ବାକିଥିବା ୧୭୩ଟି ଗ୍ରାମପଞ୍ଚାୟତକୁ ଏହି ସୁବିଧା ଖୁବ୍ କମ୍ ଦିନ ଭିତରେ ଯୋଗାଇ ଦେବା ପାଇଁ ସରକାର ଅଙ୍ଗୀକାରବଦ୍ଧ ।

୨. ଯଦିଓ ରେଳବାଇ ଏକ ରାଜ୍ୟ ପରିସରଭୁକ୍ତ ବିଷୟ ନୁହେଁ, ତଥାପି ରାଜ୍ୟରେ ରେଳ ସଂଯୋଗୀକରଣର ଉନ୍ନତି କରି ଲୋକମାନଙ୍କର ଉଚ୍ଚାକାଂକ୍ଷା ପୂରଣ କରିବା ପାଇଁ ରାଜ୍ୟ ସରକାର ଅଦ୍ୱିତୀୟ ଯୋଜନାମାନ ହାତକୁ ନେଇଛନ୍ତି । ବର୍ତ୍ତମାନର ସରକାର ଗଠନବେଳେ ରାଜ୍ୟର କେନ୍ଦ୍ରାପଡା, ନୟାଗଡ, କନ୍ଧମାଳ, ବୌଦ୍ଧ, ମାଲକାନାଗିରି, ନବରଙ୍ଗପୁର ଓ ଦେବଗଡ ଆଦି ୭ଟି ଜିଲ୍ଲାକୁ ରେଳ ସଂଯୋଗ ନଥିଲା । ସୁବର୍ଣ୍ଣପୁର ଜିଲ୍ଲାର ଉପାନ୍ତ ଅଞ୍ଚଳକୁ କେବଳ ନାମମାତ୍ର ସଂଯୋଗ ଥିଲା । ସେଥିପାଇଁ ରାଜ୍ୟ ସରକାର ସମ୍ପୂର୍ଣ୍ଣ ମାଗଣା ବା ରିହାତି ଦରରେ ଜମି ଯୋଗାଇବା ଓ ପ୍ରକଳ୍ପ କାର୍ଯ୍ୟ ପାଇଁ ସିଧାସଳଖ ଅଂଶଦାନ କରିବା ପାଇଁ ଏକ ଅଦ୍ୱିତୀୟ ଯୋଜନା ପ୍ରଣୟନ କରିଛନ୍ତି । ତେଣୁ ରେଳବାଇ ଓଡ଼ିଶାରେ ନୂଆ ପ୍ରକଳ୍ପମାନ ମଞ୍ଜୁର କରିଛନ୍ତି । ଖୋର୍ଦ୍ଧାରୋଡ–ବଲାଙ୍ଗୀର, ହରିଦାସପୁର–ପାରାଦ୍ୱୀପ, ଅନୁଗୁଳ–ସୁକିନ୍ଦା, ଜୟପୁର–ମାଲାକାନାଗିରି, ଜୟପୁର–ନବରଙ୍ଗପୁର ଓ ତାଳଚେର–ବିମଳାଗଡ ରେଳ ପ୍ରକଳ୍ପଗୁଡିକ ଅଧିକାଂଶ ଅଣ ସଂଯୋଗୀକୃତ ଜିଲ୍ଲାମାନଙ୍କୁ ରେଳ ସଂଯୋଗ ଯୋଗାଇଦେବ । ଯଦିଓ କେନ୍ଦ୍ର ସରକାରଙ୍କ ନୂଆ ଜମି ଅଧିଗ୍ରହଣ ଆଇନ୍‌ରେ ଜମି ଅଧିଗ୍ରହଣ ଏବେ ସମୟ ସାପେକ୍ଷ ହୋଇପଡିଛି, ତଥାପି ରାଜ୍ୟ ସରକାର ବହୁ ମାତ୍ରାରେ ଜମି ଅଧିଗ୍ରହଣ କରିବାକୁ ସକ୍ଷମ ହୋଇପାରିଛନ୍ତି । ଗତ ୩ବର୍ଷ ମଧ୍ୟରେ ବିଭିନ୍ନ ରେଳ ପ୍ରକଳ୍ପ ପାଇଁ ୩୧୨୪ ଏକର ବେସରକାରୀ ଜମି ଅଧିଗ୍ରହଣ କରାଯାଇଛି । ରାଜ୍ୟରେ ରେଳବାଇକୁ ପ୍ରୋତ୍ସାହନ ନିମିତ୍ତ, ରାଜ୍ୟ ସରକାର ସମସ୍ତ ୧୮ଟି ରେଳ ପ୍ରକଳ୍ପ ପାଇଁ ଶତପ୍ରତିଶତ ତାଲିକାଭୁକ୍ତ ଷ୍ଟାମ୍ପ ଶୁଳ୍କ ଓ ରେଜିଷ୍ଟ୍ରେସନ ଦେୟ ଛାଡ କରିଛନ୍ତି, ଯାହାକି ଏକ ବିରଳ ସଫଳତା ।

୩. ବେକାର ଯୁବଗୋଷ୍ଠୀଙ୍କୁ ଦକ୍ଷତାଭିତ୍ତିକ ରୋଜଗାର ଯୋଗାଇଦେବା ଉଦ୍ଦେଶ୍ୟରେ ୧୦୯ଟି ତାଲିକାଭୁକ୍ତ ବେସରକାରୀ ଓ ଗୋଟିଏ ସରକାରୀ ହାଲୁକା ମୋଟର ଯାନ ଚାଳନା ପ୍ରଶିକ୍ଷଣ ଅନୁଷ୍ଠାନରେ ଗାଡି ଚାଳନା ପ୍ରଶିକ୍ଷଣ ଦିଆଯାଉଛି । ସେହିପରି



୧୭ଟି ତାଲିକାଭୁକ୍ତ ବେସରକାରୀ ଭାରୀଯାନ ଚାଳନା ପ୍ରଶିକ୍ଷଣ ଅନୁଷ୍ଠାନ ଓ ଛତିଆଠାରେ ସ୍ଥାପିତ ସରକାରୀ ଭାରୀଯାନ ଚାଳନା ପ୍ରଶିକ୍ଷଣ କେନ୍ଦ୍ରରେ ଭାରୀଯାନ ଚାଳନା ପ୍ରଶିକ୍ଷଣ ଦିଆଯାଉଛି । ୨୦୧୫-୧୬ରେ ୬୩୯୭ ଜଣଙ୍କୁ ଓ ୨୦୧୬-୧୭ ବର୍ଷରେ ୬୦୩୮ ଜଣଙ୍କୁ ହାଲୁକା ମୋଟର ଯାନ ଚାଳନା ପ୍ରଶିକ୍ଷଣ ଦିଆଯାଇଛି । ସେହିପରି, ଭାରୀ ମୋଟର ଯାନ ଚାଳନାରେ ୨୦୧୫-୧୬ରେ ୧୦୧୪ ଜଣଙ୍କୁ ଓ ୨୦୧୬-୧୭ରେ ୧୭୫୨ଜଣଙ୍କୁ ପ୍ରଶିକ୍ଷଣ ଦିଆଯାଇଛି । ଆଗାମୀ ଦୁଇ ବର୍ଷରେ ୨୦,୦୦୦ ଯୁବବର୍ଗଙ୍କୁ ହାଲୁକା ଯାନ ଚାଳନା ପ୍ରଶିକ୍ଷଣ ଓ ୪୦୦୦ଜଣଙ୍କୁ ଭାରୀଯାନ ଚାଳନା ପ୍ରଶିକ୍ଷଣ ଦେବା ପାଇଁ ସରକାର ଅଙ୍ଗୀକାରବଦ୍ଧ ।

୪. ଓଡ଼ିଶାରେ ୪୮୦କି.ମି. ପରିମାପର ସୁଦୀର୍ଘ ବେଳାଭୂମି ଅଛି ଓ ୧୪ଟି ସ୍ଥାନକୁ ସମ୍ଭାବ୍ୟ ଅଣବୃହତ ବନ୍ଦର ପାଇଁ ଚିହ୍ନଟ କରାଯାଇଛି । ବୃହତ ବନ୍ଦର ପାରାଦ୍ୱୀପ ବ୍ୟତୀତ, ଧାମରା ଓ ଗୋପାଳପୁରଠାରେ ଦୁଇଟି ଅଣବୃହତ ବନ୍ଦର ଯଥାକ୍ରମେ ୨୦୧୧ ଓ ୨୦୧୩ ମସିହାରୁ କାର୍ଯ୍ୟକ୍ଷମ ହେଉଛି । ଉପରୋକ୍ତ ଦୁଇଟି ବନ୍ଦରରେ ଗତ ତିନି ବର୍ଷରେ ୮୬.୪ ମିଲିୟନ୍ ମେଟ୍ରିକ୍ ଟନ୍ ପଣ୍ୟ କାରବାର ହୋଇଛି ଓ ୧୬୩.୦୫ କୋଟି ଟଙ୍କାର ରାଜସ୍ୱ ଓଡ଼ିଶାକୁ ମିଳିଛି । ଏହି ଦୁଇଟି ବନ୍ଦରର ପଣ୍ୟ କାରବାର କ୍ଷମତା ନିକଟ ଭବିଷ୍ୟତରେ ଦୁଇଗୁଣଠାରୁ ଅଧିକ ହେବାକୁ ଯାଉଛି । ସୁବର୍ଣ୍ଣରେଖା ମୁହାଣର ବନ୍ଦରର ଉନ୍ନତିକରଣ ଭାଗିଦାରୀ ସଂସ୍ଥାଦ୍ୱାରା କରାଯାଉଛି । ସେହିପରି ମହାନଦୀ ପାର୍ଶ୍ୱରେ ଏକ ନଦୀଭିତ୍ତିକ ବନ୍ଦର ନିର୍ମାଣ ପାଇଁ ଇଚ୍ଛୁକ ସଂସ୍ଥାମାନଙ୍କଠାରୁ ଯୋଗ୍ୟତା ପରଖ ପାଇଁ ଦରଖାସ୍ତ ଆହ୍ୱାନ କରାଯାଇଛି । ଏହା ସହ କେନ୍ଦ୍ର ସରକାରଙ୍କ 'ସାଗରମାଳା' ଯୋଜନାରେ ବିଭିନ୍ନ ପ୍ରକଳ୍ପକୁ ଅନ୍ତର୍ଭୁକ୍ତ କରିବା ପାଇଁ ଦାବି ଉପସ୍ଥାପନ କରାଯାଉଛି, ଯାହାଦ୍ୱାରା ଏଥିରେ ଉନ୍ନତିମୂଳକ କାର୍ଯ୍ୟ ପାଇଁ ଆମେ ଆମର ଉଚିତ୍ ଅଂଶ ପାଇପାରିବା ।

୫. ଅଧିକରୁ ଅଧିକ ସେବା ପାଇଁ ଅନଲାଇନ୍ ଦରଖାସ୍ତର ପ୍ରଚଳନ ଓ କମ୍ପ୍ୟୁଟର ମାଧ୍ୟମରେ ଅନଲାଇନ୍ ଦେୟ ପ୍ରଦାନର ସୁବିଧା ଦ୍ୱାରା ସେବା ପ୍ରଦାନରେ ନିରବଚ୍ଛିନ୍ନ ଓ ଗୁଣାତ୍ମକ ଉନ୍ନତିକରଣ କରାଯାଉଛି । ଜନସାଧାରଣଙ୍କୁ ଫଳପ୍ରଦ ଓ ସମୟୋଚିତ ଜନସେବା ପ୍ରଦାନ କାର୍ଯ୍ୟକ୍ରମ ଅନ୍ତର୍ଗତ ୩୧ଗୋଟି ସେବା ପରିବହନ ବିଭାଗରେ ଅନ୍ତର୍ଭୁକ୍ତ କରାଯାଇଛି ଓ ଏଥିମଧ୍ୟରୁ ୬ଗୋଟି ସେବା ଅନ୍ ଲାଇନ୍ ମାଧ୍ୟମରେ ଯୋଗାଇ ଦେବା ପାଇଁ ସ୍ଥିର କରାଯାଇଛି । ଅନ୍ ଲାଇନ୍ ସେବାର ଉନ୍ନତିକରଣ ଓ ପରିବହନ ଆୟୁକ୍ତଙ୍କ ଦ୍ୱାରା ବ୍ୟବହୃତ ସମସ୍ତ ୭ଟି ଯାଞ୍ଚ ସଫ୍‌ଟୱେୟାର ଏପ୍ଲିକେଶନ୍‌ର ଏକତ୍ରିକରଣ କରାଯାଉଛି, ଯାହାଦ୍ୱାରା ଜନସାଧାରଣ ସୁବିଧାଜନକ ଓ ବାଧାରହିତ ଅନ୍ ଲାଇନ ସେବା ପାଇପାରିବେ ।

୬. ବିଗତ ୩ବର୍ଷ ମଧ୍ୟରେ ଗତ ନବକଳେବର, ୨୦୧୫କୁ ଆଖି ଆଗରେ ରଖି ସରକାର ପୁରୀର ମାଳତୀ-ପାଟପୁରଠାରେ ଏକ ଅତ୍ୟାଧୁନିକ ବସ୍ ଟର୍ମିନାଲ୍ ନିର୍ମାଣ କରିଛନ୍ତି । ଏହାବ୍ୟତୀତ ଭୁବନେଶ୍ୱରର ବରମୁଣ୍ଡା ବସ୍‌ଷ୍ଟାଣ୍ଡ ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷଙ୍କ ମାଧ୍ୟମରେ କରିବା ପାଇଁ କାର୍ଯ୍ୟପନ୍ଥା ଗ୍ରହଣ କରାଯାଉଛି । ଓଡ଼ିଶା ପରିବହନ ନିଗମ, ରାଜ୍ୟର ଅନ୍ୟାନ୍ୟ ବସ୍‌ଷ୍ଟାଣ୍ଡର ଉନ୍ନତିକରଣ ପର୍ଯ୍ୟାୟକ୍ରମେ କରିବା ପାଇଁ ଯୋଜନା କରିଛି । ନିକଟରେ ୭୫ଟି ବସ୍ କ୍ରୟ କରିବା ପାଇଁ ସରକାର, ଓଡ଼ିଶା ସଡକ ପରିବହନ ନିଗମକୁ ଆବଶ୍ୟକ ଅର୍ଥ ଯୋଗାଇ ଦେଇଛନ୍ତି ଓ ସେଥିମଧ୍ୟରୁ ୨୦ଟି (୧୯ଟି ଶୀତାତାପ ନିୟନ୍ତ୍ରିତ ଓ ଗୋଟିଏ ଅଣ-ଶୀତାତାପ ନିୟନ୍ତ୍ରିତ) ବସ୍ କିଣାଯାଇ ବିଭିନ୍ନ ମାର୍ଗରେ ଯାତାୟାତ କରୁଛି ।

୭. ବିଗତ ୩ବର୍ଷରେ ପରିବହନ ରାଜସ୍ୱ ଆଦାୟ ସୁସଂଗତ ଭାବେ ବୃଦ୍ଧି ଘଟିଛି । ୨୦୧୩-୧୪ ଆର୍ଥିକ ବର୍ଷର ୮୬୦ କୋଟି ଟଙ୍କା ରାଜସ୍ୱ ତୁଳନାରେ ୨୦୧୪-୧୫ରେ ୯୧୦ କୋଟି, ୨୦୧୫-୧୬ରେ ୧୦୪୩ କୋଟି ଓ ୨୦୧୬-୧୭ରେ ୧୨୨୭କୋଟି ଟଙ୍କାର ପରିବହନ ରାଜସ୍ୱ ଆଦାୟ ହୋଇଛି । ବ୍ୟବସାୟିକ ପ୍ରକ୍ରିୟାକୁ ସରଳୀକରଣ ଓ ସହଜ କରିବା ପାଇଁ ସମସ୍ତ ଆନ୍ତଃରାଜ୍ୟ ତନଖି ଫାଟକଗୁଡ଼ିକୁ ସରକାର ବନ୍ଦ କରିଦେଇଛନ୍ତି ଏବଂ ରାସ୍ତା ସୁରକ୍ଷାକୁ ବଳବତ୍ତୀକରଣ କରିବା ପାଇଁ ନୂଆ ଉପାୟ ବାହାର କରୁଛନ୍ତି ।







# ଓଡ଼ିଶାର ଲୋକବାଦ୍ୟ

ନାରାୟଣ କୁମାର ରାଉତରାୟ

ସ୍ୱାଧୀନତା ପ୍ରାପ୍ତିର ପୂର୍ବରୁ ଜନ୍ମଗ୍ରହଣ କରିଥିବା ପ୍ରତ୍ୟେକ ବ୍ୟକ୍ତି ନିଶ୍ଚିତ ରୂପେ ବାଲ୍ୟକାଳରେ ଏହି ଲୋକଗୀତଟିକୁ ଉଚ୍ଚାରଣ କରିଥିବେ– ମୋ ପେଁ କାଳୀ ବଜେଇ ଦେ । ଆହୁରି ମଧ୍ୟ ୧୫୬୮ ଖ୍ରୀଷ୍ଟାବ୍ଦରେ ଆଫଗାନ ରାଜ୍ୟରୁ ଆସି ବଙ୍ଗଳାର ନବାବ ହୋଇଥିବା ସୁଲେମାନ କରନୀଙ୍କର ଓଡିଶା ଆକ୍ରମଣ ସମୟରେ ସେନାପତି କଳାପାହାଡର ସହାୟତାରେ ରାଜା ମୁକୁନ୍ଦ ଦେବଙ୍କର ଧ୍ୟାନ ଆକର୍ଷଣ ନିମିତ୍ତ ମହୁରୀ ବାଦନ କରାଯାଇଥିଲା । ସେହିପରି ଯୁଦ୍ଧର ଆରମ୍ଭ ଓ ଶେଷ ପର୍ଯ୍ୟାୟକୁ ସୂଚାଇବା ନିମିତ୍ତ ଶଙ୍ଖନାଦ କରାଯାଉଥିଲା । ଏପରିକି ନାରଦମୁନି ସଦାସର୍ବଦା ବୀଣାଟିଏ, କୃଷ୍ଣବଂଶୀଟିଏ ଧରିଥିବାର ଦୃଶ୍ୟପଟ୍ଟ ଅଦ୍ୟାବଧି ଆମଦ୍ୱାରା ଅନୁସୃତ । ସଂକ୍ଷେପରେ କହିଲେ ବାଦ୍ୟଯନ୍ତ୍ର ସହ ଆମ ଚଳନିର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏମିତି କୌଣସି ଧାର୍ମିକ, ସାମାଜିକ ଅନୁଷ୍ଠାନ ନାହିଁ ଯେଉଁଠିକି ଲୋକବାଦ୍ୟର ପ୍ରଚଳନ ନାହିଁ। ଗୃହଠାରୁ ଆରମ୍ଭକରି ଦେବାଳୟ, ଯୁଦ୍ଧକ୍ଷେତ୍ର, ବିବାହବ୍ରତ, ମନୋରଞ୍ଜନ ସ୍ଥାନ, ବାର୍ତ୍ତା ପ୍ରଚାର ଆଦି କ୍ଷେତ୍ରରେ ଦରକାର ପଡିଥାଏ । ଏପରିକି ମଣିଷର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଶ୍ମଶାନରେ ଶବସଂସ୍କାର ପର୍ଯ୍ୟନ୍ତ ଲୋକବାଦ୍ୟର ଆବଶ୍ୟକ ପଡିଥାଏ। ଦିନକୁ ଦିନ ଲୋପ ହୋଇଯାଉଥିବା କେତେକ ଲୋକବାଦ୍ୟ ସମ୍ପର୍କରେ ନିମ୍ନରେ ପ୍ରଦାନ କରାଗଲା ।

**ଖୋଳ(ମୃଦଙ୍ଗ)–** ଏହି ବାଦ୍ୟର ହାଣ୍ଡିଟି ମାଟିରେ ତିଆରି । ଏହାର ଧେୟା ପାଖ ମୁହଁଟି ୪/୫ ଇଞ୍ଚ ବ୍ୟାସ ଏବଂ ଚାୟାଁ ପଟ୍ଟ ମୁହଁଟି ଦେଢ ଫୁଟ ବ୍ୟାସର ହୋଇଥାଏ । ଗାଈ କିମ୍ବା ଗୋରୁ ଚର୍ମରେ ଏହାର ଦୁଇପାଖ ମୁହଁ ବନ୍ଦ କରାଯାଇ ଏଇ ଦୁଇ ମୁହଁର ଡାକୁଣୀକୁ ସରୁ ବଧିଦ୍ୱାରା ଟାଣି ଶକ୍ତ କରାଯାଇଥାଏ । ଏହି ଦୁଇ ପୁଡାର ମଧ୍ୟ ଭାଗରେ କିରଣ ଦିଆଯାଇଥାଏ । ଯାହାଦ୍ୱାରା ବାଦ୍ୟଟି ଠିକ୍ ଭାବେ ବାଜିବାରେ ସାହାଯ୍ୟ କରେ ଏହାକୁ ମୃଦଙ୍ଗ ବା ଦକ୍ଷିଣୀ ମଧ୍ୟ କୁହାଯାଇଥାଏ । ଏହାର ନାମକରଣ ପ୍ରକାରେ ବାଦ୍ୟର ଗଠନ ଶୈଳୀ ଓ ଶବ୍ଦ ଉଚ୍ଚାରଣରେ ସାଧାରଣ ଭିନ୍ନ ଥାଏ । ଏହା ଗାଁ ଗହଳିରେ ଶିବମନ୍ଦିରମାନଙ୍କରେ ହେଉଥିବା ହରିହର ଭେଟରେ ଅଞ୍ଚଳର ବିଭିନ୍ନ ପ୍ରାନ୍ତରୁ କୀର୍ତ୍ତନ ମଣ୍ଡଳୀମାନେ ଆସି କୀର୍ତ୍ତନ ଗାନ କରିବା ସହ ବାୟକମାନେ ଏହି ବାଦ୍ୟ ବଜାଇଥାନ୍ତି। ଗ୍ରାମର ଠାକୁର ବୁଲିବା ସମୟରେ ଅଷ୍ଟପ୍ରହରୀ ସମୟରେ ଶବର ଶୋଭାଯାତ୍ରା ସମୟରେ ଏହି ବାଦ୍ୟର ଆବଶ୍ୟକତା ପଡିଥାଏ । ଢୋଲକୀ ବାଦ୍ୟ ଆଙ୍କୁଲ ଗମ୍ଭାରୀ କିମ୍ବା ପଣସ କାଠର ଏକ ଫୁଟ ଗୋଲେଇ ଦେଢଫୁଟରୁ ଦୁଇଫୁଟ ଲମ୍ବର ଗଣ୍ଡିକୁ ଖୋଳି ପୋଲା କରାଯାଇଥାଏ । ଏହାର ଦୁଇ ପାର୍ଶ୍ୱ ମୁହଁକୁ ଛେଳି ଗାଈ, ଗୋରୁ ଚର୍ମଦ୍ୱାରା ଆବଦ୍ଧ କରାଯାଇ ବଧି ଦ୍ୱାରା ଦୁଇପାର୍ଶ୍ୱକୁ ବନ୍ଧାଯାଇଥାଏ । ଏହି ଚମଡାର ଦୁଇପାର୍ଶ୍ୱର ମଝି ଅଂଶରେ କିରଣ ଦିଆଯାଇଥାଏ । ଏହାକୁ ଭାରତ ଲୀଳା ସଖୀ ନାଚ, କେଳାନାଚ, ଆଦିବାସୀ ନୃତ୍ୟ ପରି କେତେକ ଲୋକନୃତ୍ୟରେ ବଜାଯାଇଥାଏ ।

**ଘୁଡୁକୀ–** ଏହା ଗମ୍ଭାରୀ କାଠରେ ତିଆରି ହୋଇଥାଏ । ଏହାର ବ୍ୟାସ ୬ ଇଞ୍ଚ ଓ ଲମ୍ବ ଏକ ଫୁଟ ହୋଇଥାଏ । ଏହାର ତୁମ୍ବଟି ପ୍ରାୟ ୧/୪ ଇଞ୍ଚର ପତଳା କରାଯାଇଥାଏ । ଯାହା





ଦ୍ୱାରା କି ବାଜାର ଶବ୍ଦ ମଧୁର ଶୁଭେ । ଏହାର ଦୁଇ ପାର୍ଶ୍ୱ ମୁହଁ ମଧ୍ୟରୁ ଯେଉଁ ପାର୍ଶ୍ୱଟି ଅଳ୍ପ ଚଉଡା ସେହି ପାର୍ଶ୍ୱ ମୁହଁକୁ ଗୋଧି ଚର୍ମ ଦ୍ୱାରା ଅଠାଦେଇ ବନ୍ଦ କରିଦିଆଯାଇଥାଏ । ଏହି ଚର୍ମର ମଧ୍ୟ ଭାଗରୁ ତାଳି ବାହୁଙ୍ଗାର ସରୁ କେରଟ କିମ୍ବା ପ୍ଲାଷ୍ଟିକ୍ ତନ୍ତୁ ସଂଯୋଗ କରାଯାଇ ସେହି ସୂତାକୁ ଛୋଟ ବାଉଁଶ କିମ୍ବା ଶିଶୁ କାଠରେ ବନ୍ଧା ଯାଇଥାଏ । ଏହି ସୂତାର ଲମ୍ବ ଘୁଡୁକୀ ତମ୍ବାର ଲମ୍ବାଠାରୁ ପ୍ରାୟ ୬ଇଞ୍ଚ ବଳକା କରି ବନ୍ଧାଯାଇଥାଏ । ସୂତା ବନ୍ଧାଯାଇଥିବା କାଠ ଖଣ୍ଡକୁ ହାତରେ ଧରି ଘୁଡୁକୀକୁ କାଖରେ ଜାକି ବାଦକ ନିଜ ଅଙ୍ଗୁଳି ନଖରେ କିମ୍ବା ପ୍ଲାଷ୍ଟିକ ଖଣ୍ଡରେ ବଜାଇଥାଏ । ନିଜ ପାପୁଲିରେ ସୂତାକୁ ଟାଣି ଧରିଥିବା କାଠଖଣ୍ଡର ଦୁଇ ପାର୍ଶ୍ୱରେ ଛୋଟ ଘୁଙ୍ଗୁର ବନ୍ଧାଯାଇଥାଏ । ଏହି ଘୁଡୁକୀକୁ ବାଦକ ଗୀତ ଗାଇ ଗାଇ ବଜାଇବା ସମୟରେ ଅତି ସୁନ୍ଦର ଶୁଭୁଥାଏ । ଏହି ନାଚ ଗାଁ ଗହଳିମାନଙ୍କରେ ଯାନିଯାତ୍ରାରେ ପୁରାଣ ସୁଆଙ୍ଗ ଆଦି ବୋଲିବା ସମୟରେ ବଜାଯାଇଥାଏ ।

**କେନ୍ଦରା–** ଏକ ଫାଳ ନଡିଆ ସଢେଇରେ ଦୁଇଫୁଟ ଲମ୍ବର ଏକ ବାଉଁଶ ବାଡି ସଂଯୁକ୍ତ କରାଯାଇ ସେହି ସଢେଇ ମୁହଁରେ ଗୋଧି ଚର୍ମ ଅଠାଦ୍ୱାରା ଆଛାଦିତ କରାଯାଇଥାଏ । ଏହା ପରେ ବାଉଁଶର ଦୁଇପାର୍ଶ୍ୱକୁ ସରୁ ତାର ଦ୍ୱାରା ବନ୍ଧାଯାଇଥାଏ । ଏହି ତାରକୁ ଟାଣ ଓ ହୁଗୁଳା କରିବା ପାଇଁ ବାଉଁଶ ବାଡିର ଅଗ୍ରଭାଗରେ ଏକ ବାଉଁଶ କୀଳା ଖଞ୍ଜାଯାଇଥାଏ । ଏହି କୀଳା ତାରକୁ ବାନ୍ଧି ରଖିବା ସହ ବଜାଇବାରେ ସାହାଯ୍ୟ କରିଥାଏ । ଏହି ତାରକୁ ଟାଣକରିବା ସହ ସ୍ୱର ଠିକ୍ କରିବା ପାଇଁ ଚର୍ମ ଉପରେ ଏକ ଛୋଟ ବାଉଁଶ ପାତି ଖଞ୍ଜାଯାଇଥାଏ । ଯାହାଦ୍ୱାରା ତାରଟି ଚମଡାଠାରୁ ଅଳ୍ପ ଉପରେ ରହେ ଏବଂ ଠିକ୍ ସ୍ୱର ଉତ୍ତୋଳନ କରିଥାଏ ।ଏହାର ସଢେଇ ଅଂଶଟି ଛାତିକୁ ଲାଗିବା ସହ ଦଣ୍ଡର ଶେଷ ଅଂଶଟି ବାମହାତ ପାପୁଲିରେ ସଂଯୋଗ ହୋଇଥାଏ । ସ୍ୱର ସୃଷ୍ଟି ପାଇଁ ୫/୭ ଗୋଟି ଘୋଡାବାଳର ଗୁଣ ଦିଆଯାଇଥିବା ଏକ ଛୋଟ ବାଉଁଶଡପାତିର କାଣ୍ଡ ଆବଶ୍ୟକ ପଡିଥାଏ । ଏହି କାଣ୍ଡପାତିକୁ ଡାହାଣ ହାତରେ ଧରି ତା'ର ଉପରେ ଘୋଡା ବାଳକୁ ଆସ୍ତେ ଆସ୍ତେ ଘର୍ଷଣ କଲେ ସେଥିରୁ ମଧୁର ସ୍ୱର ବାହାରି ଥାଏ । ଏହାକୁ ତାଳଦେଇ ଗାଇବା ପାଇଁ ବାମ ହାତରେ ଅଙ୍ଗୁଳିଗୁଡିକ ସାହାଯ୍ୟ କରିଥାନ୍ତି । ଗାଁ ଦାଣ୍ଡରେ ଭିକ୍ଷାବୃତ୍ତି କରୁଥିବା ବ୍ୟକ୍ତି ଏହାକୁ ବଜାଇ ରୋହିତ ଶୋକ, ଟିକା ଗୋବିନ୍ଦଚନ୍ଦ୍ର, ଶରୀର ଭେଦ ଭଜନମାନ ଗାଇ ଶୁଣାଇ ଥାଆନ୍ତି । ଏହି ବାଦ୍ୟର ସ୍ୱର ଏତେ ମଧୁର ଯେ ଗାଇବା ଲୋକର କଣ୍ଠ ସ୍ୱର ସହ ମିଶି ଯାଇଥାଏ । ଏହା ଏକ କରୁଣ ରସବ୍ୟଞ୍ଜକ ଲୋକବାଦ୍ୟ ରୂପେ ଖ୍ୟାତ ।

**ଖଞ୍ଜଣି–** ଏହା ପଣସ କାଠ, ଗମ୍ଭାରୀ କାଠ କିମ୍ବା ଆଙ୍କୁଲ କାଠରେ ତିଆରି । ଏହା ୬ ଇଞ୍ଚ ବ୍ୟାସଠାରୁ ୧୦ ଇଞ୍ଚ ବ୍ୟାସ ମଧ୍ୟରେ । ୧/୪ ଇଞ୍ଚ ମୋଟା ବିଶିଷ୍ଟ ଏକ ତୁମ୍ବାକୃତି ଅଟେ । ଏହାର ଦୁଇ ମୁହଁ ମଧ୍ୟରୁ ଚଉଡା ପଟକୁ ଗୋଧି ବା ଗୋଇ ଚର୍ମ ଅଠାଦ୍ୱାରା ଲଗାଯାଇଥାଏ । କାଠ ତୁମ୍ବାର ମଝିରେ ତିନୋଟି ଗାତ କରାଯାଇ ସେହି ସ୍ଥାନମାନଙ୍କରେ ମୋଟା ତାର କିମ୍ବା କଣ୍ଟାଦ୍ୱାରା ଦୁଇ ତିନି ଗୋଟି ପିତଳ କିମ୍ବା ଟିଣର ଛୋଟ ଛୋଟ ଗିନି ଖଞ୍ଜା ଯାଇଥାଏ । ଏହା ଭଜନ, ତ୍ରିନାଥ ମେଳା ଏବଂ ଆଦିବାସୀ ସମ୍ପ୍ରଦାୟର ନୃତ୍ୟ–ଗୀତାଦିମାନଙ୍କରେ ବଜାଯାଇଥାଏ । ପୂର୍ବକାଳରେ ଏହା ଭାଗବତ ଟୁଙ୍ଗିମାନଙ୍କରେ ଭଗବାନଙ୍କ ନାମ ସ୍ମରଣ ପାଇଁ ବଜା ଯାଉଥିଲା ।

**ମହୁରୀ–** ଏହା ପିତଳରେ ତିଆରି ହୋଇଥାଏ । ଏହାର ଲମ୍ବ ଏକ ଫୁଟଠାରୁ ଦେଢଫୁଟ । ମୁହଁଟି ଦେଢ ଇଞ୍ଚ ବ୍ୟାସର ଛତ୍ରାକାର ହୋଇଥାଏ । ଅଗ୍ର ଭାଗଟି ସରୁ ହୋଇ ଛୋଟ ରନ୍ଧ୍ରଟିଏ ଥାଏ । ଏଥିରେ ବେତ କିମ୍ବା ବାଉଁଶ ପାତିର ଦୁଇଟି ଫାଳକୁ ସୂତା ଦ୍ୱାରା ବାନ୍ଧି ସେହି ରନ୍ଧ୍ରରେ ମହୁମିଠା ଦ୍ୱାରା ଖଞ୍ଜା ବାଉଁଶ ପାତି ଦେଇ ଫୁଙ୍କିଲେ ସ୍ୱର ଉତ୍ପନ୍ନ ହୁଏ । ଏହା ବିଶେଷ କରି ବିବାହ ଉତ୍ସବ, ଯାନିଯାତ୍ରାଦିମାନଙ୍କରେ ବଜାଯାଇଥାଏ । ଏହା ଧୋବାନାଚ, ଗୋଲାନାଚ, ଦଣ୍ଡନାଚ, ପ୍ରହଲ୍ଲାଦ ନାଟମାନଙ୍କରେ ବିଶେଷ ଆବଶ୍ୟକ ପଡିଥାଏ । ଏହାକୁ ମୁଖବୀଣା ବୋଲି କୁହାଯାଏ ।

**ନାଗେଶ୍ୱର–** ଏହା ପାଚିଲା ଲମ୍ବ ଲାଉତୁମ୍ବା ବା ବଣ ଲାଉତୁମ୍ବା ଓ ସରୁ ବାଉଁଶ ନଳୀ ଖଣ୍ଡରେ ତିଆରି । ପାଚିଲା ଲାଉ ତୁମ୍ବାର ରସ ବାହାର କରି ତୁମ୍ବାର ଠିକ୍ ନାଭି ସ୍ଥଳରେ





ଏକ ଗର୍ତ୍ତ କରାଯାଇ ସେଥିରେ ୭ଗୋଟି କଣାଯୁକ୍ତ ବାଉଁଶ ନଳୀକୁ ଗହମ କିମ୍ବା ଶିଠା ଦ୍ୱାରା ସଂଯୋଗ କରାଯାଇଥାଏ। ଏହାର ଉପରକୁ ଲମ୍ବିଥିବା ଡେଙ୍ଗର ସରୁ ମୁଖଟିକୁ ଛୋଟ କଣା କରି ସେଥିରେ ବେତ ବାଉଁଶର ସରୁ ପାତିର ଦୁଇଟି ଫାଳକୁ ଶିଠା ଦ୍ୱାରା ଆବଦ୍ଧ କରାଯାଇଥାଏ। ଏହାର ବେକ ପାଖରେ ଏକ କ୍ଷୁଦ୍ରକଣା କରାଯାଇଥାଏ। ଏହି ବାଉଁଶ ପାତିକୁ ମୁହଁ ଲଗାଇ ଫୁଙ୍କିଲେ ଏହା ସୁନ୍ଦର ଶବ୍ଦ ସୃଷ୍ଟି କରିଥାଏ ଏବଂ ଅଙ୍ଗୁଳିଦ୍ୱାରା ଆବଦ୍ଧ କରାଯାଇ ସ୍ୱର ଉତ୍ତୋଳନ କରାଯାଇଥାଏ। କେଳା ସମ୍ପ୍ରଦାୟର ଲୋକମାନେ ସାପ ଖେଳାଇଲାବେଳେ ଏହାକୁ ବଜାଇଥାଆନ୍ତି। ବିଶେଷ କରି ନାଗସାପ ଖେଳାଇବା ପାଇଁ ଆବଶ୍ୟକ ପଡୁଥିବା ଯୋଗୁଁ ଏହାକୁ ନାଗେଶ୍ୱର କୁହାଯାଏ। ଏହା ଶ୍ରୁତି ମଧୁର ଅଟେ। ଏହା ମନୋରଞ୍ଜନ ପାଇଁ ମଧ୍ୟ ବେଳେବେଳେ ବଜାଯାଇଥାଏ।

**ବଂଶୀ–** ଏହା ବାଉଁଶରେ ତିଆରି ହୋଇଥିବା ଯୋଗୁଁ ଏହାର ନାମ ବଂଶୀ ଅଟେ। ଏହା ସରୁ ବାଉଁଶ ନଳୀରେ ତିଆରି ହୋଇଥାଏ। ଏହା ପ୍ରାୟ ୧୦ ଇଞ୍ଚଠାରୁ ଆରମ୍ଭ କରି ୨/୩ ଫୁଟ ଲମ୍ବର ମଧ୍ୟ ଦେଖିବାକୁ ମିଳେ। ଏହାର ସ୍ୱର ଅତି ମଧୁର। ଏହା ଦୁଇ ପ୍ରକାର ଦେଖାଯାଏ। ଗୋଟିଏ ପାଟିରେ ପୂରାଇ ଫୁଙ୍କି ବଜାଯାଏ ଏବଂ ଅନ୍ୟଟି ତଳ ଓଠରେ ଭରା ଦେଇ ରନ୍ଧ୍ରବାଟେ ଫୁଙ୍କି ବଜାଯାଏ। ଶବ୍ଦ ସୃଷ୍ଟି ପାଇଁ ଫୁଙ୍କିବା ପାଖରେ ବାଉଁଶର ଆରମ୍ଭରୁ ଏକ ଇଞ୍ଚ ବ୍ୟବଧାନରେ ଗୋଟିଏ ରନ୍ଧ୍ରଥାଏ ଏବଂ ତା'ର ଶେଷରେ ସପ୍ତସ୍ୱର ସୃଷ୍ଟି ପାଇଁ ଛଅଗୋଟି ରନ୍ଧ୍ରଥାଏ। ଦୁଇ ହାତ ଅଙ୍ଗୁଳିଦ୍ୱାରା ଆବଦ୍ଧ କରି ଏଥିରେ ସ୍ୱର ସୃଷ୍ଟି କରାଯାଇଥାଏ। ପ୍ରଭୁ କୃଷ୍ଣ ଏହାକୁ ବଜାଇ ସାରା ବିଶ୍ୱକୁ ମୋହି ପାରିଥିଲେ ବୋଲି ଏହାର ନାମ ମୋହନବଂଶୀ। ଏହା ଓଡିଶୀ, ଛାନ୍ଦ, ଶାସ୍ତ୍ରୀୟ ସଙ୍ଗୀତମାନ ଗାନ କରିବା ସମୟେ ବଜା ଯାଇଥାଏ। କୃଷ୍ଣଲୀଳା, ରାଧାପ୍ରେମ ଲୀଳାରେ ମଧ୍ୟ ଏହା ବାଦନ କରାଯାଇଥାଏ। ପଲ୍ଲୀ ଗାଁମାନଙ୍କରେ ଗୋଠକୁ ଗାଈ ନେବାବେଳେ କିମ୍ବା ବିଲ, ବଣମାନଙ୍କରେ ଏହାକୁ ଲୋକମାନେ ବଜାଇବାର ଦେଖାଯାଏ। ଏହା ଆଦିବାସୀ ସମ୍ପ୍ରଦାୟର ନୃତ୍ୟ ଗୀତାଦି ସାଂସ୍କୃତିକ କାର୍ଯ୍ୟକ୍ରମମାନଙ୍କରେ ମଧ୍ୟ ବ୍ୟବହୃତ ହୋଇଥାଏ।

**ତୂରୀ–** ଏହା ପିତଳରେ ତିଆରି ହୋଇଥାଏ। ଏହା ଦେଢଫୁଟରୁ ଦୁଇ ଫୁଟ ଲମ୍ବ ହୋଇଥାଏ। ଏହା ଉପରକୁ ସାଧାରଣ ଭାବେ ବଙ୍କା ହୋଇଥାଏ। ଏହାର ମୁହଁଟି ୨/୩ ଇଞ୍ଚ ବିଶିଷ୍ଟ ଛତ୍ରାକାର ହୋଇଥାଏ। ଏହାର ଅଗ୍ରଭାଗଟି ସରୁ। ଓଠରେ ଧରି ଫୁଙ୍କିବା ପାଇଁ ଏକ ସରୁ ବଳା ଖାପି ପରି ଏଥିରେ ଲଗାଯାଇ ଥାଏ। ଏହାକୁ ଫୁଙ୍କିଲେ ଖୁବ୍ ଉଚ୍ଚ ଶବ୍ଦ ହୁଏ । ଏହାର ସାରା ଶରୀରଟି ଗୋଟିଏ ଅଂଶରେ ତିଆରି। ମନ୍ଦିରମାନଙ୍କରେ ଦେବନୀତି ସମୟେ ତୂରୀ ବଜାଯାଇଥାଏ।

**କାହାଳୀ–** ଏହା ସରୁ ଅଟେ। ଏହାର ଲମ୍ବ ପ୍ରାୟ ୩/୪ ଫୁଟ ହୋଇଥାଏ। ଏହାର ମୁହଁଟି ୨ ଇଞ୍ଚ ବ୍ୟାସ ହୋଇଥାଏ। ଏହା ପିତଳରେ ତିଆରି। ଏହାର ଶରୀରଟି ତିନୋଟି ଭାଗରେ ବିଭକ୍ତ। ଏହି ଘାରିରେ ଠିକ୍ ସଂଯୋଗ କରି ତିନୋଟି ଦଣ୍ଡକୁ ଏକାଠି କରି ବଜାଯାଇଥାଏ। ଏହାକୁ ଫୁଙ୍କିଲେ ଖୁବ୍ ଶବ୍ଦ ହୋଇଥାଏ। ଏହା ଦେବନୀତି, ଠାକୁର ବିଜେ ସମୟରେ ବଜାଯାଇଥାଏ।

**ଶଙ୍ଖ–** ଏହା ଏକ ସମୁଦ୍ର ଜୀବର ଅଙ୍ଗରକ୍ଷକ ଆବରଣ ଶାମୁକା ଅଟେ। ହିନ୍ଦୁ ସଂସ୍କୃତିରେ ଏହାର ଧ୍ୱନିକୁ ଶୁଭ ସୂଚକ ଭାବେ ମର୍ଯ୍ୟାଦା ଦିଆଯାଇଥାଏ । ଏହା ଛୋଟ ବଡ ବିଭିନ୍ନ ପ୍ରକାର ମିଳିଥାଏ। ଏହାର ମୁହଁଟିକୁ ଜଉ ଦିଆଯାଇ ଚିକ୍କଣ ଓ ଖାଲୁଆ କରାଯାଇଥାଏ । ଯାହାଦ୍ୱାରା କି ଫୁଙ୍କିବାକୁ ସୁବିଧା ହୁଏ। ଏହାର ପେଟ ଅଂଶଟି ଅଳ୍ପ ଫାଙ୍କା ଥାଏ। ଏହାକୁ ଫୁଙ୍କିଲେ ପେଟ ଫାଙ୍କା ଦେଇ ଧ୍ୱନି ସୃଷ୍ଟି ହୋଇଥାଏ। ଏହାର ତଳ ଅଂଶଟି ସରୁ ଓ ଗୋଜିଆ, ଯାହାକି ବଜାଇବା ପାଇଁ ଓ ଧରିବାରେ ସାହାଯ୍ୟ କରିଥାଏ। ଏହା ଠାକୁରଙ୍କ ମାଜଣା, ଆଳତି ଯାନିଯାତ୍ରାଦି ସାଙ୍ଗକୁ ବିବାହ, ବ୍ରତ, ଗୃହ ପ୍ରତିଷ୍ଠାଦି କର୍ମ ମାନଙ୍କରେ ବଜାଯାଇଥାଏ। ଆଜିକାଲି ଯୋଡି ଶଙ୍ଖ ଦଳମାନ ବିଭିନ୍ନ ପ୍ରକାର ତାଳରେ ଏହାକୁ ବଜାଇ ନୃତ୍ୟ ଭଙ୍ଗୀମାନ ପ୍ରଦର୍ଶନ କରୁଥିବାର ଦେଖାଯାଏ। ଏହା ପୁରାଣ ଶାସ୍ତ୍ର ବର୍ଣ୍ଣିତ ଏକ ଧ୍ୱନି ବାଦ୍ୟ ହିସାବରେ ସ୍ୱୀକୃତ।

**ବିଗୁଲ–** ଏହା ତମ୍ବାରେ ତିଆରି ମୁହଁଟି ଚେପଟା ଓ ପୋଲା ହୋଇଥାଏ। ଶରୀରଟି ନଳା ସଦୃଶ୍ୟ । ଏହାର ଦୁଇ ମୁହଁକୁ ଆବଦ୍ଧ କରାଯାଇଥାଏ। ଉପରପଟରେ ସରୁକଣାଟିଏ



ଥାଏ। ଏହି ନଳୀ ଭିତରେ ଛୋଟ ଗୋଡି କିମ୍ବା ଗୋଲ ମଞ୍ଜି ପକାଯାଇଥାଏ। ଏହାକୁ ଫୁଙ୍କିଲେ ପବନ ଦ୍ୱାରା ମଞ୍ଜିଟି ତମ୍ବାରେ ବାଡେଇ ହୋଇ ଧ୍ୱନି ସୃଷ୍ଟି କରେ। ଏହାକୁ ବର୍ତ୍ତମାନ ଡ୍ରାମା, ଥିଏଟର, ଫୁଟବଲ, ଭଲିବଲ ଆଦି ଖେଳମାନଙ୍କରେ ଶୃଙ୍ଖଳାର ସୂଚନା ପାଇଁ ବ୍ୟବହାର କରାଯାଇଥାଏ।

**ବିଭିନ୍ନ ବସ୍ତୁରୁ ପ୍ରସ୍ତୁତ ହୋଇଥିବା ପେଁକାଳୀ**

**କୋଇଲି ବାଦ୍ୟ–** ବର୍ଷାଦିନେ ପାକଳ ଆମ୍ବ ଟାକୁଆରୁ ଗଜା ବାହାରିଥାଏ। ଏହି ଗଜା ବାହାରୁଥିବା ଆମ୍ବ ଟାକୁଆକୁ ଧୀରେ ଫାଳ କଲେ ତା' ମଧ୍ୟରୁ କୋଇଲି ବାହାରିଥାଏ। ଏହା ଖୁବ୍ ନରମ ଦୁଇଫାଳିଆ, ଏହା ଉପରେ ଏକ ନରମ ଢାଙ୍କୁଣୀ ଘୋଡେଇ ହୋଇ ରହିଥାଏ। ଏହାକୁ ଚଟାଣରେ ଏହାର ଆଗପଟକୁ ଆସ୍ତେ ଘୋରିଲେ ଦୁଇଫାଳିଆ ଅଂଶର କିଛି ଫାଙ୍କ ସୃଷ୍ଟି ହୁଏ। ଏହାକୁ ପାଟିରେ ଧରି ଫୁଙ୍କିଲେ ଗଜା ସୃଷ୍ଟିକାରୀ ଫାଙ୍କ ଦେଇ ସୁନ୍ଦର ଧ୍ୱନି ସୃଷ୍ଟି ହୁଏ। କୋଇଲିକୁ ଦୁଇଫାଳ କରି ମଝିରେ କେନା ପତ୍ର ଫୁଙ୍କିଲେ ଏହାମଧ୍ୟ ସୁନ୍ଦର ଭାବେ ବାଜୁଥାଏ। ଏହା ପିଲାଙ୍କ ଖେଳନା ବାଦ୍ୟ ହିସାବରେ ଗୃହୀତ।

**ସାରୁପତ୍ର ବାଦ୍ୟ–** ବର୍ଷାଦିନେ ସାରୁଗଛରୁ ବାହାରିଥିବା ପିକକୁ ତୋଳି ତା' ମୂଳକୁ ଆସ୍ତେ ଆସ୍ତେ ଖଣ୍ଡ ଖଣ୍ଡ କଲେ ପିକ ମଧ୍ୟରୁ ଏକ ଲମ୍ବ କେଶର ପରି ଅଂଶ ବାହାରିଥାଏ। ଏହି ପୋଲା ପିକର ମୂଳ ଅଂଶ ପାଟିରେ ଦେଇ ଫୁଙ୍କିଲେ ଏହା ଧ୍ୱନି ସୃଷ୍ଟି କରିଥାଏ। ଏହି ବାଦ୍ୟ ପିଲାମାନଙ୍କୁ ଅତି ଆନନ୍ଦ ଦେଇଥାଏ।

**ନଡିଆ/ତାଳପତ୍ର ମହୁରୀ–** କଞ୍ଚାପତ୍ରକୁ ପ୍ରଥମେ ଆଙ୍ଗୁଳେ ମୋଟାରେ ଚେପଟା କରି ସରୁରେ ବୁଡେଇ ବୁଡେଇ ଲମ୍ବା କରାଯାଇଥାଏ। ଏହାର ଗୋଟିଏ ପତ୍ର ସରିଲେ ତା' ମଧ୍ୟରେ ଆଉ ଏକ ପତ୍ର ସଲଗ୍ନ କରି ମୋଡାଯାଇଥାଏ। ଏହା ଫୁଟେ ଦେଢଫୁଟ ଲମ୍ବ ବିଶିଷ୍ଟ ମଧ୍ୟ କରାଯାଇଥାଏ। ଏହାର ଆକୃତି ଠିକ୍ ମହୁରୀ ପରି ହୋଇଥାଏ। ଏହାକୁ ବଜାଇଲେ ସୁନ୍ଦର ଶବ୍ଦ ସୃଷ୍ଟି ହୋଇଥାଏ।

**ବିନା ଯନ୍ତ୍ରରେ ମୁଖରୁ ସୃଷ୍ଟି ହେଉଥିବା ବାଦ୍ୟ–** ହୁଳହୁଳି ସ୍ତ୍ରୀ ଲୋକମାନେ ପାଟିର ଧ୍ୱନି ଓ ଜିଭର ସଂଯୋଗରେ ଏକ ପ୍ରକାର ଧ୍ୱନି ସୃଷ୍ଟିକରନ୍ତି ଏହାକୁ ହୁଳହୁଳି କୁହାଯାଏ। ଏହା ହିନ୍ଦୁ ସଂସ୍କୃତିର ଏକ ଶୁଭ ସୂଚକ ଧ୍ୱନି ଅଟେ। ବିବାହ ଇତ୍ୟାଦି ଶୁଭ କାର୍ଯ୍ୟ ବନ୍ଦାପନା ଗୃହ ପ୍ରତିଷ୍ଠାଦି ଯେକୌଣସି ଶୁଭ କାର୍ଯ୍ୟ ଆରମ୍ଭରେ ହୁଳହୁଳି ପଡିଥାଏ। ଏହି ଧ୍ୱନି ମନକୁ ପବିତ୍ର କରିବା ସହ ବ୍ୟକ୍ତି ବିଶେଷଙ୍କ ମଙ୍ଗଳ କାମନା କରିଥାଏ। ଏହି ହୁଳହୁଳି ଧ୍ୱନି ବେଦମନ୍ତ୍ରଠାରୁ ଆହୁରି ଶୁଭ ସୂଚକ ଧ୍ୱନି ବୋଲି ହିନ୍ଦୁ ସଂସ୍କୃତିରେ ବିଶ୍ୱାସ ରହିଛି।

**ସୁସୁରି–** ଦୁଇ ଆଙ୍ଗୁଳିକୁ ସଂଯୋଗକରି ଜିଭ ତଳେ ଦେଇ ଫୁଙ୍କିଲେ ଏବଂ ତଳ ଓଠକୁ ଚିପି ଧରି ଫାଙ୍କ ସୃଷ୍ଟିକରି ପବନ ଶୋଷିଲେ ଏହା ଖୁବ୍ ବଡ ଶବ୍ଦ ସୃଷ୍ଟି କରେ। ଏହାକୁ ଆଦିବାସୀମାନେ ନୃତ୍ୟ ଗୀତ ବୋଲିଲା ବେଳେ ମଝିରେ ମଝିରେ ବଜାଇଥାଆନ୍ତି।

**ଘଣ୍ଟ–** ଏହା ପିତଳରେ ତିଆରି। ଏହା ଏକ ଫୁଟ ବ୍ୟାସ ଓ ଦେଢ ଇଞ୍ଚ ଗଭୀରର ଏକ ପତଳା ବାଦ୍ୟ ଅଟେ। ଏହାର ପଛରେ ଏକ ଇଞ୍ଚ ଦୂରତ୍ୱରେ ଦୁଇଟି କଣା କରାଯାଇ ସେଥିରେ ରସି ବନ୍ଧା ଯାଇଥାଏ। ଏହା ବାମ ହାତ ଅଙ୍ଗୁଳି ଗଳାଇ ଝୁଲାଇ ଧରିବାକୁ ସାହାଯ୍ୟ କରିଥାଏ। ବାଦକ ନିଜ ଦକ୍ଷିଣ ହସ୍ତରେ ଦେଢଫୁଟ ଲମ୍ବର ବଙ୍କା କେନ୍ଦୁବାଡି କିମ୍ବା ବେତବାଡିଦ୍ୱାରା ଏହାକୁ ଝୁଲାଇ ଧରି ଏହାର ପିଠିକୁ ବାଡେଇଲେ ଏହା ଡାଇଁ...ଡାଇଁ ଶବ୍ଦ କରିଥାଏ। ଠାକୁରଙ୍କ ଆଳତି, ନଗର ପରିକ୍ରମା, ରଥଯାତ୍ରା, ବେଢା ପରିକ୍ରମା ପରି ଉତ୍ସବ ଓ ଯାନିଯାତ୍ରାଦିମାନଙ୍କରେ ଏହାକୁ ବଜା ଯାଇଥାଏ।

**ଠୁରି–** ଏହା ମୋଟା ପିତ୍ତଳ ବା କଂସା ଧାତୁରେ ନିର୍ମିତ ଛଅ ଇଞ୍ଚ ବ୍ୟାସବିଶିଷ୍ଟ ଏକ ବାଦ୍ୟ। ଏହା ଝୁଲାଇ ଧରି କାଠ ନିର୍ମିତ ହାତୁଡିରେ ମନ୍ଦିରମାନଙ୍କରେ ଘଣ୍ଟ ଆଳତି ସମୟରେ ବାଦନ କରାଯାଏ।

**ଘଣ୍ଟି–** ଏହା ପିତଳରେ ତିଆରି। ଏହାର ଗର୍ଭ ମଧ୍ୟରେ ଏକ ପିତଳର ଜିଭ ଲାଗିଥାଏ। ଉପରେ ଝୁଲାଇବା ପାଇଁ ଆଙ୍କୁଡା ଓ ହାତରେ ଧରିବା ପାଇଁ ଛୋଟ ଦଣ୍ଡଥାଏ। ଏହାକୁ ହଲାଇଲେ ବାଜେ। ଏହା ଠାକୁରଙ୍କ ଆଳତି ଓ ଭୋଗ ସମୟେ ବାଜିଥାଏ। ଜନକଧାରୀ ବୁଲି ଭିକ୍ଷାବୃତ୍ତି କରିବା




ସମୟେ ଏହାକୁ ନିଜ ଜଙ୍ଘରେ ବାନ୍ଧିଥାଏ । ଘୁମୁସର ତାରସିଂ ରଣଘଣ୍ଟାଙ୍କ ପରି କେତେକ ସ୍ଥାନରେ ଘଣ୍ଟି ପୂଜା ପ୍ରଚଳନ ମଧ୍ୟ ଅଛି । ଏହାକୁ ଦେବାଦେବୀଙ୍କ ମନ୍ଦିରମାନଙ୍କରେ ଝୁଲାଇ ଥାଆନ୍ତି । ଭକ୍ତମାନେ ଠାକୁର ଦର୍ଶନ ପୂର୍ବରୁ ଏହାକୁ ବାଦନ କରି ଦର୍ଶନ କରିଥାଆନ୍ତି । ଏହାକୁ ନାଗାର୍ଜୁନ ନାଚ, ଦଶ ଅବତାର ନାଚ ସମୟେ ଘଣ୍ଟିମାଳ ଅଣ୍ଟାରେ ଧାରଣକରି ଲୋକେ ନାଚି ଥାଆନ୍ତି ।

**ଗିନି–** ଏହା ଦୁଇ ଇଞ୍ଚଠାରୁ ତିନି ଇଞ୍ଚ ବ୍ୟାସର ମୋଟା ପିତଳ ଥାଳ ଅଟେ । ଏହାର ମଧ୍ୟରେ ଛୋଟ କଣା ଥାଏ । ଏହି କଣାରେ ସୂତା ଦେଇ ତଳପଟେ ଗଣ୍ଠି ପକାଯାଇଥାଏ । ଦୁଇଟି ଥାଳକୁ ଗୋଟିଏ ସୂତାର ଦୁଇ ପାର୍ଶ୍ୱକୁ ବାନ୍ଧି ଦୁଇ ହାତରେ ବଜାଯାଇଥାଏ । ଏହା ବିଶେଷକରି ପ୍ରହ୍ଲାଦ ନାଟକ, ନାମ ସଂକୀର୍ତ୍ତନ, ମେଳା ମହୋତ୍ସବ ବାଦିରେ ବଜାଯାଇଥାଏ ।

**ଝାଞ୍ଜ–** ଏହା ପତଳା ପିତଳ ଓ ପ୍ରାୟ ଛଅଇଞ୍ଚ ବ୍ୟାସର ଥାଳ ଅଟେ । ଏହାର ମଧ୍ୟରେ ଏକ ଛିଦ୍ର ଥାଏ । ଦୁଇଟି ଥାଳକୁ ସୂତାର ଦୁଇ ପାର୍ଶ୍ୱରେ ଗୁଛି ଦୁଇ ହାତରେ ଧରି ବଜାଯାଇଥାଏ । ଏହା ଖୁବ୍ ଜୋରରେ ଧ୍ୱନି ସୃଷ୍ଟି କରିଥାଏ । ଏହା ପାଲାନାଚ, ରାଧାପ୍ରେମଲୀଳାଦି ନାଚମାନଙ୍କରେ ବଜାଯାଇଥାଏ । ଠାକୁରଙ୍କ ଆଳତି ସମୟେ ଏହାକୁ ବହୁ ସ୍ଥାନରେ ବଜାଇବାର ଦୃଷ୍ଟିଗୋଚର ହୁଏ ।

**ଦାସକାଠିଆ –** ଏହା ଶିଶୁ କାଠରେ ତିଆରି । ଏହା ଦୁଇ ଭାଗରେ ବିଭକ୍ତ । (୧) ଗାୟକ କାଠି (୨) ପାଳିଆ କାଠି । ଗାୟକ କାଠି– ଗାୟକ ଯେଉଁ କାଠି ବଜାନ୍ତି ତାହା ଦୁଇ ହାତରେ ଦୁଇ ହଳ ଧରି ବଜାଇ ଥାଆନ୍ତି । ଏହି କାଠିଗୁଡିକ ପ୍ରାୟ ଛଅ ଇଞ୍ଚ ଲମ୍ବା । ଏଗୁଡିକର ଉପର ଅଂଶ ଅର୍ଦ୍ଧ ଗୋଲାକାର ଏବଂ ତଳ ଅଂଶଟି ସମତଳ ହୋଇଥାଏ । ଏହାଦ୍ୱାରା ଦୁଇ କାଠିର ସମତଳ ଅଂଶଟି ଠିକ୍ ବାଜିବାରେ ସାହାଯ୍ୟ କରିଥାଏ । ଏହି କାଠିର ଅଗ୍ରଭାଗରେ ଛୋଟ ଛୋଟ ଘାଗୁଡି ଲାଗିଥାଏ । ଗାୟକ ଦୁଇ ହାତରେ ଦୁଇ ହଳ ଧରି ପାପୁଲି ଓ ଅଙ୍ଗୁଳି ସାହାଯ୍ୟରେ ଏହାକୁ ବଜାଇ ଥାଆନ୍ତି । ପାଳିଆ କାଠି– ପାଳିଆ ଭାଇଙ୍କ କାଠିର ଲମ୍ବ ଛଅଇଞ୍ଚ ଓ ଚେପ୍‌ଟା ହୋଇଥାଏ । ଏହା ଦୁଇ ଖଣ୍ଡରେ ବିଭକ୍ତ । ଏହି କାଠି ଦୁଇଟି ଗୋଟିଏ ହାତର ଅଙ୍ଗୁଳି ମଝିରେ ରଖି ଚାପି ଧରିଲେ ଦୁଇକାଠି ମଧ୍ୟରେ ଫାଙ୍କ ସୃଷ୍ଟି ହୁଏ, ଯାହାଦ୍ୱାରା କି ଏହି କାଠିକୁ ଅନ୍ୟ ହାତ ଅଙ୍ଗୁଳିରେ ଆଘାତ ଦେଲେ କାଠିକୁ କାଠି ବାଜି ଠକ୍ ଠକ୍ ଶବ୍ଦ ସୃଷ୍ଟି କରେ । ଏହାର ଅଗ୍ରଭାଗରେ ମଧ୍ୟ ଝୁମୁକା ଲାଗିଥାଏ । ଗାୟକ ଗୀତ ବୋଲିବା ସମୟେ ପାଳିଆ ଭାଇ ଶେଷରେ ଗୀତ ରାହା ଧରି ଏହାକୁ ବାଦନ କରିଥାଏ । ଏହା ପୁରାଣ, ସୁଆଙ୍ଗ ଆଦି ବୋଲିବା ସମୟେ ବଜାଯାଇଥାଏ ।

**ଢୋଲ–** ପଣସ କାଠ କିମ୍ବା ଗମ୍ଭାରୀ କାଠର ବଡ ଗଣ୍ଡିକୁ ଖୋଳି ପୋଲା କରାଯାଏ । ଏହାର ଦୁଇ ପାର୍ଶ୍ୱ ମୁହଁ ପ୍ରାୟ ସମାନ ଥାଏ । ଏହା ଗାଈ କିମ୍ବା ପୋଢ ଚର୍ମଦ୍ୱାରା ଆବଦ୍ଧ କରାଯାଇ ଚମଡା ବଧିଦ୍ୱାରା ଦୁଇ ପାର୍ଶ୍ୱକୁ ବାନ୍ଧି ଟାଣ କରାଯାଏ । ଏହାର ବ୍ୟାସ ପ୍ରାୟ ୧୧/୨ ଫୁଟରୁ ୨ ଫୁଟ ଏବଂ ଲମ୍ବ ୨୧/୨ ଫୁଟରୁ ୩ ଫୁଟ ମଧ୍ୟରେ ହୋଇଥାଏ । ଏହାର ଯେଉଁ ପାର୍ଶ୍ୱ ମଝିରେ ଶଗଡକାଳି ବା ଢୋଲ ବାଦ୍ୟ ଅଠା ଲଗାଯାଇଥାଏ, ସେହି ପାର୍ଶ୍ୱକୁ ଧେୟା ଏବଂ ଅନ୍ୟ ପାର୍ଶ୍ୱଟି ଚାୟା ଅଟେ ? ଏହାକୁ ବଜାଇବା ପାଇଁ ଦୁଇ ହାତର ଆବଶ୍ୟକ ପଡିଥାଏ । ଧେୟା ପଟଟି ବଜାଇବା ପାଇଁ ଅଗ୍ରଭାଗଟି ସାଧାରଣ ବଙ୍କା ଥିବା ବୃଦ୍ଧାଙ୍ଗୁଳି ମୋଟର କେନ୍ଦୁ କୟାଁ କିମ୍ବା ଆଙ୍କୁଲ ବାଡିଟିଏ ଆବଶ୍ୟକ ପଡିଥାଏ । ଏହି ବାଡିଟିର ଲମ୍ବ ପ୍ରାୟ ଦଶ ଇଞ୍ଚ । ଏହାର ଧେୟା ପାଖଟି ହସ୍ତ ଅଙ୍ଗୁଳି ସାହାଯ୍ୟରେ ବଜା ଯାଇଥାଏ ।

ଉପୁଳେଇ ନଗୁଁଆ, ଯାଜପୁର ରୋଡ



# ଶହୀଦ ବାଳକ ବାଜି ରାଉତ

ଡକ୍ଟର ହେମନ୍ତ କୁମାର ଛୋଟରାୟ

ଆମ ଦେଶ ଭାରତବର୍ଷ ବହୁ ସଂଗ୍ରାମୀମାନଙ୍କ ଆତ୍ମବଳିଦାନ ଫଳରେ ୧୯୪୭ ମସିହା ଅଗଷ୍ଟ ୧୫ତାରିଖରେ ସ୍ୱାଧୀନ ହେଲା । ଇଂରେଜମାନଙ୍କୁ ଏ ଦେଶରୁ ବିତାଡ଼ିତ କରିବା ପାଇଁ ସଂଗ୍ରାମୀମାନଙ୍କୁ ବହୁବର୍ଷ ଲାଗିଯାଇଥିଲା । ଦେଶକୁ ସ୍ୱାଧୀନ କରିବା ପାଇଁ ଆମ ଓଡ଼ିଶା ରାଜ୍ୟର ମଧ୍ୟ ଅନେକ ବୀର ସଂଗ୍ରାମୀମାନେ ଲୁହଲହୁ ଢ଼ାଳି ସଂଗ୍ରାମ ଜାରି ରଖିଥିଲେ । ନିର୍ମମ, ନିଷ୍ଠୁର, ନୃଶଂସ ଇଂରେଜ ସରକାରର ଅତ୍ୟାଚାର, ଶୋଷଣ, କଷଣ, ଜେଲ, ଜୋରିମାନା ଆଦିକୁ ଖାତିର ନକରି ସେମାନେ ମୁକ୍ତି ସଂଗ୍ରାମରେ ଝାସ ଦେଇଥିଲେ । ସେଥିରୁ ଅନେକଙ୍କୁ ନିଜର ବହୁମୂଲ୍ୟ ଜୀବନ ଦେବାକୁ ପଡ଼ିଥିଲା । ସେମାନଙ୍କ ମଧ୍ୟରେ ଢ଼େଙ୍କାନାଳ ଜିଲ୍ଲାର ନୀଳକଣ୍ଠପୁର ବାସିନ୍ଦା ବାରବର୍ଷର ବାଳକ ବାଜିରାଉତର ଜୀବନ ଉତ୍ସର୍ଗର କାହାଣୀ ଅତ୍ୟନ୍ତ ଲୋମହର୍ଷଣକାରୀ । ୧୯୩୮ ମସିହାରେ ଢ଼େଙ୍କାନାଳ ଗଡ଼ଜାତ ଆନ୍ଦୋଳନବେଳେ ଇଂରେଜ ବିରୁଦ୍ଧରେ ନିଜ ଜୀବନକୁ ବାଜି ଲଗେଇ ଏହି ବାଳକ ଯେଉଁ ଉଦାହରଣ ସୃଷ୍ଟିକଲା, ତାହା ଭାରତୀୟ ଇତିହାସରେ ଏକ ସ୍ୱତନ୍ତ୍ର ଅଧ୍ୟାୟ ସୃଷ୍ଟି କରିଛି । ଏହା ସମଗ୍ର ମଣିଷଜାତି ପାଇଁ ମଧ୍ୟ ପାଲଟିଯାଇଛି ପ୍ରେରଣାର ଉତ୍ସ ।

ଓଡ଼ିଶା ଥିଲା ବହୁରାଜାମାନଙ୍କ ଶାସନାଧୀନ । କିନ୍ତୁ ମୋଗଲ ଶାସନ କାଳରେ ଦୁଇପ୍ରକାର ରାଜତ୍ୱର ପ୍ରଚଳନ ଥିଲା । ଗୋଟିଏ ହେଲା ମୋଗଲବନ୍ଦୀ ଓ ଅନ୍ୟଟି ହେଲା ଗଡ଼ଜାତ ରାଜ୍ୟ । ତତ୍କାଳୀନ ଓଡ଼ିଶାରେ ୨୬ଟି ଗଡ଼ଜାତ ରାଜ୍ୟ ଥିଲା । ସେଥିମଧ୍ୟରେ ଢ଼େଙ୍କାନାଳ ହେଉଛି ଅନ୍ୟତମ ଗଡ଼ଜାତ ରାଜ୍ୟ । ୧୮୦୩ ମସିହାରେ ବ୍ରିଟିଶ୍‌ମାନେ ଓଡ଼ିଶା ଦଖଲ କରିବା ଫଳରେ ଗଡ଼ଜାତ ରାଜ୍ୟଗୁଡ଼ିକ ସେମାନଙ୍କ ସହ ବନ୍ଧୁତ୍ୱ ସ୍ଥାପନ କଲେ । ଇଂରେଜମାନଙ୍କ ସହାୟତା ପାଇ ପ୍ରଜାମାନଙ୍କ ଉପରେ ଅତ୍ୟାଚାର ଚାଲୁରଖିଲେ । ଢ଼େଙ୍କାନାଳ ଗଡ଼ଜାତର ରାଜାଙ୍କ ନାମ ଶଙ୍କର ପ୍ରତାପ । ସେ ଇଂରେଜମାନଙ୍କ ସହ ବନ୍ଧୁତା ସ୍ଥାପନ କରି ତାଙ୍କର ପ୍ରତିନିଧି ଭାବରେ ଶାସନ ଚଳାଉଥିଲେ । ସେ ଅତ୍ୟନ୍ତ ନିଷ୍ଠୁର ଓ ପ୍ରଜାପୀଡ଼କ ଥିଲେ । ତାଙ୍କର କର୍ମଚାରୀମାନଙ୍କ ପ୍ରତ୍ୟକ୍ଷ ଦୌରାତ୍ମ୍ୟରେ ପ୍ରଜାମାନେ ଅତ୍ୟାଚାରିତ ହେଉଥିଲେ । ଗୋରା ଫଉଜମାନେ ମଧ୍ୟ ଗରିବ ନିରୀହ ପ୍ରଜାମାନଙ୍କ ଉପରେ ବିନା କାରଣରେ ଜୁଲୁମ କରୁଥିଲେ । ମନଇଚ୍ଛା ଖଜଣା, ରାଜସ୍ୱ ଆଦାୟ ହେଉଥିଲା । ଫଳରେ ପ୍ରଜାମାନଙ୍କ ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଅବସ୍ଥା କ୍ରମଶଃ ଦୁର୍ବଳ ହୋଇପଡ଼ିଲା । ଧୀରେ ଧୀରେ ପ୍ରଜାମାନଙ୍କର କ୍ଷୋଭ ଓ ଅସନ୍ତୋଷର ବହ୍ନି ପ୍ରଜ୍ୱଳିତ ହେଲା ଓ ଏହା ଏକ ବିରାଟ ରୂପ ଧାରଣ କଲା । ସେତେବେଳେ ଜାତୀୟ ସ୍ତରରେ ମଧ୍ୟ ରାଜାଙ୍କ ଅନ୍ୟାୟ ଅତ୍ୟାଚାରକୁ ପ୍ରତିହତ କରିବା ପାଇଁ ବହୁନେତା, ବୁଦ୍ଧିଜୀବୀଙ୍କ ଉଦ୍ୟମରେ ୧୯୩୧ ମସିହାରେ ଗଡ଼ଜାତ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ୧୯୩୭ ମସିହାବେଳକୁ ଏହି ଆନ୍ଦୋଳନ ତୀବ୍ରରୂପ ଧାରଣ କରିଥିଲା । ଗଡ଼ଜାତ ଆନ୍ଦୋଳନର ଆହ୍ୱାନ ଢ଼େଙ୍କାନାଳର ପ୍ରଜାମାନଙ୍କୁ ରାଜାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ବାଟ ଫିଟାଇଲା । ଏହି ନୂତନ ବିପ୍ଳବର ନେତୃତ୍ୱ ନେଲେ ବୀର ବୈଷ୍ଣବ ପଟ୍ଟନାୟକ, ମହେଶ୍ୱର ସୁବାହୁ ସିଂ, ସାରଙ୍ଗଧର ଦାସ, ଲକ୍ଷ୍ମୀଧର ସାହୁ, କୃତିବାସ ପ୍ରଧାନ, ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ ଓ ମାଳତୀ ଚୌଧୁରୀ ପ୍ରମୁଖ । ଏହାକୁ





ସହାୟତା ଯୋଗାଇଲେ ପିପୁଲସ୍ ଫୋରମର ରାଧାନାଥ ରଥ, ବ୍ରଜସୁନ୍ଦର ଦାସ, ବାଲୁଙ୍କେଶ୍ୱର ଆଚାର୍ଯ୍ୟ ଓ ଭୁବନାନନ୍ଦ ଦାସ । ଦୃଢ଼ ସଙ୍ଗଠନ ଓ ପ୍ରଜାମାନଙ୍କ ଅସନ୍ତୋଷ ମିଶି ୧୯୩୭ ମସିହାରେ ସୃଷ୍ଟିହେଲା ପ୍ରଜାମଣ୍ଡଳ ଆନ୍ଦୋଳନ । ଏହି ଆନ୍ଦୋଳନର କେନ୍ଦ୍ରସ୍ଥଳୀ ହେଲା ଭୁବନଗ୍ରାମ । ଗଡ଼ଜାତର ସବୁଗ୍ରାମର ମୁଖିଆମାନେ ଏକତ୍ରିତ ହୋଇ ଭୁବନଠାରେ ବିଭିନ୍ନ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରୁଥିଲେ । ଆନ୍ଦୋଳନର ମୁଖ୍ୟ ଲକ୍ଷ୍ୟ ହେଲା, ପ୍ରଜାମାନଙ୍କ ଅଧିକାର ସାବ୍ୟସ୍ତ କରିବା । ରାଜାଙ୍କ ଆଦେଶକୁ ଅମାନ୍ୟ କରି ତାଙ୍କ ବିରୁଦ୍ଧରେ ଆନ୍ଦୋଳନ ଡାକରା ଦେଲେ ସବୁ ପ୍ରଜାମାନେ । ରାଜା ଏହା ଦେଖି ପ୍ରଜାମାନଙ୍କ ମେଳି ଭାଙ୍ଗିବାକୁ ଲାଗିପଡ଼ିଲେ । ଇଂରେଜ ସରକାରଙ୍କୁ ସବୁ ବିଷୟ ଗୁପ୍ତ ଭାବରେ ଜଣାଇ ଦେଲେ । ଆନ୍ଦୋଳନ ଦମନ ପାଇଁ ଗୋରା ପୁଲିସ୍‌ବାହିନୀ ନିରୀହ ପ୍ରଜାମାନଙ୍କ ଉପରେ ଆକ୍ରମଣ କରୁଥିଲେ । ରାଜାଙ୍କ ଶାସନର ପତନ ଘଟାଇବା ଓ ଇଂରେଜମାନଙ୍କୁ ଦେଶରୁ ବିତାଡ଼ିତ କରିବା ନିମନ୍ତେ ପ୍ରଜାମାନେ ନେଲେ ବଜ୍ର ଶପଥ । ବେକ କଟିଯାଉ ପଛେ ପ୍ରଜାମାନେ ନିଜ ଜିଦ୍‌ରୁ ଓହରିଲେ ନାହିଁ । ଏତିକିବେଳେ ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗଦେଲେ ବାରବର୍ଷର ବାଳକ ବାଜି ରାଉତ ।

ସେହି ବୀର ବାଳକର ଜନ୍ମ ୧୯୨୬ ମସିହା ଅକ୍ଟୋବର ମାସ ୫ତାରିଖରେ । ନୀଳକଣ୍ଠପୁରର ଏକ ଗରିବ ଖଣ୍ଡାୟତ ବଂଶର ହରି ରାଉତ ଓ ରାଣୀଆ ଦେବୀଙ୍କର ସେ ଥିଲେ ସୁପୁତ୍ର । ଶୈଶବ କାଳରେ ବାଜି ନିଜର ପିତାଙ୍କୁ ହରେଇ ବସିଲେ । ଦାରିଦ୍ର୍ୟ ହିଁ ତାଙ୍କ ଦୁଃଖର କାରଣ ଥିଲା । ମାତା ରାଣୀଆ ବହୁ କଷ୍ଟରେ ନିଜ ପେଟରୁ କାଟି ପୁଅକୁ ବଂଚାଇ ରଖିବାକୁ ଚେଷ୍ଟା କରୁଥିଲେ । ଦୁଃଖକଷ୍ଟ ମଧ୍ୟରେ ବଢ଼ିଥିବା ବାଜି ରାଉତ ଶେଷରେ ନିଜ ପରିବାରର ମର୍ଯ୍ୟାଦା ବଢ଼ାଇ ପାରିଥିଲେ । ଦେଶ ଜାତି ପାଇଁ ଗର୍ବ ଓ ଗୌରବର କାରଣ ମଧ୍ୟ ହୋଇପାରିଲେ । ନିର୍ମମ ଅତ୍ୟାଚାରୀ ଇଂରେଜ ସିପାହୀଙ୍କ ଗୁଳିରେ ବାଳକ ବାଜି ରାଉତ ମୃତ୍ୟୁବରଣ କରିଥିଲେ ୧୯୩୮ ମସିହା ଅକ୍ଟୋବର ମାସ ୧୧ତାରିଖରେ । ପ୍ରଜାମେଳିକୁ ଦମନ କରିବା ପାଇଁ ରାଜା ଶଙ୍କର ପ୍ରତାପଙ୍କ ଅନୁରୋଧରେ ଇଂରେଜ ପୋଲିସବାହିନୀ ବିଜୟ ଘୋଷଙ୍କ ଅଧୀନରେ ଭୁବନଠାରେ ପହଂଚିଲେ । ଆଗରୁ ହୋଇଥିବା ଯୋଜନା ଅନୁଯାୟୀ ପୋଲିସମାନେ ପ୍ରଜାମାନଙ୍କ ଉପରେ ଚଳାଇଲେ ଅକଥନୀୟ ଲାଠିପ୍ରହାର । ସେତେବେଳେ ସଂଗ୍ରାମୀମାନେ ହଠାତ ଏହାର ପ୍ରତିରୋଧ କରିବାର ସୁଯୋଗ ପାଇଲେ ନାହିଁ । ସେତେବେଳକୁ କିଛିଦିନ ହେବ ଝଡ଼ବର୍ଷା ଲାଗିରହିଥିଲା । ଅନ୍ଧାର ରାତିରେ ଦାଣ୍ଡ କବାଟ ଭାଙ୍ଗି ନୃଶଂସ ଭାବେ ପୋଲିସ୍‌ମାନେ ଲାଠିପ୍ରହାର, ଲୁଟତରାଜ ଓ ଗୃହଦାହ ଇତ୍ୟାଦି କାଣ୍ଡମାନ ଘଟାଇ ଚାଲିଲେ । ସହି ନପାରି ସଂଗ୍ରାମୀମାନେ ଏକଜୁଟ ହେବାକୁ ଲାଗିଲେ । ଏହାଦେଖି ପୋଲିସବାହିନୀ ପଛଘୁଞ୍ଚା ଦେଲେ । ଏତିକିବେଳେ ରଘୁ ନାୟକ ନାମରେ ଜଣେ ସଂଗ୍ରାମୀ ପୋଲିସ ଗୁଳିରେ ନିହତ ହେଲେ । ଭୁବନଠାରୁ ପୋଲିସ ବାହିନୀର ଶିବିର ପର୍ଯ୍ୟନ୍ତ ଗୋଟିଏ ମାତ୍ର ବାଟ ଥିଲା । ସେହିବାଟରେ ପଡ଼େ ନୀଳକଣ୍ଠପୁର ବ୍ରାହ୍ମଣୀ ନଦୀର ଘାଟ । ନୀଳକଣ୍ଠପୁରର ପ୍ରଜାମାନେ ସ୍ଥିର କରିଥିଲେ, ଶତ୍ରୁମାନଙ୍କୁ ଏହି ଘାଟରେ ପାର କରାଇଦେବେ ନାହିଁ । ସମସ୍ତ ପ୍ରଜାମାନେ ଏକ ଗ୍ରାମସଭାରେ ବସି ଏହି ନିଷ୍ପତ୍ତି ନେଇଥିଲେ । ବ୍ରାହ୍ମଣୀ ନଦୀ ଦୁଇକୂଳ ଖାଇ ପ୍ରଖର ସ୍ରୋତରେ ସେତେବେଳେ ଉଛୁଳି ଉଠୁଥାଏ । ସେଦିନ ରାତି ଅନ୍ଧାରିଆ ଥାଏ, ତା' ସାଙ୍ଗକୁ ଝିପିଝିପି ବର୍ଷା ମଧ୍ୟ ହେଉଥାଏ । ଘାଟ ଜଗିବା ପାଳିଥିଲା ବାପ ଛେଉଣ୍ଡ ବାଳକ ବାଜି ରାଉତର । ସେ ସାହସର ସହ ସ୍ୱଇଚ୍ଛାରେ ଘାଟ ଜଗିବା ଦାୟିତ୍ୱ ମୁଣ୍ଡାଇଥାଏ । ତା' ସହିତ ଥାଆନ୍ତି କେତେଜଣ ସ୍ୱେଚ୍ଛାସେବୀ । ହଠାତ୍ ପୋଲିସବାହିନୀ ଭୁବନରେ ଦମନଲୀଳା ଶେଷକରି ବିକଳରେ ଆସି ପହଂଚିଲେ ନୀଳକଣ୍ଠପୁର ନଦୀଘାଟରେ । ଉଚ୍ଚସ୍ୱରରେ ଡାକ ଛାଡିଲେ, 'ନାଉରୀଆ ନାଆ ଆଣ' । ବାଜିରାଉତ ମଧ୍ୟ ସେହିଭଳି ଉଚ୍ଚସ୍ୱରରେ ଜବାବ ଦେଲା, 'ପ୍ରଜାମଣ୍ଡଳର ଆଦେଶ ମୁଁ ଆପଣମାନଙ୍କୁ ଡଙ୍ଗାରେ ବସାଇ ଦେବିନାହିଁ' । ସିପାହୀମାନେ ଦୃଢ଼ ହୋଇ କହିଲେ, ଡଙ୍ଗା ନଆଣିଲେ ତୋତେ ଗୁଳିକରି ମାରିଦେବୁ । ଭୟଭୀତ ନହୋଇ ସେ ଜବାବ ଦେଲା, ମୁଁ ତୁମର ଗୁଳିକୁ ଭୟ କରେନାହିଁ । ଦେଶପାଇଁ ଜୀବନ ଦେବାକୁ ମୁଁ ପ୍ରସ୍ତୁତ ଅଛି । ଏତିକି କଥା ବାଜି ମୁହଁରୁ ବାହାରିବା ପରେ ହଠାତ ଗୋଟିଏ ଗୁଳି ଆସି





ବାଜିଲା । ସେ ତଳେ ଲୋଟିପଡ଼ିଲା କ୍ଷଣକ ମଧ୍ୟରେ । ଥରଥର କଣ୍ଠରେ ଡାକ ଛାଡ଼ିଲା ଗ୍ରାମବାସୀମାନଙ୍କୁ । ତା'ପରେ ସବୁକିଛି ଶେଷ ହୋଇଗଲା ।

ବାଜିରାଉତର ଚିତ୍କାର ଶୁଣି ନିମିଷକ ମଧ୍ୟରେ ଶହଶହ ପ୍ରଜା ଧାଇଁ ଆସିଲେ ତା' ନିକଟକୁ । ସମସ୍ତେ କ୍ରୋଧାନ୍ୱିତ ହୋଇଉଠିଲେ । ଡଙ୍ଗାର ଦଉଡ଼ି ହାତରେ ଧରି ସିପାହୀମାନଙ୍କୁ ପାରିକରିବାକୁ ଦେଲେ ନାହିଁ । ଜୀବନ ବିକଳରେ ସିପାହୀମାନେ ଦଉଡ଼ିକୁ କାଟି ଡଙ୍ଗାରେ ନଦୀ ଗର୍ଭକୁ ପଳାଇଗଲେ । ମଝିନଈରୁ ଗୋଟିଏ ପରେ ଗୋଟିଏ ଗୁଳିବର୍ଷଣ କରି ବହୁଲୋକଙ୍କୁ ରକ୍ତାକ୍ତ କରିଦେଲେ । ବାଜି ରାଉତ ସହିତ ସେଠାରେ ମୃତ୍ୟୁବରଣ କରିଥିବା ଅନ୍ୟ ସଂଗ୍ରାମୀମାନେ ହେଲେ, ରଘୁନାୟକ, ନଟମଲ୍ଲିକ, ଫଗୁସାହୁ, ହୁରୁଷି ପ୍ରଧାନ ଓ ଲକ୍ଷ୍ମଣ ମଲ୍ଲିକ । ଏମାନଙ୍କ ରକ୍ତରଞ୍ଜିତ ଶରୀର ପଡ଼ିରହିଲା ସେଠି । ତା'ପରଦିନ ସକାଳ ହେବାରୁ ଛ'ଅ ଜଣ ଶହୀଦଙ୍କୁ ଫୁଲମାଳରେ ସଜେଇ ଶୋଭାଯାତ୍ରାରେ ଜେନାପୁର ନିଆଗଲା । ସେଠାରୁ ରେଳଯୋଗେ କଟକ ନିଆଗଲା । କଟକ ଷ୍ଟେସନଠାରୁ ବିରାଟ ପଟୁଆରରେ ହଜାର ହଜାର ଦେଶପ୍ରେମୀଙ୍କ ଗହଣରେ ସେମାନଙ୍କ ଶବକୁ ବିଭିନ୍ନ ସ୍ଥାନରେ ସମ୍ମାନିତ କରାଗଲା । ଶୋକାକୁଳ ପରିବେଶରେ ନିରବ ହୋଇଯାଇଥାଏ କଟକ ସହର । କାଠଯୋଡ଼ି କୂଳ ଖାନନଗର ଶ୍ମଶାନରେ ସେମାନଙ୍କର ଶବଦାହ କରାଗଲା । ସେଠି ଉପସ୍ଥିତ ଥିଲେ ସଂଗ୍ରାମୀ ଅନନ୍ତ ପଟ୍ଟନାୟକ, ସଚ୍ଚି ରାଉତରାୟ, ମୋତିଲାଲ ତ୍ରିପାଠୀ, ରବି ଘୋଷ, ଗୋବିନ୍ଦ ମହାନ୍ତି ପ୍ରମୁଖ । ଖାନନଗରଠାରେ ଶହୀଦମାନଙ୍କର ଚିତାଭସ୍ମ ଗଡ଼ଜାତ ରାଜତ୍ୱର ପତନ ଓ ଭାରତର ସ୍ୱାଧୀନତା ପାଇଁ ଲଢ଼େଇର ମୂଳଦୁଆ ପକାଇଥିଲା । ଫଳରେ କିଛିଦିନ ପରେ ରାଜାମାନଙ୍କର କୁଶାସନ ଓ ଇଂରେଜ ସରକାରର ଦମନଲୀଳାର ଅବସାନ ଘଟିଲା । କୋମଳମତି ବାଳକ ବାଜିରାଉତର ଆତ୍ମବଳିଦାନ, ସାହସ ଓ ଦେଶପ୍ରେମ ସମସ୍ତ ଭାରତୀୟଙ୍କ ହୃଦୟରେ ଆଣିଦେଲା ନୂତନ ସ୍ପନ୍ଦନ । ଏହାପରେ ବହୁ ଦେଶପ୍ରେମୀ ସ୍ୱାଧୀନତା ସଂଗ୍ରାମରେ ଆତ୍ମବଳିଦାନ ପାଇଁ ଆଗେଇ ଆସିଲେ । ସେହିମାନଙ୍କ ତ୍ୟାଗ ଓ କଷ୍ଟ ସ୍ୱୀକାର ଫଳରେ ଦେଶ ସ୍ୱାଧୀନ ହେଲା । ଚିରଦିନ ପାଇଁ ଲୋପ ହୋଇଗଲା ନିଷ୍ଠୁର ରାଜାମାନଙ୍କ କୁଶାସନ । ଶ୍ମଶାନର ମାଟିରେ ମିଶିଗଲା ସିନା ବାଜି ରାଉତର ଚିତାଭସ୍ମ କିନ୍ତୁ ଭାରତୀୟ ଇତିହାସରେ ସେ ହେଲା ଅମର ଶହୀଦ । ନିରିହ ବାରବର୍ଷର ବାଳକ ବାଜିରାଉତ ଆମମାନଙ୍କ ଗହଣରେ ନାହିଁ ସତ, ହେଲେ ତା'ର କର୍ତ୍ତବ୍ୟ ଓ ଦେଶ ଜାତି ପାଇଁ ତ୍ୟାଗର ସ୍ମାରକୀକୁ ଚିରଦିନ ପାଇଁ ସମସ୍ତେ ମନେରଖିବେ । ଦେଶପ୍ରତି ଏହିଭଳି ତ୍ୟାଗକୁ ଆଜିର ଯୁବପିଢ଼ି ଅନୁସରଣ କଲେ ଭାରତବର୍ଷର ନିଶ୍ଚୟ ଅଭ୍ୟୁଦୟ ଘଟିବ, ଏଥିରେ ସନ୍ଦେହ ନାହିଁ ।

ନାଗାବଗିଚା, ପ୍ରଥମଗଳି, ମଧୁବନ, ପୁରୀ–୨





# ଶ୍ରୀକ୍ଷେତ୍ର ରଥର ବୈଶିଷ୍ଟ୍ୟ

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ଆତ୍ମାନଂ ରଥିନଂ ବିଧି ଶରୀରଂ ରଥମେବତୁ ।
ବୁଦ୍ଧିଂ ତୁ ସାରଥିଂ ବିଧି ମନଃ ପ୍ରଗ୍ରହମେବ ଚ ।।

(କଠୋପନିଷଦ)

ଶରୀର ରଥ, ଆତ୍ମା ରଥୀ, ବୁଦ୍ଧି ସାରଥି । ଏମାନେ ମନ ଅଶ୍ୱକୁ ଆୟତ୍ତ କରି ପରିଚାଳିତ କରନ୍ତି ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରେ ଶ୍ରୀକ୍ଷେତ୍ରର ରଥଯାତ୍ରା ଶ୍ରେଷ୍ଠ, ଅତି ପ୍ରାଚୀନ ଓ ବିଶ୍ୱ ପ୍ରସିଦ୍ଧ ଅଟେ । ତିନିଗୋଟି ରଥ ଓ ଶ୍ରୀଜୀଉମାନଙ୍କର ବୈଶିଷ୍ଟ୍ୟ ରହିଛି । ଶ୍ରୀକ୍ଷେତ୍ରର ତିନି ରଥ ନିର୍ମାଣ ଶୈଳୀ ଅତୀବ ରହସ୍ୟମୟ । ବହୁ ପ୍ରାଚୀନ ସମୟରୁ ରଥତ୍ରୟର ନିର୍ମାଣ ପଦ୍ଧତି ଶିଳ୍ପଶାସ୍ତ୍ରାନୁମୋଦିତ । ରଥ ନିର୍ମାଣ ସମ୍ବନ୍ଧରେ ମାନସାର, ଅପରାଜିତାପୃଚ୍ଛା, ଶୁକ୍ଳସୂତ୍ର, ବିଶ୍ୱକର୍ମୀୟ ରଥ ନିର୍ମାଣ ପଦ୍ଧତି, ଗୃହ କର୍ଣ୍ଣିକା, ଶିଳ୍ପସାର ସଂଗ୍ରହାଦି ଗ୍ରନ୍ଥମାନଙ୍କରେ ସବିଶେଷ ବିଧିବିଧାନ ଉଲ୍ଲେଖ ରହିଛି । ରଥ ନିର୍ମାଣରେ ବିଶ୍ୱକର୍ମା, ମହାରଣା, ଭୋଇ, କମାର, ରୂପକାର, ଚିତ୍ରକାର ଓ ଦରଜୀ ସେବକମାନେ ନିଯୁକ୍ତ ହୋଇଥାନ୍ତି । ସପ୍ତରଥାକାର ବା ସପ୍ତନାୟକ ରଥ ତିଆରି କରିବା ଏବଂ ରଥକୁ ସଜାଇବାରେ ମୁଖ୍ୟନାୟକ ଅଟନ୍ତି । ଏହି ରଥାକାରମାନଙ୍କୁ ପ୍ରଥମେ ସାତଟି ଶ୍ରେଣୀରେ ବିଭକ୍ତ କରାଯାଇଥିଲା । ତେଣୁ ସେମାନଙ୍କୁ ସପ୍ତରଥାକାର ବା ସପ୍ତନାୟକ କୁହାଯାଏ । ଏହି ସପ୍ତନାୟକମାନଙ୍କ ମଧ୍ୟରେ (୧) ଗୁଣାକାରମାନେ ରଥର ବିଭିନ୍ନ ଅଙ୍ଗ ବିଶେଷର ତାଳମାନ ନିର୍ଦ୍ଧାରଣ କରନ୍ତି, (୨) ବିଶ୍ୱକର୍ମା ବା ମୁଖ୍ୟ ରଥାକାରମାନେ ଅନ୍ୟ ମହାରଣାମାନଙ୍କ ସହିତ ରଥର ମୁଖ୍ୟଅଂଶଗୁଡିକୁ ନିର୍ମାଣ କରନ୍ତି, (୩) କମାର ବା ଲୌହକାରମାନେ ରଥରେ ବ୍ୟବହୃତ ଚକାବଳା, କୁରାଣ୍ଡିଆ, କଣ୍ଟା ଆଦି ଲୌହ ଉପାଦାନ ଓ ବଢେଇ ମହାରଣାଙ୍କ ଆବଶ୍ୟକ ସାଜ ସରଞ୍ଜାମ ତିଆରି କରନ୍ତି, (୪) ଭୋଇ ସେବକ ବା ଛନ୍ଦାକାରମାନେ ରଥକାଠଗୁଡିକୁ କାନ୍ଧରେ ବୋହି ଛନ୍ଦ ଓ ଛେକାରେ ସଜାନ୍ତି, (୫) ରୂପକାରମାନେ ସାରଥି, ଅଶ୍ୱ, ରଥପାଳ ଆଦି ରୂପ ଖୋଦନ କରନ୍ତି, (୬) ଚିତ୍ରକାରମାନେ ରଥର ବିଭିନ୍ନ ଅଂଶକୁ ଚିତ୍ର କରନ୍ତି, (୭) ଦରଜୀ ବା ସୂଚିକାରମାନେ କନାରେ ରଥର ମଣ୍ଡଣି, ଚାନ୍ଦୁଆ, ନେତ ଆଦି ନିର୍ମାଣ କରନ୍ତି। ପରବର୍ତ୍ତୀ କାଳରେ ଏମାନଙ୍କ ସହିତ ଜଉଶାଳିଆ ଓ ରଙ୍ଗତା ନାମରେ ଆଉ ଦୁଇଟି ନିଯୋଗ ଗଠିତ ହୋଇଥିଲା। ସେମାନେ ଯଥାକ୍ରମେ ଜଉଶାଳା ଦ୍ୱାରା ଅରମୁଣ୍ଡି, ଝରା, କନକମୁଣ୍ଡିର ରଙ୍ଗ କରନ୍ତି ଓ ରାହୁମୁଣ୍ଡ, ହଂସ ଏବଂ ନବଗୁଞ୍ଜର ସଜାଇଥାନ୍ତି। ବର୍ତ୍ତମାନ ନିର୍ମିତ ହେଉଥିବା ପ୍ରତ୍ୟେକ ରଥକୁ ୩୪ଟି ଅଙ୍ଗରେ ବା ଭାଗରେ ବିଭକ୍ତ କରାଯାଏ । ରଥର ପାଦ ଦେଶରୁ ଶୀର୍ଷ ଦେଶ ପର୍ଯ୍ୟନ୍ତ ଅଂଶଗୁଡ଼ିକର ନାମ ହେଉଛି, (୧) ଚକ, (୨) ଦଣ୍ଡିଆ, (୩) ଅର, (୪) ବାଙ୍କି, (୫) ହଂସପଟା, (୬) କଣି, (୭) ଶଙ୍ଖଦ୍ୱାର, (୮) ଜାଲି, (୯) ଗାଇପଟା, (୧୦) ସିଂହାସନ, (୧୧) କନକମୁଣ୍ଡେଇ, (୧୨) ଭୂମି, (୧୩) ଷୋଳନାହାକା, (୧୪) ମଗର ଦଣ୍ଡା, (୧୫) ବସନ୍ତ, (୧୬) ଦୁଆରଘୋଡା, (୧୭) ସାରଥିପୀଢ଼ା, (୧୮) କୁମ୍ଭପଟି, (୧୯) ରାହୁପଟି, (୨୦) ଆଠନାହାକା, (୨୧) ବାଙ୍କି, (୨୨)ପୀଢ଼ା, (୨୩)ରକ୍ଷିପଟା, (୨୪) ଦଣ୍ଡା, (୨୫) ପାରାଭାଡ଼ି, (୨୬) ଖପୁରୀ, (୨୭) ପାଦ, (୨୮) ଓଲଟଶୁଆ,



(୨୯) ଦଧିନଉତି, (୩୦) କଳସ, (୩୧) କର୍ଣ୍ଣି, (୩୨) ଦଣ୍ଡ, (୩୩) ଚକ୍ର ଓ (୩୪) ପତାକା ।

ଶିଳ୍ପ ଶାସ୍ତ୍ରାନୁଯାୟୀ ରଥର ଅଙ୍ଗଗୁଡ଼ିକୁ ସାଧାରଣତଃ ୧୩ଟି ମୁଖ୍ୟ ଅଙ୍ଗରେ ବିଭକ୍ତ କରାଯାଇଛି । ଯଥା (୧) ଚକ୍ରପୀଠ, (୨) ଅରଦଣ୍ଡା, (୩) ଗଗରା, (୪) ମୂଳନାଭ, (୫) ବରାଣ୍ଡି, (୬) ହଂସପଟା, (୭) ରଥଗର୍ଭ, (୮) ପାରାଭାଡ଼ି, (୯) କଳସପୀଠ, (୧୦) ଦଧିନଉତି, (୧୧) କର୍ଣ୍ଣଅଳା, (୧୨) ଧାତୁ କଳସ ଓ (୧୩) ଆୟୁଧ ଧ୍ୱଜା ।

ମହାପ୍ରଭୁଙ୍କ ରୂପକାର ସେବାୟତମାନେ ନନ୍ଦିଘୋଷ, ଦର୍ପଦଳନ ଓ ତାଳଧ୍ୱଜ ରଥଗୁଡ଼ିକର ଗୁଜ, ନାଟଗୋଡ଼, ପଟାଭୁଜ, ସିଂହାସନ, ପ୍ରଭା, ମୁହାଁଟି, ଘୋଡ଼ା, ସାରଥି, ସଖୀ, ପାର୍ଶ୍ୱମୂର୍ତ୍ତି, ଈଶ, ଜୁଆଳି, ଧ୍ୱଜପ ମୂର୍ତ୍ତି (ଶ୍ରୀବଳଭଦ୍ରଙ୍କର ଲକ୍ଷ୍ମୀନୃସିଂହ, ସୁଭଦ୍ରାଙ୍କର ଜୟଦୁର୍ଗା ଓ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ପଞ୍ଚମୁଖୀ ହନୁମାନ) ତିଆରି କରିଥାଆନ୍ତି । ତିନିଗୋଟି ରଥର ଆୟୁଧ ଯଥାକ୍ରମେ ହଳମୂଷଳ, ପଦ୍ମଫୁଲ ଓ ଶଙ୍ଖଚକ୍ର ଆଦି ତିଆରି କରିଥାନ୍ତି । ଏଠାରେ ପ୍ରକାଶଯୋଗ୍ୟ ଯେ, ସାରଥି, ଘୋଡ଼ା, ପାର୍ଶ୍ୱଦେବଦେବୀ, ସଖୀ ଆଦି ମୂର୍ତ୍ତିଗୁଡ଼ିକ ପ୍ରତ୍ୟେକ ନବକଳେବର ବର୍ଷ ନୂତନ ଭାବରେ ନିର୍ମାଣ କରାଯାଇଥାଏ । ଅନ୍ୟ ବର୍ଷରେ ସେଗୁଡ଼ିକ ରଥଯାତ୍ରା ସମୟରେ ଆବଶ୍ୟକୀୟ ମରାମତି ସହିତ ରଙ୍ଗ କରାଯାଇ ରଥଗୁଡ଼ିକରେ ଖଞ୍ଜା ଯାଇଥାଏ । ଅକ୍ଷୟ ତୃତୀୟା ତିଥିରେ ରୂପକାର ସେବାୟତମାନେ ରଥକାମ ଅନୁକୂଳ ପାଇଁ ମୁଣ୍ଡରେ ଶାଢ଼ୀ ବାନ୍ଧିଥାଆନ୍ତି । ପରେ ନୃସିଂହ ଚତୁର୍ଦ୍ଦଶୀ ଦିନ ସର୍ବ ପ୍ରଥମେ ନୃସିଂହ ମୂର୍ତ୍ତି ଗଢ଼ି ରଥ କାମର ଶୁଭାରମ୍ଭ କରନ୍ତି ।

**ଶ୍ରୀବଳଭଦ୍ରଙ୍କ ରଥ**

ଶ୍ରୀବଳଭଦ୍ରଙ୍କ ରଥର ଉଚ୍ଚତା ୩୨ ହାତ ୧୦ ଆଙ୍ଗୁଳି । ପାଦର ପ୍ରତୀକ ଚକ ୧୪ ଗୋଟି ଚତୁର୍ଦ୍ଦଶ ଭୁବନର ପ୍ରତୀକ । ଅର ୧୪ ଗୋଟି ଚତୁର୍ଦ୍ଦଶ କାଳ ବା ମନ୍ୱନ୍ତରର ପ୍ରତୀକ । ରଥାସ୍ଥି ସ୍ୱରୂପ ୭୬୩ ଖଣ୍ଡ କାଠରେ ଏହି ରଥ ନିର୍ମିତ ହୁଏ ।

ଶ୍ରୀବଳଭଦ୍ରଙ୍କର ଜନ୍ମ ଶ୍ରାବଣ ମାସ ଗହ୍ମାପୂର୍ଣ୍ଣମୀ, ତାଙ୍କର ରାଶିନକ୍ଷତ୍ର ଶ୍ରବଣା ମକର ଓ ରାଶ୍ୟାଧିପତି ଶନି ବୋଲି ଧରାଯାଇଛି । ଶ୍ରୀବଳଭଦ୍ରଙ୍କର ଅନ୍ୟନାମ ଶ୍ରୀବଳରାମ, ଶ୍ରୀକାମପାଳ ଓ ଶ୍ରୀସଙ୍କର୍ଷଣ । ଏହି ରଥରେ ବଳଭଦ୍ରଙ୍କ ସହ ରାମକୃଷ୍ଣ ଯୁଗଳ ମୂର୍ତ୍ତି ବିଜେ ହୁଅନ୍ତି । ସେ ହେଉଛନ୍ତି ହ୍ଲୀଂ ବୀଜ ମନ୍ତ୍ର, 'ମ' କାର (ମହେଶ୍ୱର) ଓ ରଜଗୁଣ ଯୁକ୍ତ । ରୂପ ଶଙ୍ଖବର୍ଣ୍ଣ, ଧବଳ ବା ଗୌରବର୍ଣ୍ଣ । ମାନବବାଦରେ ତାଙ୍କ ରଥର ଲେଖା ନାମ ହଳଧ୍ୱଜ ଓ ତାଳବନରେ ଦେବତାମାନେ ଦେଇଥିବା ରଥର ଡାକନାମ ତାଳଧ୍ୱଜ, ଅନ୍ୟ ନାମ ଲଙ୍ଗଳଧ୍ୱଜ । ଧ୍ୱଜରେ ଲଙ୍ଗଳ ଚିହ୍ନ କୃଷିର ପ୍ରତୀକ । ପ୍ରଭୁଙ୍କ ଆୟୁଧ ହଳ ଓ ମୂଷଳ । ରଥ ଦେବତା ବ୍ରହ୍ମା ଓ ଶିବ । ସାରଥି ମାତଳି । କଳାରଙ୍ଗ ଚାରି ଅଶ୍ୱ ଋକ୍, ଯଜୁଃ, ସାମ ଓ ଅଥର୍ବ ଚାରି ବେଦର ପ୍ରତୀକ । କୃଷ୍ଣ ବର୍ଣ୍ଣ ଚାରିଗୋଟି ଅଶ୍ୱର ନାମ ସ୍ଥିରା, ଧୃତି, ସ୍ଥିତି ଓ ପ୍ରଜ୍ଞା ଏବଂ ଅନ୍ୟ ନାମ ଶଙ୍ଖ, ସୁଚିତ୍ର, ଅଙ୍ଗଦ ଓ ମେଘନାଦ ବୋଲି ମଧ୍ୟ କୁହାଯାଏ । ଆଉ ମଧ୍ୟ ତୀବ୍ର, ଘୋର, ଦୀର୍ଘଶ୍ରମ ଓ ସ୍ୱର୍ଣ୍ଣନାଭ କୁହାଯାଏ । ରଥରେ ପୁଲହ, ପୌଲସ୍ତ୍ୟ, ଅଙ୍ଗିରା, ଅଗସ୍ତି, ଆତ୍ରେୟ, ମୁଦ୍‌ଗଲ, କୃଷ୍ଣ ଓ କାଶ୍ୟପ ଆଦି ଅଷ୍ଟଋଷି ଆରୂଢ଼ ହୁଅନ୍ତି । ଏହି ରଥରେ ନୃତ୍ୟ ଗଣେଶ, ଷଡ଼ାନନ କାର୍ତ୍ତିକେୟ, ନାଟାମ୍ବର (ବୃଷଭ ଉପରେ ନୃତ୍ୟରତ ଶିବ), ପ୍ରଳମ୍ବାରି ମହାଦେବ, ବାଇଶିଭୁଜ ନୃସିଂହ, ମଧୁକୈଟଭ ସହିତ ବିଷ୍ଣୁଙ୍କ ଯୁଦ୍ଧ, ଲକ୍ଷ୍ମଣଙ୍କୁ ବହନ କରିଥିବା ଅଙ୍ଗଦ, ବଳରାମ ଓ ଅନନ୍ତ ବାସୁଦେବ ଆଦି ନଅଟି ପାର୍ଶ୍ୱଦେବତା ଅଧିଷ୍ଠିତ ହୁଅନ୍ତି । ରଥ ଆବରଣ : ନୀଳଲୋହିତ ବର୍ଣ୍ଣ କନାରେ ଆଚ୍ଛାଦିତ ହୁଏ । ରଥରେ ଦ୍ୱାରପାଳ ନନ୍ଦ ଓ ସୁନନ୍ଦ । ରଥ ଗନ୍ଧର୍ବ––ହୁହୁ । ଗର୍ଭାଧୀଶ୍ୱରୀ ଶକ୍ତି–ତୁଙ୍ଗଭଦ୍ରା, ପ୍ରଭା, ସୁପ୍ରଭା, ଧାତ୍ରୀ ଓ ବିଧାତ୍ରୀ । ରଥ ମୂର୍ଦ୍ଧ୍ନି ଦେବତା–ଅନନ୍ତ ନାଗ । ରଥ ମୁଖ–କେତୁଭଦ୍ର । ରଥ ଭୈରବ–କ୍ଷେତ୍ରପାଳ । ରଥ ଚାରଣ–ମହାସିଦ୍ଧ ଓ ଉଲେମୀ । ଧ୍ୱଜା ଦେବତା ଲଙ୍ଗଳ ଚିହ୍ନ ଓ ନେତର ନାମ ଉନ୍ନନି । ଶ୍ରଦ୍ଧା ଓ ବିଶ୍ୱାସ ନାମକ ଦୁଇଟି ଓଲଟ ଶୁଆ ଦଧିନଉତି ପାର୍ଶ୍ୱରେ ଅଧିଷ୍ଠିତ ହୁଅନ୍ତି । ରଥର ରକ୍ଷକ ଭାସ୍କର ଓ ବାସୁଦେବ । ଦଧିନଉତିର ନାମ ଭୁବନକୋଷ । ରଥର ଭଦ୍ରପୀଠ ଅଷ୍ଟଦଳ ପଦ୍ମ ମେରୁକୈଳାସ, ରଥର ଚକ୍ର କାଳ ସଂହାର, ରଥକାର ମୟଦାନବ, ରଥର ଚନ୍ଦ୍ରାତପ କନକମେଖଳା । ମାନବବାଦରେ ରଥର କୁଣ୍ଡଳିନୀ ଶକ୍ତି କେତୁଭଦ୍ରା ଓ ଜୟଦୁର୍ଗା । ନେତ ଦେବତା ଅନନ୍ତନାଗ । ଭୁବନ, ବିଶ୍ୱ ଓ ପୃଥିବୀ କୁମ୍ଭତ୍ରୟଯୁକ୍ତ । ଏହାର ଚାରୋଟି

କତା ରଜ୍ଜୁ ବାସୁକି ନାଗରାଜ । ରଥ ରୁଦ୍ର ସର୍ବତୋଭଦ୍ର ଯନ୍ତ୍ର ଉପରେ ପ୍ରତିଷ୍ଠିତ । ପ୍ରଭୁଙ୍କୁ ଋକ୍‌ବେଦରେ ଚିନ୍ତନ ଓ ରାଜମନ୍ତ୍ରରେ ପୂଜା ହୁଏ । ଧ୍ୱଜ କୃଷ୍ଣ, ଲୋହିତ, ପୀତ, ନୀଳ ଓ ଶୁଭ୍ର ଆଦି ପଞ୍ଚବର୍ଣ୍ଣଯୁକ୍ତ କନାରେ ନିର୍ମିତ ହୋଇଥାଏ ।

### ଶ୍ରୀଜଗନ୍ନାଥଙ୍କ ରଥ

‘ଜଗନ୍ନାଥ ଯେ ଷୋଳକଳା,
ତହୁଁ କଳାଏ ନନ୍ଦବଳା ।
କଳାକେ ଷୋଳକଳା ହୋଇ,
ଗୋପେ ଜନ୍ମିଲେ ଦେହ ବହି ।’(ଭାଗବତ)

ଶ୍ରୀଜଗନ୍ନାଥଙ୍କ ରଥର ଉଚ୍ଚତା ୩୩ ହାତ ୫ ଅଙ୍ଗୁଳି । ରଥର ୧୬ଗୋଟି ଚକ ଷୋଡ଼ଶ ସିଦ୍ଧି ଓ ଷୋଳକଳାର ପ୍ରତୀକ ଏବଂ ପାଦର ପ୍ରତୀକ । ଅର ୧୬ ଗୋଟି ଓ ରଥାଙ୍ଗି ସ୍ୱରୂପ ୮୩୨ ଖଣ୍ଡ କାଠରେ ରଥ ନିର୍ମିତ ହୁଏ ।

ଶ୍ରୀଜଗନ୍ନାଥ ଅଣାକାର ବ୍ରହ୍ମ ସଚ୍ଚିଦାନନ୍ଦ ଅଟନ୍ତି । ସେ କ୍ଳୀଂ ବୀଜମନ୍ତ୍ର । ‘ଉ’କାର ବିଷ୍ଣୁ ଓ ସତ୍ତ୍ୱ ଗୁଣଯୁକ୍ତ ଅଟନ୍ତି । ତାଙ୍କର ଜନ୍ମ ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ ନିଶି ଅର୍ଦ୍ଧଭାଗରେ ଓ ରୂପ ନୀଳବର୍ଣ୍ଣ ବା କୃଷ୍ଣବର୍ଣ୍ଣ । ତାଙ୍କର ରୋହିଣୀ ନକ୍ଷତ୍ର ବୃଷରାଶି ଓ ରାଶ୍ୟାଧିପ ଶୁକ୍ର । ପ୍ରଭୁଙ୍କ ଦକ୍ଷିଣ ନୟନ ସୂର୍ଯ୍ୟ ଓ ବାମ ନୟନ ଚନ୍ଦ୍ର । ଏହି ନୟନ ଯୁଗଳ ପ୍ରଭାରେ ସମସ୍ତ ଜଗତକୁ ଆଲୋକିତ କରୁଛନ୍ତି । ଏହି ରଥରେ ଶ୍ରୀଜଗନ୍ନାଥଙ୍କ ସହ ମଦନମୋହନ ବିଜେ ହୁଅନ୍ତି ।

ମାନବବାଦରେ ଇନ୍ଦ୍ରଙ୍କ ପ୍ରଦତ୍ତ ଏବଂ ଆନନ୍ଦର ପ୍ରତୀକ ତାଙ୍କ ରଥର ଲେଖା ନାମ ଗରୁଡ଼ଧ୍ୱଜ, ଚକ୍ରଧ୍ୱଜ ଓ କପିଧ୍ୱଜ ଏବଂ ଶକ୍ତିର ପ୍ରତୀକ । ରଥର ଡାକନାମ ନନ୍ଦିଘୋଷ । ଏହି ରଥ ଦ୍ୱାଦଶାଂଶ ବିଶିଷ୍ଟ ସୌମ୍ୟଭଦ୍ରପୀଠାନୁକୁଲ୍ୟରେ ଗଠିତ ହୁଏ । ପ୍ରଭୁଙ୍କ ଆୟୁଧ ସୁଦର୍ଶନ । ରଥାରୂଢ଼ ଦେବତା ଶ୍ରୀଜଗନ୍ନାଥ। ରଥର ସାରଥି ଦାରୁକ । ରଥର ଶ୍ୱେତବର୍ଣ୍ଣ ଚାରିଅଶ୍ୱଙ୍କ ନାମ ଶଙ୍ଖ, ବଳାହକ, ଶ୍ୱେତ ଓ ହରିଦଶ୍ୱ । ଏହି ଅଶ୍ୱମାନଙ୍କୁ ଚିତ୍ର ଆକାରରେ ରଥରେ ପୂର୍ବେ ଲଗାଯାଉଥିଲା । ମାତ୍ର ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ବିଜୟ ପରେ ଏହାକୁ ମୂର୍ତ୍ତି ଆକାରରେ ଗଢ଼ାଯାଇ ଲଗାଯାଉଛି । ଏହି ରଥରେ ନାରଦ, ଦେବଳ, ବ୍ୟାସ, ଶୁକ, ପରାଶର, ବଶିଷ୍ଠ, ବିଶ୍ୱାମିତ୍ର ଓ ଭାର୍ଗବ ଆଦି ଅଷ୍ଟ ଋଷି ଆରୂଢ଼ ହୁଅନ୍ତି । ସପ୍ତଫେଣା ସର୍ପରେ ଆସୀନ ବିଷ୍ଣୁ ବା ମଧୁସୂଦନ, ଲକ୍ଷ୍ମଣ, ପଞ୍ଚମୁଖୀ ମହାବୀର, ପଣ୍ଡୁ–ନୃସିଂହ, ହରିହର, ରାମଙ୍କ ଦ୍ୱାରା ରାବଣର ଛତ୍ରଭଙ୍ଗ ଦୃଶ୍ୟ, ଗିରିଗୋବର୍ଦ୍ଧନଧାରୀ ଶ୍ରୀକୃଷ୍ଣ, ଷଡ଼ଭୁଜ ଚିନ୍ତାମଣିକୃଷ୍ଣ ଓ ଚତୁର୍ଭୁଜ ନାରାୟଣ ଆଦି ନଅଟି ପାର୍ଶ୍ୱଦେବତା ଅଧିଷ୍ଠିତ ହୁଅନ୍ତି । ରଥ ଗର୍ଭାଧୀଶ୍ୱର ଦଧିନଉତିର ନାମ ହିରଣ୍ୟଗର୍ଭ । ରଥର ଦେବତା ନୃସିଂହ । ରଥର ପୀଠକୁ କନକମଞ୍ଚା ଓ ରଥ ଦେବୀଙ୍କୁ ଯୋଗମାୟା କୁହାଯାଏ । ରଥର ଆବରଣ ବସ୍ତ୍ର ପୀତ ଲୋହିତ ବର୍ଣ୍ଣ ଓ ହିରଣ୍ମୟ ତ୍ରୟକୁମ୍ଭ ଯୁକ୍ତ । ଧ୍ୱଜ ଦେବତା କପି (ହନୁମାନ)। ଧ୍ୱଜାର ନାମ ତ୍ରୈଲୋକ୍ୟମୋହିନୀ ବା ପତିତ ପାବନ । ଦୁଇଟି ଓଲଟ ଶୁଆ ଜୀବ ଓ ପରମ (ପରମାତ୍ମା) ଦଧିନଉତି ପାର୍ଶ୍ୱରେ ଅଧିଷ୍ଠିତ ହୁଅନ୍ତି । ଧ୍ୱଜା ପୀତ, ଲୋହିତ, କୃଷ୍ଣ, ନୀଳ ଓ ଶୁଭ୍ର ଆଦି ପଞ୍ଚବର୍ଣ୍ଣ ଯୁକ୍ତ କନାରେ ନିର୍ମିତ ହୋଇଥାଏ । ରଥର ଦୁଇ ଦ୍ୱାରପାଳ ଜୟ ଓ ବିଜୟ । ମାନବବାଦରେ ରଥର କୁଣ୍ଡଳିନୀ ଶକ୍ତି ଘୋର, ଅଘୋର ବା ମା’ ବିମଳା ଓ ବିରଜା । ରଥର ଚାରୋଟି କତା ରଜ୍ଜୁ ଶଙ୍ଖଚୂଡ଼ ନାଗୁଣୀ । ରଥ ବିଷ୍ଣୁସର୍ବତୋଭଦ୍ର ମଣ୍ଡଳ ଯନ୍ତ୍ରରେ ପ୍ରତିଷ୍ଠିତ । ପ୍ରଭୁଙ୍କୁ ସାମବେଦରେ ଚିନ୍ତନ ଓ ‘ଓଁ ନମଃ ଭଗବତେ ବାସୁଦେବାୟ’ ଦ୍ୱାଦଶାକ୍ଷର ମନ୍ତ୍ରରେ ପୂଜା କରାଯାଏ । ରଥ ରେଖ ମନ୍ଦିର ଶ୍ରୀମନ୍ଦିର ଆକୃତି ଓ ଶୈଳୀରେ ନିର୍ମିତ ହୁଏ । ରଥାକାରଙ୍କୁ ବିଶ୍ୱକର୍ମା, ରଥର ଚନ୍ଦ୍ରାତପକୁ କନକ ମୁଣ୍ଡେଇ ଓ ରଥ ରକ୍ଷକ ଗରୁଡ଼। ତିନିଗୋଟି କଳସକୁ ନଭ, ଆକାଶ ଓ ବ୍ୟୋମ କୁହାଯାଏ । ନନ୍ଦୀମୁଖ ରଥ ମୂର୍ଦ୍ଧ୍ନିର ଦେବତା –କଲ୍ୟାଣ ସୁନ୍ଦର। ରଥ ଚାରଣ–ନନ୍ଦ ଓ କୁବେର, ରଥ ଭୈରବ–ଏକପାଦ, ନଳ କୁବେର ଓ ରଥ ଯକ୍ଷ ହର୍ଯ୍ୟକ୍ଷ।

### ଦେବୀ ସୁଭଦ୍ରାଙ୍କ ରଥ

ଦେବୀ ସୁଭଦ୍ରାଙ୍କ ରଥର ଉଚ୍ଚତା ୩୧ ହାତ । ମାନବବାଦରେ ରଥାଙ୍ଗି ସ୍ୱରୂପ ୫୯୩ ଖଣ୍ଡ କାଷ୍ଠରେ ଓ ୧୨ଗୋଟି ଚକରେ ଏହି ରଥ ନିର୍ମିତ ହୁଏ । ଏହା ଋତୁଚକ୍ର ବାରମାସ ଏବଂ କଲ୍ୟାଣ ଓ ପବିତ୍ରତାର ପ୍ରତୀକ । ପାଦର ପ୍ରତୀକ ରଥର ୧୨ଗୋଟି ଚକ ମଧ୍ୟ ଦ୍ୱାଦଶ ରାଶିର ପ୍ରତୀକ । ଦେବୀ ସୁଭଦ୍ରା ଶ୍ଲୀଂ ବୀଜ ମନ୍ତ୍ର, ‘ଅ’ କାର (ବ୍ରହ୍ମା) ଓ





ତମଗୁଣଯୁକ୍ତା । ଦେବୀ ବସୁଦେବଙ୍କ ଔରସରେ ରୋହିଣୀଙ୍କ ଗର୍ଭରୁ ଜନ୍ମ । ଏଣୁ ଶ୍ରୀକୃଷ୍ଣଙ୍କ ବୈମାତ୍ରେୟ ଭଗ୍ନୀ । ତାଙ୍କର ରାଶି ନକ୍ଷତ୍ର ଜ୍ୟେଷ୍ଠା ବିଛା ଓ ରାଶ୍ୟାଧିପ ମଙ୍ଗଳ ଅଟନ୍ତି । ସେ ମୁନି ଅଙ୍ଗିରସ ପୁତ୍ରୀ ଓ କାମ୍ପିଲ୍ୟବାସିନୀ ବୋଲି ମଧ୍ୟ କୁହାଯାଏ । ସୁଭଦ୍ରା ପଦ୍ମମୁଖୀ ଅରୁଣ ବା କୁଙ୍କୁମ ବା ହରିଦ୍ରା ବର୍ଣ୍ଣା ରୂପ ଧାରଣ କରିଛନ୍ତି । ମାନବବାଦରେ ଦେବତାମାନଙ୍କ ଦ୍ୱାରା ପ୍ରଦତ୍ତ ତାଙ୍କ ରଥର ଲେଖା ନାମ ପଦ୍ମଧ୍ୱଜ ଓ ଡାକ ନାମ ଦର୍ପଦଳନ, ଦେବଦଳନ ଓ ଦେବୀରଥ ଏବଂ ଶକ୍ତିର ପ୍ରତୀକ । ଦେବୀ ସୁଭଦ୍ରାଙ୍କ ରଥରେ ଆୟୁଧ ପଦ୍ମ ଓ ରକ୍ତ ବର୍ଣ୍ଣ ବସ୍ତ୍ରରେ ଆଚ୍ଛାଦିତ ସ୍ତମ୍ଭାକାର ବା ଯୂପାକାର, ଧ୍ଳୀଂ ବୀଜମନ୍ତ୍ର ଓ ଲୋହିତ ବର୍ଣ୍ଣ ଶ୍ରୀସୁଦର୍ଶନ ବିରାଜମାନ ହୁଅନ୍ତି । ରଥର ସାରଥି ଦେବଦତ୍ତ ବା ଅର୍ଜ୍ଜୁନ । ଜିତା, ଅପରାଜିତା, ରୋଚିକା ଓ ମୋଚିକା ବା ପ୍ରଜ୍ଞା, ଅନୁଜ୍ଞା, ଘୋରା ଓ ଅଘୋରା ନାମରେ ଲୋହିତ ବର୍ଣ୍ଣ ଚାରି ଅଶ୍ୱ ରଥର ବାହକ ଅଟନ୍ତି । ଏଥିରେ ଯାଜ୍ଞବଲ୍କ, ଭୃଗୁ, ବକ୍ର, ଶୃଙ୍ଗୀ, ଧ୍ରୁବ ଓ ଉଲ୍ଲୁକ ଆଦି ଷଡ଼ଋଷି ଆରୂଢ଼ ହୁଅନ୍ତି । ହରଚଣ୍ଡୀ, ଭଦ୍ରକାଳୀ (ଶବାରୂଢ଼ା ଚତୁର୍ଭୁଜା), ବାରାହୀ, କାତ୍ୟାୟନୀ (ଦଶଭୁଜା ଦୁର୍ଗା), ମଙ୍ଗଳା, ବିମଳା, ଉମା, ରାମଚଣ୍ଡୀ(ଅଷ୍ଟଭୁଜା ଓ ବାମହାତ କାଣି ଆଙ୍ଗୁଠିକୁ ପାଟିରେ ଚୁଚୁମୁଛନ୍ତି) ଓ କାଳୀ ଆଦି ନଅଟି ପାର୍ଶ୍ୱଦେବୀ ଏଥିରେ ଅଧିଷ୍ଠିତ ହୁଅନ୍ତି । ରଥ କୃଷ୍ଣଲୋହିତ ବର୍ଣ୍ଣ ବସ୍ତ୍ରରେ ଆବରଣ କରାଯାଏ । ରଥ ମୁର୍ଦ୍ଧ୍ନର ନାମ ବ୍ରହ୍ମବର୍ତ୍ତା, ରଥ ମୁର୍ଦ୍ଧ୍ନ ଦେବତା ଭକ୍ତି ସୁମେଧା (ଚାମରହସ୍ତା), ରଥ ବନ୍ଧର୍ବ ହା ହା, ରଥ ଯକ୍ଷ କିଙ୍କିଳିକା, ରଥ ଚାରଣ ମହାକର ଓ ରଥ ଗର୍ଭାଧୀଶ୍ୱରୀ–ଶକ୍ତି, ଶପ୍ତା, ସୂକ୍ଷ୍ମା, ଜୟା, ବିଜୟା, ଘୋର, ଅଘୋରା ଓ ଜ୍ଞାନା। ରଥର ଧ୍ୱଜା ଦେବୀ ତ୍ରିପୁରସୁନ୍ଦରୀ ବା ଜୟଦୁର୍ଗା ଅଟନ୍ତି । ନେତ ବା ଧ୍ୱଜାର ନାମ ଶତ୍ରୁଜୟ ବା ନାଦାମ୍ବିକା । ରଥ ଉପରେ ଶ୍ରୁତି ଓ ସ୍ମୃତି (ସୁପର୍ଣ୍ଣ ଓ ଦ୍ୱାସୁପର୍ଣ୍ଣ) ବା ଯୋଗମାୟା ନାମରେ ଦୁଇଟି ଓଲଟ ଶୁଆ ଦଧିନଉତି ପାର୍ଶ୍ୱରେ ଅଧିଷ୍ଠିତ ହୁଅନ୍ତି । ରଥର ଦୁଇ ଦ୍ୱାରପାଳିକା ଗଙ୍ଗା ଓ ଯମୁନା । ରଥରେ ଦେବୀ ଉଗ୍ରଚଣ୍ଡୀ ରଥ ରକ୍ଷକ ଭାବେ ଅଧିଷ୍ଠିତ ହୁଅନ୍ତି । ଏହି ରଥର ଦ୍ୱାରଦେଶରେ ରଥଦେବୀ ଶ୍ରୀଦେବୀ ଓ ଭୂଦେବୀ ବିଦ୍ୟମାନ । ରଥର ଦଧିନଉତି ନାମ ହିରଣ୍ମୟୀ । ରଥର ପୀଠକୁ କାମ୍ପିଲ୍ୟ, ରଥକାରକୁ କାଳନେମି, ଚନ୍ଦ୍ରାତପକୁ ବୀରଘଣ୍ଟ ଓ ଚକ୍ରକୁ ଦୀପ୍ତ କୁହାଯାଏ । ମାନବବାଦରେ ରଥର କୁଣ୍ଡଳିନୀ ଶକ୍ତିକୁ ଚନ୍ଦ୍ରଘଣ୍ଟା, ରଥରେ କଳସତ୍ରୟ (କୁମ୍ଭତ୍ରୟ) ଅମୃତା, ଜୀବା ଓ ଜାୟା ବା ପରା, ଅପରା ଓ ବୈଖରୀ କୁହାଯାଏ । ଏହି ରଥରେ ଦେବୀ ସୁଭଦ୍ରା ଓ ସୁଦର୍ଶନ ଉଭୟେ ବିଜେ ହୁଅନ୍ତି । ରଥର ଚାରୋଟି କତା ରଜ୍ଜୁ ସ୍ୱର୍ଣ୍ଣଚୂଡ଼ ନାଗୁଣୀ ଅଟନ୍ତି । ଧ୍ୱଜା ପୀତ, ଲୋହିତ, କୃଷ୍ଣ, ନୀଳ ଓ ଶୁଭ୍ର ଆଦି ପଞ୍ଚବର୍ଣ୍ଣରେ ନିର୍ମିତ ହୁଏ । ରଥ ଦୁର୍ଗାସମଭଦ୍ର ଯନ୍ତ୍ରରେ ପ୍ରତିଷ୍ଠିତ । ଦେବୀଙ୍କୁ ଯଜୁର୍ବେଦରେ ଚିନ୍ତନ ଓ ଦେବୀ ଶକ୍ତି ମନ୍ତ୍ରରେ ପୂଜା କରାଯାଏ । ଦେବୀଙ୍କ ରଥରେ ଅଧିଷ୍ଠିତ ସୁଦର୍ଶନଙ୍କୁ ଅଥର୍ବ ବେଦରେ ଚିନ୍ତନ ହୋଇ ପୂଜା କରାଯାଏ । ଏହା ଷଟ୍‌କୋଣ ବଳୟତ୍ରୟ ସଂଯୁକ୍ତ । ଶିଳ୍ପଶାସ୍ତ୍ର 'ଅପରାଜିତାପୃଚ୍ଛା' ଅନୁସାରେ ରଥ ନିର୍ମାଣ କରାଯାଏ ।

ଏଠାରେ ଶ୍ରୀଭଳଭଦ୍ର ମହେଶ୍ୱର, ଶ୍ରୀଜଗନ୍ନାଥ ବିଷ୍ଣୁ ଓ ଦେବୀ ସୁଭଦ୍ରାଙ୍କୁ ବ୍ରହ୍ମା ରୂପରେ ଦର୍ଶାଯାଇଛି ଏବଂ ସେମାନଙ୍କର ବୀଜମନ୍ତ୍ର ଦିଆଯାଇଛି । କାରଣ ଏହା ପୌରାଣିକ ମତ ଅନୁସାରେ ପ୍ରଚଳିତ ।

ରାମ, କୃଷ୍ଣ, ସୁଭଦ୍ରା ଯେ ଏ ତିନି ପ୍ରତିମା,
ଶ୍ରୀପୁରୁଷୋତ୍ତମେ ବିଜେ ହଳୀ, ହରି, ବ୍ରହ୍ମା ।

(ଶାରଳା ମହାଭାରତ)

ହ୍ଲୀଂ ବଳଭଦ୍ର କହି, ଶ୍ଳୀଂ ଯେ ସୁଭଦ୍ରା ଅଟଇ ।
କ୍ଲୀଂ ଅଟଇ ଜଗନ୍ନାଥ, ଦାମ ସୁଦର୍ଶନ ସମ୍ଭୂତ ।

(ଅଚ୍ୟୁତାନନ୍ଦ)

ତିନି ରଥ ସମୁଦାୟ ୪୨ ଚକ ବିଶିଷ୍ଟ । ଗୁଣ୍ଡିଚା ଓ ବାହୁଡ଼ା ଦର୍ଶନରେ ବା ଏହି ରଥମାନ ଟାଣିବାରେ ୮୪ଟି ନର୍କରୁ ଓ ୮୪ ଲକ୍ଷ ଯୋନି ଜନ୍ମରୁ ମୁକ୍ତି ମିଳିଥାଏ ବୋଲି ବିଶ୍ୱାସ କରାଯାଏ । ଗୁଣ୍ଡିଚା ଯାତ୍ରାର ପ୍ରଥମେ ବଳଭଦ୍ରଙ୍କ ରଥ ଦକ୍ଷିଣ ମୋଡ଼ ଓ ବାହୁଡ଼ାରେ ପ୍ରଥମେ ସୁଭଦ୍ରାଙ୍କ ରଥ ଦକ୍ଷିଣ ମୋଡ଼ ହୁଏ । 'ନୀଳାଦ୍ରି ବିଜୟ'ରେ ମନ୍ଦିର ପ୍ରବେଶ ସମୟରେ ପ୍ରଥମେ ଜଗନ୍ନାଥଙ୍କ ରଥ ଦକ୍ଷିଣ ମୋଡ଼ ହୁଏ । ଗୁଣ୍ଡିଚା ଯାତ୍ରାରେ ଧାଡ଼ି ପହଣ୍ଡି ଓ ବାହୁଡ଼ାରେ ଗୋଟି ପହଣ୍ଡି ହୁଏ ।

---

ଏ.ଏଲ୍. ୫୩, ବୀର ସୁରେନ୍ଦ୍ରସାଏ ନଗର,
ଭୁବନେଶ୍ୱର



# ଲବଣ ସତ୍ୟାଗ୍ରହ

**ପ୍ରଦୋଷ ମିଶ୍ର**

ଘର ପଛପଟେ ସମୁଦ୍ର, ଅଥଚ ସୁଦୂର ଲିଭରପୁଲରୁ ଲୁଣ ତିଆରି ହୋଇ ଆସି ଏ ଦେଶରେ ବିକ୍ରି ହେବ ଏବଂ ଏ ଦେଶର ଲୋକେ ବେଲା, କଂସା ବନ୍ଧା ପକାଇ ସେ ଲୁଣ କିଣିବେ। ଏହା ଥିଲା ଇଂରେଜମାନଙ୍କ ଦ୍ୱାରା ପ୍ରଣିତ କଠୋର ଲବଣ ନୀତିର ବାସ୍ତବ ଚିତ୍ର। ଏହାକୁ ହିଁ ମାନିନେଇଥିଲା ଭାଗ୍ୟବାଦୀ ଭାରତ ଓ ତା'ର ସରଳମନା ଭାରତବାସୀ। କିନ୍ତୁ ନିରାଶାର କୁହେଳିକା ଯେତେବେଳେ ଦୂର ହୋଇଗଲା, ସେତେବେଳେ ଅତ୍ୟାଚାରର ନଗ୍ନରୂପ ତା' ଆଖିରେ ଦିଶିଲା। ଅହିଂସାତ୍ମକ ଭାବରେ ଲୁଣ ଆଇନ୍‌ର ଅମାନ୍ୟ ହେଲା, ସତ୍ୟାଗ୍ରହର ରୂପ। ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପ୍ରଥମେ ମାର୍ଚ୍ଚ ୧୨, ୧୯୩୦ରେ ଅହିଂସା ଭାବରେ ଏହି ଆଇନକୁ ବିରୋଧ କରାଯାଇଥିଲା।

ଲୁଣ ଥିଲା ସମୁଦ୍ରତଟ ଲୋକଙ୍କର ଜୀବନ ଓ ଜୀବିକା। ସମୁଦ୍ରରୁ ଲୁଣମାରି ତାକୁ ବିକ୍ରି କରି ସେମାନେ ଜୀବିକା ନିର୍ବାହ କରୁଥିଲେ। ଯେତେବେଳେ ଇଂରେଜମାନେ ତା' ଉପରେ ଟିକସ ବ୍ୟବସ୍ଥା କରି ଲୁଣମରାକୁ ଏକଚାଟିଆ କଲେ, ସେତେବେଳେ ସେମାନଙ୍କ ଜୀବନ ଦୁର୍ବିସହ ହୋଇଗଲା। ଇଂରେଜମାନଙ୍କ ବିନା ଅନୁମତିରେ ଯିଏ ଲୁଣ ମାରିଲା କି ମୁଠାଏ ଲୁଣ ସମୁଦ୍ର ବାଲିରୁ ଉଠାଇଲା, ସେ ଦଣ୍ଡିତ ହେଲା।

ଗୁଜୁରାଟର ନବସାରୀ ଜିଲ୍ଲାର ଆରବ ସାଗର କୂଳରେ ଏକ ଗାଁ 'ଦାଣ୍ଡି'। ଏହି ସ୍ଥାନରୁ ଲବଣ ଆଇନର ଅମାନ୍ୟ କରିବାକୁ ଗାନ୍ଧିଜୀ ସ୍ଥିର କଲେ। ଅହମଦାବାଦର ସାବରମତୀ ଆଶ୍ରମରୁ ୨୪୧ ମାଇଲ ଦୂର ଏହି ସ୍ଥାନକୁ ସତ୍ୟାଗ୍ରହର କ୍ଷେତ୍ର ରୂପେ ନିଶ୍ଚିତ କରାଗଲା। ମାର୍ଚ୍ଚ ୧୧, ୧୯୩୦ ଦାଣ୍ଡିଯାତ୍ରାର ପୂର୍ବ ସନ୍ଧ୍ୟା, ପ୍ରାର୍ଥନା ପରେ ଗାନ୍ଧିଜୀ ଉପସ୍ଥିତ ଶହ ଶହ ସମର୍ଥକଙ୍କ ଉଦ୍ଦେଶ୍ୟରେ ଏକ ଆବେଗ ଓ ଭାବପୂର୍ଣ୍ଣ ଭାଷଣକ୍ରମରେ କହିଲେ 'ଯଦିଓ ଏ ସରକାର ଆସନ୍ତା କାଲି ମୋତେ ପଦଯାତ୍ରା ପାଇଁ ଅନୁମତି ଦେଇଛନ୍ତି, ଏହା ହୁଏତ ପୁଣ୍ୟତୋୟା ସାବରମତୀ କୂଳରେ ମୋର ଶେଷ ଭାଷଣ, ହୋଇପାରେ ମୋ ଜୀବନର ଶେଷ ଶବ୍ଦ' ଉପସ୍ଥିତ ଜନତା ଯେତିକି ଭାବ ବିହ୍ୱଳ ହୋଇ ପଡିଥିଲେ ସେତିକି ଉତ୍ସାହିତ ମଧ୍ୟ ହୋଇଥିଲେ।

ମାର୍ଚ୍ଚ ୧୨, ୧୯୩୦ ସକାଳ ପ୍ରାର୍ଥନା ପରେ ଠିକ୍ ୬.୩୦ ମିନିଟ୍‌ରେ ସାବରମତୀ ଆଶ୍ରମରୁ ପ୍ରବଳ ଉତ୍ସାହ, ସାହସ ଓ ଉଦ୍ଦୀପନାରେ ନିଜର ଅନୁଗାମୀଙ୍କୁ ଧରି ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ଉଦ୍ଦେଶ୍ୟରେ ଦାଣ୍ଡି ଅଭିମୁଖେ ଯାତ୍ରା ଆରମ୍ଭ କଲେ। ସେ ଭିତରୁ ଓଡ଼ିଶାର ବାଲେଶ୍ୱର ସ୍ୱରାଜ ମନ୍ଦିରର ଶ୍ରୀ ମତିବାସ ଦାସ ଥିଲେ ଅନ୍ୟତମ। ଏଥିରେ ହିନ୍ଦୁ ସମେତ, ମୁସଲମାନ, ଖ୍ରୀଷ୍ଟିଆନ ଓ ହରିଜନ ଅଂଶ ଗ୍ରହଣ କରିଥିଲେ। ଭାରତ ବ୍ୟତୀତ ସୁଦୂର ନେପାଳରୁ ମଧ୍ୟ ସତ୍ୟାଗ୍ରହୀ ଏଥିରେ ଯୋଗ ଦେଇଥିଲେ। ଏଥିରେ ପ୍ରବଳ ମାତ୍ରାରେ ଜନତା ରାସ୍ତାକଡରେ ତାଙ୍କୁ ସମ୍ବର୍ଦ୍ଧିତ କରୁଥିଲେ। ଗାନ୍ଧିଜୀ ଏଇ ପଦଯାତ୍ରାକୁ ଏକ ପବିତ୍ର ତୀର୍ଥଯାତ୍ରା ସହ ତୁଳନା କରିଥିଲେ। ପ୍ରତ୍ୟେକ ଦିନ ପାଖାପାଖି ୧୦ ମାଇଲ ବାଟ ଅତିକ୍ରମ କରି ସନ୍ଧ୍ୟାରେ ବିଶ୍ରାମ ନେଉଥିଲେ। ଏହା ସହ ଭାଷଣ, ନିତ୍ୟ ପ୍ରାର୍ଥନା, ଲୋକମାନଙ୍କ ସହ ଆଲୋଚନା ଓ ପ୍ରଶ୍ନ ଉତ୍ତର କାର୍ଯ୍ୟକ୍ରମ, ଅରଟରେ ବୁଣା ଓ ନିତ୍ୟ ଡାଏରୀ ଲେଖା ସବୁକିଛି





ଜାରି ରହିଥିଲା । ଏହା ମଧ୍ୟ ଦେଖାଯାଇଥିଲା ଲଣ୍ଠନରେ ତେଲ ସରିଯିବାରୁ କାହାକୁ ହଇରାଣ ନ କରି ଭୋର ୪ଟାରୁ ଜହ୍ନ ଆଲୁଅରେ ସେ ଚିଠି ଲେଖୁଥିଲେ । ମହାତ୍ମାଙ୍କ ଅଗ୍ନିବର୍ଷୀ ଭାଷଣରେ ଅନୁପ୍ରାଣିତ ହୋଇ ଅନେକ ଗ୍ରାମବାସୀ ଓ ସରକାରୀ କର୍ମଚାରୀ ଚାକିରି ଛାଡି ଏହି ସତ୍ୟାଗ୍ରହରେ ସାମିଲ ହୋଇଥିଲେ ।

ଦୀର୍ଘ ୨୨ ଦିନର ପଦଯାତ୍ରା ପରେ ଶେଷରେ ଅପ୍ରେଲ ୫, ୧୯୩୦ରେ ୨୪୧ ମାଇଲ ପଥ ଅତିକ୍ରମ କରି ତାଙ୍କ ଯାତ୍ରା ଶେଷ କରିଥିଲେ । ଅପ୍ରେଲ ୬, ୧୯୩୦ ଦାଣ୍ଡିର ପରିବେଶ ଥିଲା ସମ୍ପୂର୍ଣ୍ଣ ଗମ୍ଭୀର ଓ ଉତ୍ତେଜନାପୂର୍ଣ୍ଣ । ଏହିଦିନ ଗାନ୍ଧିଜୀ ଓ ତାଙ୍କ ସମର୍ଥକ ସମୁଦ୍ରରେ ସ୍ନାନ ପରେ ଲବଣ ଆଇନ ଭଙ୍ଗ କରି ଆଞ୍ଜୁଳା ଭରି ଲୁଣ ସମୁଦ୍ର ମାଟିରୁ ଉଠାଇଲେ । ତା'ପରେ ଅନ୍ୟ ସହଯୋଗୀ ଓ ଶହ ଶହ ସାଧାରଣ ଲୋକ ଲୁଣ ଆଇନକୁ ଭଙ୍ଗ କରି ଲୁଣ ସଂଗ୍ରହ କଲେ । ସରୋଜିନୀ ନାଇଡୁ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଲୁଣ ଆଇନ ଭଙ୍ଗ ହେବାର ଘୋଷଣା କଲେ ।

ଯେତେବେଳେ ଗାନ୍ଧିଜୀ ତାଙ୍କର ପଦଯାତ୍ରା ଦାଣ୍ଡିରେ ଶେଷ କରି ପ୍ରଥମ ଲବଣ ଆଇନ ଭଙ୍ଗ କଲେ ସେତେବେଳେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଓ କାର୍ଯ୍ୟ ନିର୍ବାହିକା ସମିତି ଏହି ସତ୍ୟାଗ୍ରହକୁ ଓଡ଼ିଶାରେ ୧୨ ଅପ୍ରେଲରେ କରିବାକୁ ନିଷ୍ପତ୍ତି ନେଲେ । ସବୁ ଜିଲ୍ଲାର କଂଗ୍ରେସ କମିଟି ସେମାନଙ୍କର ପ୍ରତିନିଧିମାନଙ୍କୁ ଏଥିରେ ଭାଗ ନେବା ପାଇଁ ପଠାଇଲେ । ସ୍ୱାଧୀନତା ସଂଗ୍ରାମୀ ଗୋପାଳକୃଷ୍ଣ ଚୌଧୁରୀଙ୍କ ବାସଭବନରେ ଏକ ସଭା ହୋଇ ଇଞ୍ଚୁଡ଼ିରେ ହେବାକୁ ସ୍ଥିରୀକୃତ ହେଲା ଓ ଗୋପାଳକୃଷ୍ଣଙ୍କୁ ଏହାର ଦାୟିତ୍ୱ ଦିଆଗଲା । ବାଲେଶ୍ୱରରେ ହରେକୃଷ୍ଣ ମହତାବ, ସୁରେନ୍ଦ୍ରନାଥ ଦାସ ଓ ବିଶ୍ୱନାଥ ହୋତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସତ୍ୟାଗ୍ରହ ପାଇଁ ପ୍ରସ୍ତୁତି ଜାରିହେଲା । ତାରିଖ ଓ ସ୍ଥାନ ନିରୂପଣ ପରେ କଟକ ଜିଲ୍ଲା କଂଗ୍ରେସ କମିଟି ସ୍ୱେଚ୍ଛାସେବୀ ସଂଗ୍ରହ ପାଇଁ ଏକ ସାଧାରଣ ସଭା ଡକାଇଲେ । ପୋଲିସ୍ ମଧ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ସମେତ ଅନେକଙ୍କ ଉପରେ ୧୪୪ ଧାରା ଜାରି କଲା । ଗୋପବନ୍ଧୁ ନୋଟିସ୍ ଅମାନ୍ୟ କରି ଭାଷଣ ଦେଲେ । ଏତିକିରେ ଲୋକଙ୍କ ଭିତରେ ପ୍ରବଳ ଉତ୍ସାହ ଖେଳିଗଲା । ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟି ଓ କର୍ମଚାରୀଙ୍କ ସହଯୋଗରେ ହରେକୃଷ୍ଣ ମହତାବଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟକ୍ରମର ଆୟୋଜନ ହେଲା । ବିଶେଷ କରି ସୁରେନ୍ଦ୍ର ନାଥ ଦାଶ, ଯିଏ କି ଇଞ୍ଚୁଡ଼ି ନିକଟସ୍ଥ ଭୀମପୁରର ସ୍ଥାନୀୟ ବାସିନ୍ଦା, ଓ ୧୯୨୧ ମସିହାରେ ପୋଲିସ ସବ୍-ଇନ୍ସପେକ୍ଟର ଚାକିରିକୁ ପ୍ରତ୍ୟାଖ୍ୟାନ କରି ସକ୍ରିୟ କର୍ମକର୍ତ୍ତା ଭାବରେ କଂଗ୍ରେସରେ ଯୋଗ ଦେଇଥିଲେ । ସେ ସତ୍ୟାଗ୍ରହ ପାଇଁ ଇଞ୍ଚୁଡ଼ିରେ କ୍ଷେତ୍ର ଓ ମଞ୍ଚ ପ୍ରସ୍ତୁତିରେ ଲାଗି ଯାଇଥାନ୍ତି । ଅପ୍ରେଲ ୬, ୧୯୩୦ କଟକର ସ୍ୱରାଜ ଆଶ୍ରମରୁ ପାଖାପାଖି ୨୧ ଜଣ ସତ୍ୟାଗ୍ରହୀ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର ଦାଶଙ୍କ ନେତୃତ୍ୱରେ ଇଞ୍ଚୁଡ଼ି ଅଭିମୁଖେ ଯାତ୍ରା ଆରମ୍ଭ କଲେ । ବ୍ରିଟିଶ ପୋଲିସ ଗୋପବନ୍ଧୁଙ୍କୁ ଚାନ୍ଦୋଳଠାରେ ଅପ୍ରେଲ ୮ରେ ଗିରଫ କରିବା ପରେ ଆଚାର୍ଯ୍ୟ ହରିହରଙ୍କ ନେତୃତ୍ୱରେ ପ୍ରଥମ ସ୍ୱେଚ୍ଛାସେବୀ ବାହିନୀ ୧୧ ତାରିଖ ରାତିରେ ଟ୍ରେନରେ ଯାଇ ୧୨ ତାରିଖ ଦିନ ବାଲେଶ୍ୱରରେ ପହଞ୍ଚିଲେ । ଅପ୍ରେଲ ୧୩ ତାରିଖ ଦିନ ଆଚାର୍ଯ୍ୟ ହରିହର ବାର ଜଣ ବଛା ବଛା ସତ୍ୟାଗ୍ରହୀଙ୍କ ସହ ବାଲେଶ୍ୱରରୁ ବାର ମାଇଲ୍ ଦୂର ଇଞ୍ଚୁଡ଼ିକୁ ପଦ ଯାତ୍ରାରେ ବାହାରିଲେ । ଅନେକ ଲୋକ ରାସ୍ତାରେ ତାଙ୍କ ସହ ସାମିଲ ହେଲେ । ଇଞ୍ଚୁଡ଼ିରେ ପହଞ୍ଚି ଲବଣ ମୁଠା, ମୁଠା ଧରି ଲବଣ ଆଇନ ଭଙ୍ଗ କଲେ । ସଙ୍ଗେ ସଙ୍ଗେ ୬ ଜଣଙ୍କ ସହ ହରିହରଙ୍କୁ ଗିରଫ କରାହେଲା । ଏଇଠାରୁ ଦାଣ୍ଡି ପରେ ଓଡ଼ିଶାର ଇଞ୍ଚୁଡ଼ିରୁ ଲବଣ ଆଇନ ଭଙ୍ଗ ହେଲା । ବହୁ ସଂଖ୍ୟାରେ ସତ୍ୟାଗ୍ରହୀ ବାହିନୀ ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ଅର୍ଥାତ୍ କଟକ, ପୁରୀ, ଗଞ୍ଜାମ, ସମ୍ବଲପୁର ଓ ବାରିପଦାରୁ ଭାଗ ଭାଗ ହୋଇ ଇଞ୍ଚୁଡ଼ିରେ ପହଞ୍ଚିଲେ । ଏତେ ସଂଖ୍ୟାରେ ସ୍ୱେଚ୍ଛାସେବୀ ଓ ଗ୍ରାମବାସୀ ଲୁଣ ମାରିଲେ ଯେ ପୋଲିସ ତାଙ୍କୁ ଅଟକାଇ ପାରିଲା ନାହିଁ । ଅନେକ ବନ୍ଦୀ ହେଲେ ଓ କେତେ ପୋଲିସର ଲାଠି ମାଡ ଖାଇ ଆହତ ହେଲେ । ବେଆଇନ ଲୁଣ ସବୁ ବାଲେଶ୍ୱର, କଟକ ଯାଇ ସେଠାରେ ବିକ୍ରି ହେବାକୁ ଲାଗିଲା ।

ଏହି ଆନ୍ଦୋଳନର ବିଶେଷତ୍ୱ ଥିଲା ଯେ ନାରୀମାନେ ବହୁ ସଂଖ୍ୟାରେ ଏଥିରେ ଯୋଗ ଦେଇଥିଲେ । ଓଡ଼ିଶାରେ ଯେଉଁଠି ପରଦା ପ୍ରଥା ଥିଲା ଓ ନାରୀ ଶିକ୍ଷାର ବିସ୍ତାର ହୋଇ ନଥିଲା ସେଠି ଶହ ଶହ ସ୍ତ୍ରୀ ଲୋକ ସଭା, ଶୋଭାଯାତ୍ରା ଓ



କାରାବରଣ କରିଥିଲେ । ରମାଦେବୀ ଓ ମାଳତୀ ଦେବୀ କଟକ ଜିଲ୍ଲାର ନାରୀ ସତ୍ୟାଗ୍ରହୀମାନଙ୍କର ନେତୃତ୍ୱ ନେଇଥିଲେ । ସେହିପରି କୁଜଙ୍ଗ ରାଜ ପରିବାରର ରାଣୀ ଭାଗ୍ୟବତୀ ପାଟମହାଦେଇ ପାଖାପାଖି ୫୦୦ ନାରୀ ସତ୍ୟାଗ୍ରହୀଙ୍କ ସମର୍ଥନରେ ଏଇ ଆଇନ ଅମାନ୍ୟ ଆନ୍ଦୋଳନ କରିଥିଲେ । ସେହିପରି ଗଞ୍ଜାମର ହୁମାଠାରେ ନିରଞ୍ଜନ ପଟ୍ଟନାୟକ, ବିଶ୍ୱନାଥ ଦାଶ ଓ ସାରଦା ଦେବୀଙ୍କ ନେତୃତ୍ୱରେ ଏହି ଆଇନ ଭଙ୍ଗ ହେଲା । ଓଡ଼ିଶାର ସମଗ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ଲବଣ ଆଇନ ଅମାନ୍ୟ ଆନ୍ଦୋଳନ ଜାରି ରହିଲା ।

ଇଂରେଜ କୌଣସିମତେ ସତ୍ୟାଗ୍ରହକୁ ଦମନ କରିପାରିଲା ନାହିଁ । ଶେଷରେ ଭାରତର ତତ୍କାଳୀନ ବଡ଼ଲାଟ୍ ଲର୍ଡ଼ ଇର୍‌ଉଇନ୍ ଗାନ୍ଧିଜୀଙ୍କ ସହ କଥା ହୋଇ ଏକ ସନ୍ଧି ସ୍ଥାପନ କଲେ । ତା'ପରେ ଆନ୍ଦୋଳନ ବନ୍ଦ ହେଲା । ବନ୍ଦୀମାନେ ମୁକ୍ତ ହେଲେ । ସମୂହ ଜୋରିମାନା ଛାଡ ହେଲା ଓ ଲୋକମାନେ ଲୁଣମରା ଅଧିକାର ପାଇଲେ ।

ଇ-୨, ବିଜେବି ନଗର
ଭୁବନେଶ୍ୱର

# ପାଇକ ପୁଅର ଅମର ଗାଥା

**ରୀତା ଅପରାଜିତା ମହାନ୍ତି**

ଆମ ଓଡ଼ିଶାର ସ୍ୱର୍ଣ୍ଣାଭ ଇତିହାସ କଥା ଯେବେ ପଢ଼ିବ
ସେବେ ପାଇକ ପୁଅର କଥା ନିଶ୍ଚୟ ଉଠିବ ।
ଖୋରଧା ମାଟିର ଲଢୁଆ ପୁଅମାନେ
ନିଜ ମାଟି ମା' ପାଇଁ ଲହୁ- ଲୁହ ସବୁ ନିଗାଡ଼ି ଲଢ଼ିଛନ୍ତି,
ସେଥିପାଇଁ ଏ ମାଟି ଏବେ ବି ବୀର ରକ୍ତରେ ରଞ୍ଜିତ
ପାଇକ ପୁଅ ନିଜ ବୀରତାର ପ୍ରକୃଷ୍ଟ ପ୍ରମାଣ ଦେଇଛନ୍ତି ।
ସମର କୌଶଳରେ କିଏ ସରି ହେବ ଆମ ପାଇକ ଜାତିକୁ
ମାତୃଭୂମିର ଗୌରବ ପାଇଁ ପାତି ଦେଇଥିଲେ ଛାତିକୁ...
୧୮୧୭ ମସିହାର ସେ ବିଦ୍ରୋହର ଅଗ୍ନିଶିଖା
ବିଦେଶୀ ଗୋରା ଶାସକଙ୍କୁ ଦେଇଥିଲେ ଉଚିତ ଶିକ୍ଷା
ପାଇକ ପୁଅର ଶୌର୍ଯ୍ୟ, ବୀର୍ଯ୍ୟ, ବୀରତାର ଗାଥା
ଏ ମାଟି ପାଣି ପବନ କୁହେ
ସେମାନେ କେବେ ବି ଅନ୍ୟାୟ ଆଗରେ ହାରି ନଥିଲେ
ବକ୍ସି ଜଗବନ୍ଧୁ, ଦଳବେହେରା ଆଦି
ଦେଇଥିଲେ - ରଣ ଘୋଷଣା
ସେଥିରେ ଗୋରା ସରକାର ହେଇଥିଲା ଥରହର
ବିଟ୍ରିଶ୍ ଗୁଳିରେ ଶହୀଦ,
ହୋଇଥିଲେ ଅନେକ ପାଇକ ।
ପାଇକ ପୁଅର ଅମର ଗାଥା କେବଳ ଓଡ଼ିଶାରେ ନୁହେଁ
ଭାରତର ଇତିହାସର ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ।
ତା' ଲୋମହର୍ଷଣକାରୀ କାହାଣୀ
ଓଡ଼ିଆ ପୁଅ ନିଜ ମୁଣ୍ଡ କାଟିଦିଏ ହେଲେ
ଆତ୍ମ - ସ୍ୱାଭିମାନ କେବେ ଛାଡ଼ି ପାରେନା
ପଛଘୁଞ୍ଚା ନାହିଁ ପାଇକ ଜାତକେ
ନ ମରେ କେବେ ସେ ପରାଣ ଆତଙ୍କେ ।

ପ୍ଲଟ ନଂ-୮୩(ସି), ଆମ୍ରପଲ୍ଲୀ
ଶୈଳଶ୍ରୀ ବିହାର, ଭୁବନେଶ୍ୱର-୨୧





# ଯୁଗ ଯୁଗର ରାକ୍ଷୀ : ସ୍ନେହ ସୁରକ୍ଷାର ସାକ୍ଷୀ

ଡକ୍ଟର ଶରତ ଚନ୍ଦ୍ର ପରିଡ଼ା

ରାକ୍ଷୀ ପୂର୍ଣ୍ଣିମା ଏକ ସର୍ବଭାରତୀୟ ଗଣପର୍ବ । ଏବେ ଗାଁଗଣ୍ଡା ସହର ବଜାର ଚାରିଆଡ଼େ ଏହାର ପ୍ରଭାବ । ବଡ଼ ଆଗ୍ରହ ଉତ୍ସାହ ଆନନ୍ଦ ଓ ଉଦ୍ଦୀପନା ସହ ଏହା ପାଳନ କରାଯାଉଛି । ରାକ୍ଷୀ ହେଉଛି ଚାଖଣ୍ଡେ ରେଶମ ସୂତା । କେତୋଟି ପ୍ଲାଷ୍ଟିକ୍ ବା କାଚ ପୋହଳା ମାଳି ଏଥିରେ ଗୁନ୍ଥା ହୋଇଥାଏ । ଚକ୍ ଚକ୍ କରୁଥିବା ନାଲିନୀଳ ଜରିର ସୂକ୍ଷ୍ମକାର୍ଯ୍ୟରେ ଏହା ଅଧିକ ସୁନ୍ଦର ଦେଖାଯାଉଥାଏ । ଏହା ଏକ ଆକର୍ଷଣୀୟ ହସ୍ତବନ୍ଧନୀ । ପ୍ରାଚୀନ କାଳରେ ରକ୍ଷାବନ୍ଧନ ଖାଲି ଭାଇଭଉଣୀଙ୍କ ମଧ୍ୟରେ ସୀମିତ ନଥିଲା । ସ୍ତ୍ରୀ ସ୍ୱାମୀଙ୍କୁ, ଝିଅ ବାପାଙ୍କୁ, ମୁନିରଷିମାନେ ସେମାନଙ୍କ ନିକଟକୁ ଆଶୀର୍ବାଦ ଭିକ୍ଷା କରିବାକୁ ଆସୁଥିବା ଲୋକମାନଙ୍କ ହାତରେ ରାକ୍ଷୀ ବାନ୍ଧୁଥିଲେ । ବ୍ରାହ୍ମଣମାନେ ସେମାନଙ୍କ ଯଜମାନଙ୍କ ଓ ସାଧୁମାନେ ନିଜ ହାତରେ ନିଜେ ରାକ୍ଷୀ ବାନ୍ଧୁଥିଲେ । ଏହା ମଣିଷ ମନର ପାପଭାବନା ଓ ଈର୍ଷା ଅସୂୟା ଦୂରେଇ ସ୍ନେହସଂପ୍ରୀତିର ସଂଚାର କରେ ବୋଲି ଏହାକୁ ‘ ପାପତୋଡ଼କ ପୁଣ୍ୟପ୍ରଦାୟକ ପର୍ବ’ ବୋଲି କୁହାଯାଏ । ଭାବନାତ୍ମକ ଦୃଷ୍ଟିକୋଣରୁ ଏହି ପର୍ବ ଅତ୍ୟନ୍ତ ଲୋକପ୍ରିୟ ।



**ଏକ ମଧୁମୟ ପରିବେଶ ସୃଷ୍ଟି କରେ ରାକ୍ଷୀ :** ରକ୍ଷା ବନ୍ଧନ ପ୍ରଭାବରେ ଆମ ସମାଜରେ ବହୁତ ସଂସ୍କାର ଆସିଛି । ରକ୍ଷା ଡ଼ୋରି ମଧ୍ୟ ଆମକୁ ବହୁ ଦୁର୍ଯୋଗରୁ ରକ୍ଷା କରିଥାଏ । ସେଥିପାଇଁ ଏହି ପର୍ବକୁ ସମସ୍ତ ଦୁର୍ଯୋଗରୁ ରକ୍ଷା କରୁଥିବା ପର୍ବ କୁହାଯାଏ । ଏହି ପବିତ୍ର ଶ୍ରାବଣୀ ପୂର୍ଣ୍ଣିମାଠାରୁ ବେଦପ୍ରଚାର ସପ୍ତାହ ପାଳନ କରାଯାଉଥିଲା । ଏହା ରାଷ୍ଟ୍ରୀୟ ଚେତନା, ଆଧ୍ୟାତ୍ମିକ ଚିନ୍ତାର ବିକାଶ ତଥା ପାରସ୍ପରିକ ସ୍ନେହ ସଦ୍ଭାବର ସଂକେତ ବହନ କରେ । ରାକ୍ଷୀ ଏକ କୃଷିଭିତ୍ତିକ ପର୍ବ । ଏଥିରେ ଆମ ଦେଶର ଧର୍ମଦର୍ଶନ, ରୀତିନୀତି, ଆଚାରବ୍ୟବହାର, ପ୍ରଥାପରମ୍ପରା, ସଭ୍ୟତା ସଂସ୍କୃତି ପ୍ରତିଫଳିତ । ପୂଜାପାଠ, ନୃତ୍ୟଗୀତ, ଦାନଧର୍ମ ମାଧ୍ୟମରେ ଏହି ପର୍ବ ପାଳନ କଲାବେଳେ ଜନଜୀବନର ଜଞ୍ଜାଳଜ୍ୱାଳା ବିଦୂରିତ ହୋଇ ନୂତନ ରସର ସଞ୍ଚାର ଘଟେ । ରାକ୍ଷୀପର୍ବ ଦେଶବାସୀଙ୍କ ମଧ୍ୟରେ ଐକ୍ୟ ଓ ଭାଇଚାରାର ଭାବ ଅଭିବୃଦ୍ଧି କରି ରାଷ୍ଟ୍ରୀୟ ଜୀବନକୁ ସମୃଦ୍ଧ କରେ । ଚାରିଆଡ଼େ ସୃଷ୍ଟି ହୁଏ ଏକ ମଧୁମୟ ପରିବେଶ ।

ମାସଚକ୍ରର ଚତୁର୍ଥ ମାସ ହେଉଛି ଶ୍ରାବଣ ମାସ । ଶ୍ରବଣା ନକ୍ଷତ୍ରଯୁକ୍ତ ହୋଇଥିବାରୁ ଏହାର ଏପରି ନାମକରଣ କରାଯାଇଛି । ପୃଥିବୀ ଓ ସୂର୍ଯ୍ୟଙ୍କର ଭୌଗୋଳିକ ସମ୍ବନ୍ଧ ଓ ପୃଥିବୀରେ ପଡୁଥିବା ଅନ୍ୟ ଗ୍ରହମାନଙ୍କର ପ୍ରଭାବ ହେତୁ ଏହି ମାସର କେତେକ ଗୁରୁତ୍ୱ ରହିଛି । ଏହି ତିଥିଟି ସୃଷ୍ଟି ଆରମ୍ଭର

ଦିନ । ପରମେଶ୍ୱରଙ୍କ ସଂକଳ୍ପ 'ଏକୋଽହଂ ବହୁ ସ୍ୟାମ୍' ବାସ୍ତବ ରୂପ ଧାରଣ କରିଥିଲା । ଅର୍ଥାତ୍ ବହୁମୁଖୀ ସୃଷ୍ଟି ରାକ୍ଷୀପୂର୍ଣ୍ଣମୀ ଦିନ ହିଁ ଆରମ୍ଭ ହୋଇଥିଲା । ବେଦ ଶିକ୍ଷାର ଶୁଭାରମ୍ଭ ରାକ୍ଷୀ ପୂର୍ଣ୍ଣମୀରେ ହିଁ ହୋଇଥିଲା । ପ୍ରାଚୀନ ଗୁରୁକୁଳରେ ଏହିଦିନ ନୂତନ ଶିଷ୍ୟମାନଙ୍କର ନାମ ଲେଖା ଯାଉଥିଲା । ଯଜ୍ଞୋପବୀତ ପାଇ ନଥିବା ଶିଷ୍ୟମାନଙ୍କୁ ଯଜ୍ଞୋପବୀତ ଦିଆଯାଉଥିଲା । ଆମେ ତିନୋଟି ମୁଖ୍ୟ ଋଣରେ ଋଣୀ । ତାହା ହେଉଛି ଋଷିଋଣ, ଦେବଋଣ ଓ ପିତୃଋଣ । ତିନି ଖିଅ ପଇତା ଧାରଣ କରି ଆମେ ଏହି ତିନି ଋଣର ପରିଶୋଧ ପାଇଁ ବ୍ରତୀ ହୋଇଥାଉ । ଛଅ ଖିଅ ପଇତା ଧାରଣ କରିବା ଦ୍ୱାରା ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହଣ– ଏହି ଛଅଟି କର୍ମର ସ୍ମୃତି ଜାଗ୍ରତ ହୋଇଥାଏ । ବେଦ ଅଧ୍ୟୟନଦ୍ୱାରା ଋଷିଋଣ, ପୂଜା ହୋମ ଦ୍ୱାରା ଦେବଋଣ ତଥା ପିତାମାତା ଓ ପିତୃପୁରୁଷଙ୍କ ଶ୍ରାଦ୍ଧ ଓ ସନ୍ତାନ ଉତ୍ପାଦନ ଦ୍ୱାରା ଆମେ ପିତୃଋଣରୁ ମୁକ୍ତ ହୋଇଥାଉ । ଏମାନଙ୍କ ଋଣ ଶୁଝିବା ସହଜ ନୁହେଁ । ତଥାପି ସ୍ମରଣ ରଖି ପ୍ରୟାସ କରିବା ପାଇଁ ପଇତା ଆମକୁ ପ୍ରେରଣା ଦେଇଥାଏ । ଅତଏବ ଶ୍ରାବଣ ପୂର୍ଣ୍ଣିମା ଭାରତୀୟ ସଂସ୍କୃତି ରକ୍ଷାର ମହତ୍ୱପୂର୍ଣ୍ଣ ସନ୍ଦେଶ ବହନ କରେ ।

ଭାରତୀୟ ସଂସ୍କୃତିର ଦୁଇଟି ମହତ୍ୱପୂର୍ଣ୍ଣ ସର୍ବମାନ୍ୟ ପ୍ରତୀକ ହେଉଛି ଶିଖା ଓ ସୂତ୍ର । ମୁଣ୍ଡନ ସମୟରେ ସ୍ଥାପିତ କରାଯାଇଥିବା ଶିଖା ହେଲା ଭାରତୀୟ ସଂସ୍କୃତି ପ୍ରତି ଆସ୍ଥା ପ୍ରକଟ । ଯଜ୍ଞୋପବୀତ ହେଲା ନିଜ ଜୀବନରେ ଆମୂଳଚୂଳ ପରିବର୍ତ୍ତନର ବାର୍ତ୍ତାବହ । ଏଥିପାଇଁ ଏହାକୁ ଜୀବନ ପରିଚାଳନାର ସୂତ୍ର କୁହାଯାଏ । ପଇତାରେ ଥିବା ନଅ ଖିଅ ସୂତା ନଅଟି ଗୁଣର ପ୍ରତୀକ । ପ୍ରତି ଗୋଛାରେ ତିନି ଖିଅ ସୂତା ଥାଏ । ତିନି ଗୋଛା ଜୀବନର ତିନି ପ୍ରଧାନ ଭାଗ ଯଥା ଆତ୍ମିକ, ବୌଦ୍ଧିକ ଲୌକିକ ବା ସାଂସାରିକ ବିଷୟରେ ସନ୍ଦେଶ ଦିଏ । ପ୍ରତି ଗୋଛାରେ ଥିବା ତିନି ଖିଅ ସୂତା ତିନି ଗୁଣର ସଙ୍କେତ ବହନ କରେ । ଆତ୍ମିକ କ୍ଷେତ୍ରରେ ତିନି ସଂପତ୍ତି ହେଲା ବିବେକ, ପବିତ୍ରତା ଓ ଶାନ୍ତି । ବୌଦ୍ଧିକ କ୍ଷେତ୍ରରେ ତିନି ସଂପତ୍ତି ହେଲା– ସାହସ, ସ୍ଥିରତା ଓ କର୍ତ୍ତବ୍ୟନିଷ୍ଠା । ସାଂସାରିକ କ୍ଷେତ୍ରରେ ତିନି ସଂପତ୍ତି ହେଲା–ସ୍ୱାସ୍ଥ୍ୟ, ଧନ ଓ ସହଯୋଗ । ଏହି ନଅ ଗୁଣର ବିକାଶର ଦାୟିତ୍ୱ ସର୍ବଦା କାନ୍ଧରେ ଧାରଣ କରି ରଖିବାର ଚିହ୍ନ ସ୍ୱରୂପ ପଇତା ପିନ୍ଧାଯାଏ । ଏହି ପଇତା ପ୍ରାଚୀନ କାଳରେ ପ୍ରଜାପତିଙ୍କ ସହିତ ଉତ୍ପନ୍ନ ହୋଇଥିଲା । ଏହା ପରମ ପବିତ୍ର । ଆୟୁ,ବଳ ଏବଂ ତେଜ ବର୍ଦ୍ଧନକାରୀ । ଉପଯୁକ୍ତ ନଅ ଗୁଣର ବିକାଶ ବ୍ୟତୀତ ପଇତା ତ୍ରିଦେବ ଅର୍ଥାତ୍ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ପ୍ରତୀକ ଅଟେ । ଏହା ଋଗ୍, ସାମ ଏବଂ ଯଜୁର୍ବେଦର ସ୍ୱରୂପ । ଏହା ମଧ୍ୟ ଭୂଃ, ଭୁବଃ ଓ ସ୍ୱଃ–ଏହି ତିନି ଲୋକର କଲ୍ୟାଣ ବିଷୟରେ ସଚେତନ କରାଏ ।

ବେଦମନ୍ତ୍ରରେ ଅଭିମନ୍ତ୍ରିତ ରକ୍ଷାସୂତ୍ରକୁ ଆଚାର୍ଯ୍ୟମାନେ ଶିଷ୍ୟହାତରେ ବାନ୍ଧି ଦେଉଥିଲେ । ଏହା ବେଦଜ୍ଞାନ ତଥା ବୈଦିକ ପରମ୍ପରାକୁ ରକ୍ଷା କରିବାର ସୂତ୍ରସଙ୍କେତ ପ୍ରଦାନ କରେ । ବୈଦିକ ଧର୍ମବନ୍ଧନରେ ଶିଷ୍ୟ ଅନୁବନ୍ଧିତ ହୁଏ । ଏହି ବୈଦିକ ସଂସ୍କୃତି ଓ ସଭ୍ୟତା ଯୁଗଯୁଗ ଧରି ମାନବଜାତିର କଲ୍ୟାଣ କରି ଆସୁଛି । ମହର୍ଷି ମନୁଙ୍କ ଭାଷାରେ ସମସ୍ତ ଧର୍ମର ମୂଳ ହେଉଛି ବେଦ । ବେଦ ବିନା ଜ୍ଞାନର ଉନ୍ମେଷ ଘଟେ ନାହିଁ । ଗୁରୁକୁଳର ଶିଷ୍ୟମାନେ ବର୍ଷକ ମଧ୍ୟରେ ଯେଉଁ ଯେଉଁ ବେଦଶିକ୍ଷା କରିଥା'ନ୍ତି, ତାକୁ ଶ୍ରାବଣ ପୂର୍ଣ୍ଣିମା ଦିନଠାରୁ ଆରମ୍ଭ କରି ସାତ ଦିନ ଗ୍ରାମେ ଗ୍ରାମେ ବୁଲି ଉପଦେଶ ଦିଅନ୍ତି । ଏହି ସାତ ଦିନକୁ ବେଦପ୍ରଚାର ସପ୍ତାହ କୁହାଯାଉଥିଲା । ବୈଦିକ ଋଷି ଦୃଷ୍ଟିରେ ଏହା ଶ୍ରାବଣୀ ଉତ୍ସବ ।

**ଗୁରୁଶିଷ୍ୟଙ୍କ ହାତରେ ରାକ୍ଷୀ :** କେବଳ ସେତିକି ନୁହେଁ ପୂର୍ବ କାଳରେ ମୁନିଋଷିମାନେ ଉତ୍ତରାୟଣରେ ବିଭିନ୍ନ ଜନପଦ ଭ୍ରମଣ କରି ଲୋକକଲ୍ୟାଣ ପାଇଁ ନାନା ଉପଦେଶ ପ୍ରଦାନ କରୁଥିଲେ । ଦକ୍ଷିଣାୟନ ଆରମ୍ଭରେ ନିଜ ଆଶ୍ରମକୁ ତଥା ବିଭିନ୍ନ ଗୁରୁକୁଳକୁ ଫେରି ଆସି ପାରାୟଣ ବ୍ରତ ଆରମ୍ଭ କରୁଥିଲେ । ସ୍ମୃତିକାରଙ୍କ ମତରେ ବିଦ୍ୱାନ୍, ବ୍ରାହ୍ମଣାଦି ବର୍ଣ୍ଣ ଶ୍ରାବଣ ପୂର୍ଣ୍ଣମୀଠାରୁ ଚାରିମାସ ପନ୍ଦର ଦିନ ପର୍ଯ୍ୟନ୍ତ ବେଦାଧ୍ୟୟନ କରିବେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ପୂର୍ବ କାଳରେ ଗ୍ରୀଷ୍ମ ଅବକାଶ ପରେ ଶ୍ରାବଣ ପୂର୍ଣ୍ଣିମା ଦିନ ହିଁ ଗୁରୁକୁଳରେ ବିଦ୍ୟାଦାନ ଆରମ୍ଭ ହେଉଥିଲା । ପରିତାପର ବିଷୟ ଆଜି ବେଦବିଦ୍ୟାର ଯଥାର୍ଥ ଆଦାନପ୍ରଦାନ ଓ ଗ୍ରହଣ ପୂର୍ବକ ରକ୍ଷା ହୋଇପାରୁ ନଥିବାରୁ ବେଦ ବିରୋଧୀ ବିଚାର ଅଧିକ ପ୍ରସାର ଲାଭ କରୁଛି । ପ୍ରାଚୀନ ଭାରତର ଶିଷ୍ୟଟିଏ ଗୁରୁକୁଳରୁ

ନିଜର ଶିକ୍ଷା ସମାପ୍ତ କରି ବିଦାୟ ନେଲାବେଳେ ଗୁରୁଙ୍କ ଆଶିଷ ଲାଭ କରିବା ଉଦ୍ଦେଶ୍ୟରେ ଗୁରୁଙ୍କ ହାତରେ ରାକ୍ଷୀ ବାନ୍ଧୁଥିଲା । ଅନୁରୂପ ଭାବେ ଗୁରୁ ମଧ୍ୟ ନିଜ ଶିଷ୍ୟର ଉଜ୍ଜ୍ୱଳ ଭବିଷ୍ୟତ କାମନା କରି ଶିଷ୍ୟ ହାତରେ ରାକ୍ଷୀ ବାନ୍ଧି ଦେଉଥିଲେ ।

**ବାର୍ଷିକ ସଂସ୍କାରରେ ରାକ୍ଷୀ :** ପୁନଶ୍ଚ ଶ୍ରାବଣୀ ପର୍ବରେ ପୁରାତନ ପଇତା ବଦଳା ଯାଇଥାଏ । ଶିଖା ସିଞ୍ଚନ ଓ ଯଜ୍ଞୋପବୀତ ନବୀକରଣ ଏକ ପ୍ରକାର ବାର୍ଷିକ ସଂସ୍କାର ଅଟେ । ଶିଖା ଭାରତୀୟ ସଂସ୍କୃତିର ଧର୍ମଧ୍ୱଜା (ସର୍ବେଷାମେବ ଧର୍ମତଃ–ମନୁ) । ଏହା ଏକ ଚୂଡ଼ାକର୍ମ । ପ୍ରତ୍ୟେକ ବର୍ଣ୍ଣ ପାଇଁ ଉଦ୍ଦିଷ୍ଟ । ଆୟୁର୍ବେଦରେ ବର୍ଣ୍ଣିତ ମୋଟ ଶହେ ସାତ ମର୍ମସ୍ଥଳ ମଧ୍ୟରୁ ବ୍ରହ୍ମରନ୍ଧ୍ରକୁ ମର୍ମସମ୍ରାଟ କୁହାଯାଏ । ଏହାର ରକ୍ଷା ପାଇଁ ଏହା ଉପରେ ଶିଖା ରଖିବା ନିମନ୍ତେ ଋଷିମାନେ ବିଧାନ କରିଯାଇଛନ୍ତି । ବ୍ରହ୍ମାଣ୍ଡୀୟ ଉର୍ଜା ପ୍ରାପ୍ତ କରୁଥିବା ଏହି ଶିଖାକୁ ଇନ୍ଦ୍ରଯୋନି ବୋଲି ଆୟୁର୍ବେଦରେ କୁହାଯାଇଛି । ଶିଖାଗ୍ରନ୍ଥି ଚାମୁଣ୍ଡାଦେବୀଙ୍କ ଅଧିଷ୍ଠାନ ଅଟେ । ଚାମୁଣ୍ଡାଦେବୀ ବିଚାର ପ୍ରଦୂଷଣ ଓ ଧ୍ୱନିପ୍ରଦୂଷଣ ରୋକି ଥା'ନ୍ତି । ଶିଖାବନ୍ଧନ ସମୟରେ 'ତିଷ୍ଠ ଦେବି ଶିଖାମଧ୍ୟେ' କୁହାଯାଇ ଏହି ସ୍ଥାନ ଉପରେ ଦେବୀଙ୍କୁ ଆବାହନ କରିବାର ଏହା ହେଉଛି ବୈଜ୍ଞାନିକ କାରଣ । ପ୍ରାଚୀନ କାଳରୁ ଲୋକମାନେ ଶିଖା ଧାରଣ କରି ଆସୁଛନ୍ତି । ମସ୍ତିଷ୍କ ବିଦ୍ୟାର ବିଶେଷଜ୍ଞମାନେ ମାନନ୍ତି ଯେ ଶିଖା ମସ୍ତିଷ୍କର କେନ୍ଦ୍ରବିନ୍ଦୁ । ଏହାକୁ ସ୍ପର୍ଶ କଲେ ଶକ୍ତିର ସଞ୍ଚାର ହୁଏ । ଯୋଗୀମାନେ କହନ୍ତି ଯେ ଯାହାର ଶିରରେ ଶିଖା ଥାଏ, ସେ ଅନ୍ତରୀକ୍ଷରୁ ଆସୁଥିବା ସତ୍ ପ୍ରେରଣାର ତରଙ୍ଗଗୁଡ଼ିକୁ ସରଳ ଭାବରେ ଗ୍ରହଣ କରିପାରନ୍ତି । ଶିଖା ଧାରଣ କରିବା ଦ୍ୱାରା ବାସନା ଉପରେ ମଧ୍ୟ ନିୟନ୍ତ୍ରଣ ରକ୍ଷା କରି ହୁଏ । ମୁଖମଣ୍ଡଳରେ ତେଜସ୍ୱୀତା ପ୍ରକାଶ ପାଏ । ଉଦ୍‌ବେଗ ଓ ଅବସାଦରୁ ମୁକ୍ତି ମିଳେ । ଏହି କର୍ମରେ ପ୍ରାୟଶ୍ଚିତ ସଂକଳ୍ପ ମୁଖ୍ୟ । ସାବଧାନ ରହୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ବି ବେଳେ ବେଳେ ଭ୍ରମବଶତଃ ବା ଅଜ୍ଞାନତାବଶତଃ କିଛି ନା କିଛି ଭୁଲ ହୋଇଯାଏ । ଏସବୁକୁ ଯଦି ନିୟମିତ ଶୁଦ୍ଧ ଏବଂ ସୁଧୁରା ନଯାଏ ତାହାହେଲେ ଏହା ବୃଦ୍ଧି ପାଇ ଜୀବନକୁ ଅନ୍ଧକାରରେ ପରିଣତ କରିଦିଏ । ବର୍ଦ୍ଧିତ ପାପରାଶି ନାନା ପ୍ରକାର ରୋଗବ୍ୟାଧି, ସଙ୍କଟ ଓ ରୋଗକୁ ଆମନ୍ତ୍ରଣ କରି ଜୀବନକୁ ନରକରେ ପରିଣତ କରିଦିଏ । ଅତଏବ ସ୍ୱକୃତ ଦୋଷତ୍ରୁଟିକୁ ନିର୍ମଳ ହୃଦୟରେ ଅନୁତାପ କରିବା ଏବଂ ଏଗୁଡ଼ିକର ପୁନରାବୃତ୍ତି ନକରିବାର ଦୃଢ଼ସଂକଳ୍ପ ନେବା ଯଜ୍ଞୋପବୀତ ନବୀକରଣ ଓ ଶିଖା ସିଞ୍ଚନରୁ ହିଁ ମିଳି ଥାଏ ।

**ବୈଦିକ ଯୁଗରେ ରାକ୍ଷୀ :** ରାକ୍ଷୀ ବୈଦିକ ଯୁଗରୁ ବିଭିନ୍ନ ରୂପରେ ପ୍ରଚଳିତ ହୋଇଆସୁଛି । ଏହାକୁ ଆଧାର କରି ପୁରାଣ, ଇତିହାସ ଓ ଆମ ଜନଜୀବନରେ ବହୁ କାହାଣୀ କିମ୍ବଦନ୍ତୀ ଓ ଘଟଣା ସବୁ ରହିଛି । ଏହାର ଆଭିମୁଖ୍ୟ ହେଉଛି ସୁରକ୍ଷା ପାଇଁ ସ୍ନେହମିଶା ବନ୍ଧନ । ଐତିହାସିକ ଦୃଷ୍ଟିକୋଣରୁ ରାକ୍ଷୀବନ୍ଧନ କେବେଠାରୁ ଆରମ୍ଭ ହୋଇଥିଲା ତାହା ଠିକ୍ ରୂପେ ଆକଳନ କରି ହୁଏ ନାହିଁ । ତଥାପି ବେଦରୁ ଏହାର ପ୍ରଥମ ସୂଚନା ମିଳିଥାଏ । ଋଗ୍‌ବେଦରେ ଦେବତା ଓ ଅସୁରମାନଙ୍କ ମଧ୍ୟରେ ମଝିରେ ମଝିରେ ଭୟଙ୍କର ସଂଗ୍ରାମ ହୋଇଥିବାର ବର୍ଣ୍ଣନା ରହିଛି । ଏହାକୁ ଦେବାସୁର ସଂଗ୍ରାମ କୁହାଯାଏ । ଏହି ସଂଗ୍ରାମର ପ୍ରାରମ୍ଭିକ ପର୍ଯ୍ୟାୟରେ ଦେବରାଜ ଇନ୍ଦ୍ର ଓ ରାକ୍ଷସରାଜ ବୃତ୍ରଙ୍କଠାରୁ ପରାସ୍ତ ହୋଇଥିଲେ । ଇନ୍ଦ୍ର ରଣଭୂମି ଛାଡି ଅମରାବତୀ ନାମକ ତୀର୍ଥରେ ଆତ୍ମଗୋପନ କରିଥିଲେ । ଏହାପରେ ଦେବଗୁରୁ ବୃହସ୍ପତିଙ୍କ ପରାମର୍ଶରେ ଓ ବତାଇଥିବା ବିଧାନ ଅନୁସାରେ (ଶଚୀ)ଇନ୍ଦ୍ରାଣୀ ଶ୍ରାବଣ ପୂର୍ଣ୍ଣିମାର ପ୍ରାତଃକାଳରେ ରକ୍ଷାର ଡ଼ୋରି ଅଭିମନ୍ତ୍ରିତ କରି ଇନ୍ଦ୍ରଙ୍କ ଡ଼ାହାଣ ହାତରେ ବାନ୍ଧି ଦେଇଥିଲେ । ଏହି ରକ୍ଷା ଡ଼ୋରି ବାନ୍ଧି ଇନ୍ଦ୍ର ପୁନଶ୍ଚ ଦେବାସୁର ସଂଗ୍ରାମରେ ପ୍ରବୃତ୍ତ ହୋଇ ବିଜୟୀ ହୋଇଥିଲେ । ସେହି ପବିତ୍ର ସୂତ୍ର ପରେ ରାକ୍ଷୀ ନାମରେ ପରିଚିତ ହେଲା । ପରବର୍ତ୍ତୀ ସମୟରେ ରାଜାମାନେ ରକ୍ଷାବନ୍ଧନର ମହିମା ଜାଣିଗଲା ପରେ ପୃଥିବୀ ପୃଷ୍ଠରେ ତା'ର ପ୍ରଚଳନ କରିଥିଲେ । କିନ୍ତୁ ଏତିକି ପାର୍ଥକ୍ୟ ହେଉଛି ଦେବଲୋକରେ ରକ୍ଷାଡ଼ୋରିକୁ ପତ୍ନୀ ନିଜ ସ୍ୱାମୀଙ୍କ ହାତରେ ବାନ୍ଧି ଦେଉଥିବା ବେଳେ ମର୍ତ୍ତ୍ୟଲୋକରେ ରକ୍ଷାଡ଼ୋରିକୁ ଭଉଣୀ ଭାଇ ହାତରେ ବାନ୍ଧି ଦେଉଛି ।

**ଯଜମାନ ହାତରେ ରାକ୍ଷୀ :** ପ୍ରାଚୀନ କାଳରେ ବ୍ରହ୍ମଶକ୍ତିସଂପନ୍ନ ବ୍ରାହ୍ମଣମାନେ ରାଷ୍ଟ୍ରର ନେତୃତ୍ୱ ନେଉଥିଲେ । ଜନସାଧାରଣଙ୍କୁ ସତ୍‌ପଥରେ ପରିଚାଳିତ କରିବା ଏମାନଙ୍କର





କର୍ତ୍ତବ୍ୟ ଥିଲା । ସମାଜକୁ ଆସୁରୀ ବିଚାର ଓ ପ୍ରବୃତ୍ତିରୁ ରକ୍ଷା କରିବାର ଦାୟିତ୍ୱ ଏମାନେ ନେଉଥିଲେ ।'ବୟଂ ରାଷ୍ଟ୍ରେ ଜାଗୃୟାମ ପୁରୋହିତାଃ'ର ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ଲୋକମାନଙ୍କୁ ସତ୍‌ପଥ ଓ ଉନ୍ନତି ମାର୍ଗରେ ଜାଗରଣ କରିବାର ବ୍ରତ ଧାରଣ କରି ଏହି ପୁରୋହିତ ଆଚାର୍ଯ୍ୟମାନେ ଯଜମାନଙ୍କ ହାତରେ ମନ୍ତ୍ରପୁତ ରକ୍ଷାସୂତ୍ର ବନ୍ଧନ କରୁଥିଲେ । ତାହା ସହିତ ସେମାନଙ୍କର ଧର୍ମକର୍ମ ସମ୍ପର୍କରେ ସ୍ମରଣ କରାଇ ଦେଉଥିଲେ । ମାନବତ୍ୱର ବିକାଶ ଦ୍ୱାରା ରାଷ୍ଟ୍ରର କଲ୍ୟାଣ ସାଧିତ ରୂପକ ଧର୍ମରକ୍ଷା ପାଇଁ ଏହା ପ୍ରେରଣା ଯୋଗାଉ ଥିଲା । କର୍ମରେ ଶିଥିଳତା ଦୂରେଇ ଦେଉ ଥିଲା ।

**ସୁରକ୍ଷାର ଚାବି କାଠି ରାକ୍ଷୀ :** କେତେକ ପ୍ରାଚୀନ ଗ୍ରନ୍ଥରେ ଉଲ୍ଲେଖ ରହିଛି ଯେ ମୁନିଋଷିମାନେ ବର୍ଷା ଚାରିମାସ କୁଆଡ଼େ ନଯାଇ ଏକାଗ୍ରତା ସହ ଅଧ୍ୟୟନ କରୁଥିଲେ । ଶ୍ରାବଣ ପୂର୍ଣ୍ଣିମା ଦିନ ଏକ ଉପକର୍ମ କରି ନିଜ ହାତରେ ଏକ ରକ୍ଷା ବନ୍ଧନ କରନ୍ତି । ଏହାଦ୍ୱାରା ସେମାନଙ୍କ ଦ୍ୱାରା ଅଧୀତ ଶାସ୍ତ୍ର ତେଜସ୍ୱୀ ହୁଏ ଓ ତାଙ୍କ ସ୍ମୃତିରେ ଅପାଶୋରା ହୋଇ ରହେ ।

**ସତ୍ୟଯୁଗରେ ବଳି ହାତରେ ରାକ୍ଷୀ:** ରାକ୍ଷୀବନ୍ଧନର ପରମ୍ପରା ସତ୍ୟଯୁଗରୁ ପ୍ରଚଳିତ । ଭଗବାନ ବାମନ ତିନି ପାଦ ଭୂମି ମାଗି ରାଜା ବଳିଙ୍କର ସମସ୍ତ ଐଶ୍ୱର୍ଯ୍ୟ ହରଣ କରି ନେଇଥିଲେ । ପ୍ରଥମ ପାଦରେ ସ୍ୱର୍ଗ, ଦ୍ୱିତୀୟ ପାଦରେ ମର୍ତ୍ତ୍ୟ ଓ ତୃତୀୟ ପାଦ ବଳିଙ୍କ ମଥାରେ ରଖି ପାତାଳକୁ ଚାପି ଦେଇଥିଲେ । ବଳିରାଜାଙ୍କ ଭକ୍ତିରେ ସନ୍ତୋଷ ଲାଭ କରି ଭଗବାନ ତାଙ୍କୁ ପାତାଳରେ ଅଧୀଶ୍ୱର କରି ରଖିଥିଲେ । ବଳିରାଜାଙ୍କ ସହିତ ସଂକଳ୍ପବଦ୍ଧ ହୋଇ ଭଗବାନ ବାମନ ତାଙ୍କ ସିଂହଦ୍ୱାରରେ ଦ୍ୱାରପାଳ ଭାବରେ ରହିଲେ । ଲକ୍ଷ୍ମୀ ଏହା ଜାଣିବା ପରେ ନାରଦଙ୍କ ଉପଦେଶକ୍ରମେ ରାକ୍ଷୀପୂର୍ଣ୍ଣମୀ ଦିନ ବଳିଙ୍କ ହାତରେ ରାକ୍ଷୀବନ୍ଧନ କରିଥିଲେ । ଉପହାର ସ୍ୱରୂପ ବଳିରାଜ ବିଷ୍ଣୁବାମନଙ୍କୁ ବୈକୁଣ୍ଠକୁ ଫେରାଇ ଦେଇଥିଲେ । ତେଣୁ ରକ୍ଷାବନ୍ଧନ ସମୟରେ ନିମ୍ନୋକ୍ତ ଶ୍ଳୋକଟି ପାଠ କରାଯାଏ :

ଯେନ ବଦ୍ଧ ବଳିରାଜ ଦାନବେନ୍ଦ୍ର ମହାସୁର ।
ତେନ ତ୍ୱାମପି ବଧ୍ନାମି ରକ୍ଷ ମାଂ ଚଳମାଞ୍ଚଳ ॥

**ତ୍ରେତୟା ଯୁଗରେ ରାମଙ୍କ ହାତରେ ରାକ୍ଷୀ:** ତ୍ରେତୟା ଯୁଗରେ ଭଗବାନ ଶ୍ରୀରାମ ରାବଣ ସହିତ ଯୁଦ୍ଧ କରିଥିଲେ । ଯୁଦ୍ଧରେ ରାବଣ ନାନାଦି ମାୟା ରଚନା କଲା । ମହର୍ଷି ଅଗସ୍ତିଙ୍କ ପରାମର୍ଶକ୍ରମେ ପ୍ରଭୁ ଶ୍ରୀରାମ ମାୟା ଛେଦନ ନିମିତ୍ତ 'ଆଦିତ୍ୟହୃଦୟମ୍' ପାଠ ପୂର୍ବକ ଶ୍ରୀସୂର୍ଯ୍ୟଦେବଙ୍କର ଉପାସନା କଲେ । ସୂର୍ଯ୍ୟଦେବ ପ୍ରସନ୍ନ ହେଲେ । ଶ୍ରାବଣ ପୂର୍ଣ୍ଣିମାରେ ଭଉଣୀ ରାକ୍ଷୀ ବନ୍ଧନ କଲେ ମାୟା ଦୂରୀଭୂତ ହୁଏ ବୋଲି କହିଲେ । ତଦନୁଯାୟୀ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ହାତରେ ଭଉଣୀ ଶାନ୍ତା ଶ୍ରାବଣ ପୂର୍ଣ୍ଣିମା ତିଥିରେ ଅଭିମନ୍ତ୍ରିତ କରି ଶ୍ରୀରାମଙ୍କ ହାତରେ ରାକ୍ଷୀ ବାନ୍ଧିବା ପରେ ମାୟା ଦୂରୀଭୂତ ହେଲା । ପ୍ରଭୁ ଯୁଦ୍ଧରେ ଜୟଲାଭ କଲେ ।

**ଦ୍ୱାପର ଯୁଗରେ କୃଷ୍ଣଙ୍କ ହାତରେ ରାକ୍ଷୀ:** ମହାଭାରତରେ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ବୁଝାଇବାକୁ ଯାଇ କହିଛନ୍ତି– ଗହ୍ମାପୂର୍ଣ୍ଣମୀ ଦିନ ପ୍ରତ୍ୟୁଷରୁ ଉଠି ନବବସ୍ତ୍ର ପରିଧାନ କରି ରାକ୍ଷୀ ପିନ୍ଧିଲେ ସାରାବର୍ଷ ଶରୀର ବାହ୍ୟ ବିପତ୍ତିରୁ ନିରାପଦ ରହେ । କୌରବଙ୍କ ଆକ୍ରୋଶରୁ ପୁଅମାନଙ୍କୁ ରକ୍ଷା କରିବା ଅଭିପ୍ରାୟରେ କୁନ୍ତୀ ଦିନେ ଶ୍ରୀକୃଷ୍ଣଙ୍କ ହାତରେ ରାକ୍ଷୀ ବାନ୍ଧିଥିଲେ । ପାଣ୍ଡବମାନଙ୍କ ସୁରକ୍ଷା ପାଇଁ ମାତା କୁନ୍ତୀ ନିଜ ପୁଅମାନଙ୍କ ହାତରେ ରକ୍ଷା ବନ୍ଧନ କରୁଥିଲେ । ଗୋପୀମାନେ ବାଳକ କୃଷ୍ଣଙ୍କ ଉପରକୁ କିଛି ବିପତ୍ତି ନଆସୁ ଏହି ଆଶାରେ ତାଙ୍କୁ ରାକ୍ଷୀ ପିନ୍ଧାଇ ଦେଇ ତାଙ୍କର ମଙ୍ଗଳ ମନାସୁ ଥିଲେ । ବଳରାମଙ୍କ ସହିତ ମାୟାବୀ ଅସୁରର ଯୁଦ୍ଧ ଚାଲିଥିଲା ବେଳେ ଲୋକମାନେ ନିରାପଦରେ ରହିବା ଉଦ୍ଦେଶ୍ୟରେ ଗହ୍ମାପୂର୍ଣ୍ଣମୀ ଦିନ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ପଇତା ଧାରଣ କରିବା କଥା ପୁରାଣରେ ବର୍ଣ୍ଣିତ ହୋଇଛି ।

**ବଳଦେବଙ୍କ ହାତରେ ରାକ୍ଷୀ:** ଶ୍ରୀବଳଭଦ୍ର ହେଉଛନ୍ତି ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ଅଭିନ୍ନ ଅଙ୍ଗ । ଐତିହାସିକମାନଙ୍କ ମତରେ ସେ ହେଉଛନ୍ତି ପ୍ରାକ୍ ବୈଦିକ ଯୁଗର ଶିବ ଓ ପରବର୍ତ୍ତୀ କାଳର ବଳଭଦ୍ର । ସେ ଶ୍ରବଣା ନକ୍ଷତ୍ରଯୁକ୍ତ ଶ୍ରାବଣ ମାସର ରାକ୍ଷୀ ପୂର୍ଣ୍ଣିମାରେ ମକର ଲଗ୍ନରେ ଜନ୍ମ ହୋଇଥିଲେ । ଶ୍ରୀମଦ୍‌ଭାଗବତ ଅନୁସାରେ ଦେବକୀଙ୍କ ସପ୍ତମ ଗର୍ଭ ଯୋଗମାୟଙ୍କ ଦ୍ୱାରା ଆକର୍ଷିତ ହୋଇ ବସୁଦେବଙ୍କ ଜ୍ୟେଷ୍ଠା




ପତ୍ନୀ ରୋହିଣୀଙ୍କ ଗର୍ଭରେ ସ୍ଥାପିତ ହୋଇଥିଲା । ତେଣୁ ତାଙ୍କ ନାମ ସଙ୍କର୍ଷଣ :

ଗର୍ଭସଙ୍କର୍ଷଣାତ୍ ତଂ ବୈ ପ୍ରାହୁଃ ସଙ୍କର୍ଷଣଃ ଭୁବି ।
ରାମେତି ଲୋକରମଣା ବଳଭଦ୍ରଂ ବଳୋତ୍ରୟାତ୍ ।।

ସେ ରୋହିଣୀ ନାମକ ଗାଈ ଗର୍ଭରୁ ନନ୍ଦରାଜାଙ୍କ ଘରେ ଜନ୍ମ ହୋଇଥିଲେ । ତେଣୁ ସେ ରୋହିଣେୟ । ସେ ଅନନ୍ତ ଶେଷନାଗ ଅଂଶରେ ଜନ୍ମିଥିଲେ । ଆଦି ଅନ୍ତ ନଥିବା ଅନନ୍ତର ସହସ୍ର ଫଣା ଅସୁମାରୀ ସମ୍ଭାବନାର ପ୍ରତୀକ । ବିଷ୍ଣୁଙ୍କ ସ୍ୱରୂପ ହୋଇଥିବାରୁ ବାସୁଦେବ ମନ୍ତ୍ରରେ ତାଙ୍କର ବିଶେଷ ପୂଜାର୍ଚ୍ଚନା କରାଯାଏ । ବିଷ୍ଣୁଙ୍କ ଦଶାବତାର ମଧ୍ୟରେ ସେ ଅଷ୍ଟମ ଅବତାର । ଦୁଷ୍ଟ ଦଳନ ନିମନ୍ତେ ସେ ଗଦା ଓ କୃଷିକାର୍ଯ୍ୟ ନିମନ୍ତେ ସେ ଲଙ୍ଗଳ ଧାରଣ କରିଛନ୍ତି । ଶେଷାବତାର ବଳଭଦ୍ରଙ୍କ ଆୟୁଧ ଲଙ୍ଗଳ କାଳ(ମୃତ୍ୟୁ)ର ପ୍ରତୀକ । ମୃତ୍ୟୁଚେତନା ସର୍ବଦାମନ ମଧ୍ୟରେ ଥିଲେ ଜୀବନର ସାର୍ଥକତା ଉପଯୋଗ କରାଯାଇପାରିବ । ସେ କୃଷିର ଆଦ୍ୟ ପ୍ରବର୍ତ୍ତକ ଓ କୃଷିଦେବତା । ସେ କୃଷକମାନଙ୍କର ଆଦର୍ଶ । କୃଷିର ସମୃଦ୍ଧି ହେଲେ ଦେଶ ସମୃଦ୍ଧି ହୋଇଥାଏ । ଏହି ପ୍ରସଙ୍ଗରେ ସ୍ୱଭାବ କବି ଗଙ୍ଗାଧର ମେହେର 'କୃଷିଗୌରବରେ' ଲେଖନ୍ତି :

କୃଷି ତୋର ବେଦରେ, କୃଷି ତୋ ପୁରାଣ ।। କୃଷି ଘେନି ନୃପତି, କୃଷି ଘେନି ସଭ୍ୟ, କୃଷିବଳେ ଆୟ ଶ୍ରୀସମ୍ପଦ ହୁଏ ଲଭ୍ୟ ।।

ଅଗଣିତ ଭକ୍ତଙ୍କୁ ଅଭୟ ପ୍ରଦାନ ନିମିତ୍ତ ସେ ସର୍ବଦା ତ୍ରିପୁର ବିଜୟ ବେଶରେ ସୁସଜ୍ଜିତ । ତାଙ୍କର ସହସ୍ର ଫଣା ମଧ୍ୟରୁ ଏକ ଫଣା ଉପରେ ଅବଲୀଳାକ୍ରମେ ସମଗ୍ର ବିଶ୍ୱକୁ ଧାରଣ କରି ଅଛନ୍ତି । ରାକ୍ଷୀପୂର୍ଣ୍ଣମୀ ଦିନ ବିଭିନ୍ନ ସ୍ଥାନରେ ବଳଦେବଙ୍କ ଜନ୍ମୋତ୍ସବ ବଡ଼ ଆଡ଼ମ୍ବର ସହକାରେ ପାଳିତ ହୋଇଥାଏ । ଏହିଦିନ ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପରେ ବରୁଣ ପୂଜା ପରେ ଶ୍ରୀଜୀଉମାନେ ପାଟରା ବିଷୋୟୀ ଯୋଗାଇଥିବା ଚାରୋଟି ପାଟରାକ୍ଷୀ ଦୁଇ ଭୁଜରେ ପିନ୍ଧନ୍ତି ।

**ଗହ୍ମାବେକରେ ରାକ୍ଷୀ :** ଗୋ ମାତା ଶବ୍ଦରୁ ଗହ୍ମା ଶବ୍ଦ ଉଦ୍ଭବ ବୋଲି କୁହାଯାଇପାରେ । ଓଡ଼ିଶାର ଜନଜୀବନ କୃଷିକର୍ମ ସହିତ ଓତପ୍ରୋତ ଭାବେ ଜଡ଼ିତ । ଶ୍ରାବଣ ପୂର୍ଣ୍ଣିମା ଏକ କୃଷିଭିତ୍ତିକ ପର୍ବ । ଭାରତ ଏକ କୃଷିପ୍ରଧାନ ଦେଶ ହୋଇଥିବାରୁ ପ୍ରତ୍ୟେକ ରାଜ୍ୟରେ ଏହି ପର୍ବକୁ ଆନନ୍ଦ ଉଲ୍ଲାସର ସହ ପାଳନ କରାଯାଏ । ଗୋସମ୍ପଦ ପୁରପଲ୍ଲୀର ସବୁଠାରୁ ବଡ଼ ସମ୍ପଦ । ଗାଈ ଓ ବଳଦଙ୍କର କୃଷିକର୍ମ ନିମନ୍ତେ ଯଥେଷ୍ଟ ଅବଦାନ ରହିଛି । ପୌରାଣିକ ଆଖ୍ୟା ଅନୁଯାୟୀ କାମଧେନୁ ପରି ଗୋମାତା ମଣିଷର ଅନେକ ଆଶା ଅଭୀପ୍ସା ପୂରଣ କରିଥାଏ । ସ୍ୱାସ୍ଥ୍ୟ ନିରାମୟ ଜୀବନ ପାଇଁ ଗୋମାତାର ଦାନ ଅତୁଳନୀୟ । ଗୋମାତା ମଣିଷକୁ ବିବିଧ ବିଘ୍ନରୁ ରକ୍ଷା କରିଥାଏ । ବହୁ ପ୍ରାଚୀନ କାଳରୁ ଓଡ଼ିଆ ଜାତି ଗାଈଗୋରୁଙ୍କୁ ଦେବତା ଜ୍ଞାନରେ ପୂଜା କରିଆସିଛି । ସମସ୍ତ ଦେବଦେବୀ ତା'ର ଶରୀରରେ କଳ୍ପିତ ହୋଇଛନ୍ତି :

ଯାହାର ଶୃଙ୍ଗୁ ପାଦ ଯାଏ । ଅଙ୍ଗେ ବସନ୍ତି ଦେବତାଏ ।।
ଗୋରୁଙ୍କ ପ୍ରତି ଲୋମକୂପେ । ଦେବ ବସନ୍ତି ନାନା ରୂପେ ।।
ବହୁ ତପସ୍ୟା ଫଳେ ଗାଭୀ । ଅଛନ୍ତି ଏ ପ୍ରଭାବ ଲଭି ।।

ଗହ୍ମାପର୍ବ ଗୋଦେବତା ପୂଜାର ପର୍ବ । ଉତ୍କଳର ସ୍ୱଭାବ କବି ଗଙ୍ଗାଧର ମେହେର ଗୋସମ୍ପଦର ମହିମା ପ୍ରଖ୍ୟାପନ କରି କହନ୍ତି :

ପୃଷ୍ଠେ ବ୍ରହ୍ମା ଗଳେ ବିଷ୍ଣୁ ରୁଦ୍ର ସ୍ଥିତ ।
ଆର୍ଯ୍ୟ ଋଷିମୁଖେ ଏହା ହୁଅଇ କଥିତ ।।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ମଧ୍ୟ ଗାଈବଳଦଙ୍କୁ ଶ୍ରଦ୍ଧାର ସହ ପୂଜା କରିବା ପାଇଁ କହି ଯାଇଛନ୍ତି:

ଗୋସେବା କର ଘରେ ଘରେ
ଗୋହିତ ବିଚାର ମନରେ ।।

ଶ୍ରୀବଳଦେବ ସହିତ ଗୋଜାତିର ପୂଜା କରାଯାଏ । ରୋହିଣୀ ନାମକ ଏକ ଗାଈଠାରୁ ଜନ୍ମ ଲାଭ କରିଥିଲେ ବୋଲି ଗୋଜାତି ସହିତ ତାଙ୍କର ସମ୍ପର୍କ ଅତି ନିବିଡ଼ । ଗହ୍ମା ପୂର୍ଣ୍ଣିମା ଦିନ ଗାଈବଳଦଙ୍କୁ ସଫାସୁତୁରା କରି ଗାଧୋଇ ଦିଆଯାଏ । ତେଣୁ କୃଷକମାନେ ହଳଲଙ୍ଗଳ ସହିତ ଅନ୍ୟାନ୍ୟ କୃଷି ଉପକରଣକୁ ଧୋଇପୋଛି ଚନ୍ଦନ ସିନ୍ଦୂର ହଳଦୀ କୁଙ୍କୁମ ଫୁଲ ଧୂପଦୀପ ଦେଇ ଗୋଟିଏ ସ୍ଥାନରେ ରଖି ପୂଜା କରିଥା'ନ୍ତି । ଏହି ପୂଜା ସାମଗ୍ରୀ ଦେଇ ଗୋମାତାଙ୍କୁ ପୂଜା କରାଯାଇ ରାକ୍ଷୀ



ସହ ଉପବୀତ ପଇତା ପିନ୍ଧାଇ ଦିଆଯାଏ । ସୁମିଷ୍ଟ ଓ ମିଠା ଭୋଜନ ଦିଆଯାଏ । ଗହ୍ମାପୂର୍ଣ୍ଣିମାରେ ବଳିବର୍ଦ୍ଧ ପୂଜା ଏକ ସ୍ୱତନ୍ତ୍ର ପରମ୍ପରା । ଆଖ୍ୟାୟିକା ଅନୁଯାୟୀ ସ୍ୱୟଂ ବଳିବର୍ଦ୍ଧ ପ୍ରଭୁ ଶ୍ରୀବଳଭଦ୍ର ଗହ୍ମା ନାମକ ଏକ ଦୁରାଚାରୀକୁ ବଧ କରି ଗୋଜାତିର କଲ୍ୟାଣ ସାଧନ କରିଥିଲେ । ଲୋକ ବିଶ୍ୱାସ ଗହ୍ମାପୂର୍ଣ୍ଣିମା ଦିନ ବଳିବର୍ଦ୍ଧଙ୍କ ପୂଜା କଲେ କୃଷିକ୍ଷେତ୍ରରେ ସମସ୍ତ ବାଧକ ଦୂର ହୋଇଯାଏ । ପ୍ରକାରାନ୍ତରେ କୁହାଯାଏ ଗୋଜାତିର ବାଧକ ଥିଲା ଗହ୍ମା ନାମକ ଏକ କୁଗ୍ରହ । ଶ୍ରାବଣପୂର୍ଣ୍ଣିମା ଦିନ ଭଗବାନ୍ ବଳଦେବ ତାହାକୁ ସଂହାର କରି ଏହି ପର୍ବ ରଚନା କରିଥିଲେ ।

**ରାକ୍ଷୀପୂର୍ଣ୍ଣମୀରେ ଝୁଲଣ ଯାତ୍ରା :** ଶ୍ରାବଣ ପୂର୍ଣ୍ଣିମାକୁ ଝୁଲଣଯାତ୍ରା ମଧ୍ୟ କୁହାଯାଏ । ଶ୍ରାବଣ ଶୁକ୍ଳଦଶମୀ ତିଥିରୁ ରାଧାକୃଷ୍ଣଙ୍କ ମୂର୍ତ୍ତିକୁ ଦୋଳିରେ ବସାଇ ଝୁଲଣଯାତ୍ରା ଆରମ୍ଭ ହୁଏ । ଏହି ପର୍ବ ଗହ୍ମାପୂର୍ଣ୍ଣମୀ ରାତିରେ ଶେଷ ହୁଏ । ପୁରୀ ମନ୍ଦିରରେ ଏହି ପର୍ବ ବେଶ୍ ଆଡ଼ମ୍ବର ସହକାରେ ପାଳିତ ହୁଏ । ଦୋଳି ପୁଷ୍ପରାଶିରେ ଅଳଙ୍କୃତ ହୁଏ । ଦିଅଁଙ୍କ ବସ୍ତ୍ର ପରିପାଟୀ ଦର୍ଶକବର୍ଗଙ୍କୁ ଆକର୍ଷିତ କରେ । ଚନ୍ଦ୍ରାଲୋକରେ ଅଧରଂ ମଧୁରଂ..ସଂଗୀତର ଅପୂର୍ବ ମାଧୁର୍ଯ୍ୟ ପ୍ରତିଟି ହୃଦୟରେ ମୂର୍ଚ୍ଛନା ସୃଷ୍ଟି କରେ । ପୂର୍ଣ୍ଣିମା ରାତିକୁ ଏହି ପର୍ବ ଅଧିକ ମନୋଜ୍ଞ କରେ । ଏହା ହେଉଛି ରାଧାକୃଷ୍ଣଙ୍କର ବର୍ଷାକାଳୀନ ରାସୋତ୍ସବ । ବୃନ୍ଦାବନର କୁଞ୍ଜବନରେ ଭକ୍ତିମତୀ ଗୋପୀମାନେ ରସିକଶେଖର ଶ୍ରୀକୃଷ୍ଣଙ୍କୁ ଲତାଦୋଳିରେ ବସାଇ ଝୁଲାଉଥିଲେ । ଝୁଲଣଯାତ୍ରାର ଉତ୍ପତ୍ତି ରାଧାକୃଷ୍ଣଙ୍କର କୁଞ୍ଜବନର ଝୁଲଣକୁ ଭିତ୍ତି କରି ସମ୍ଭବ ହୋଇପାରିଛି । ଏହାକୁ ନରସିଂହ ଦାସ 'ଶ୍ରବଣେ କୁଞ୍ଜମନ୍ଦିରମ୍'ବୋଲି ଉଲ୍ଲେଖ କରିଛନ୍ତି । ଏହାକୁ ଭାବ ଦେହରେ ଅପ୍ରାକୃତ ରମଣ କୁହାଯାଏ । ଏହା ବାସ୍ତବରେ ରାଧାକୃଷ୍ଣଙ୍କର ଦିବ୍ୟଲୀଳାର ପ୍ରତୀକ । ପ୍ରାୟ ଷୋଡ଼ଶ ଶତାବ୍ଦୀ ପରଠାରୁ ଭାରତର ବୈଷ୍ଣବ ସମ୍ପ୍ରଦାୟ ଓ ମଠ ମନ୍ଦିରମାନଙ୍କରେ ଝୁଲଣଯାତ୍ରା ଅନୁଷ୍ଠିତ ହୋଇଆସୁଛି ।

**ବାସ୍ତୁବିଦ୍ୟାରେ ରାକ୍ଷୀ :** ଭାରତୀୟ ପରମ୍ପରା ଅନୁସାରେ ରକ୍ଷାବନ୍ଧନ ଦିନ ପରିବାରର ସଦସ୍ୟଙ୍କ ହାତରେ ରାକ୍ଷୀ ବାନ୍ଧିବା ପୂର୍ବରୁ ପୁରୋହିତ ଲାଲ ଓ କସରିଆ ଡ଼ୋରିକୁ ଗାୟତ୍ରୀ ମନ୍ତ୍ରରେ ଅଭିମନ୍ତ୍ରିତ କରି ଘରର ମୁଖ୍ୟ ଦ୍ୱାରରେ ରକ୍ଷାସୂତ୍ର ଭାବରେ ବାନ୍ଧିଥା'ନ୍ତି । ବାସ୍ତୁଶାସ୍ତ୍ରମତେ ଏହିପରି ରକ୍ଷାବନ୍ଧନ ଘରର ସମସ୍ତ ପ୍ରକାର ଦୁର୍ଭାଗ୍ୟକୁ ଦୂର କରେ । ଘରେ ବାସ କରୁଥିବା ସମସ୍ତ ସଦସ୍ୟଙ୍କ ପୁରୁଷାର୍ଥ ଜାଗ୍ରତ କରେ । ଧର୍ମର ମାର୍ଗ ଖୋଲିଦିଏ । କୁଦୃଷ୍ଟି ଓ କୋପଦୃଷ୍ଟିରୁ ଘରକୁ ରକ୍ଷା କରିବା ସହିତ ଗୃହପରିବେଷ୍ଟିତ–ଜଳ, ବାୟୁ, ପୃଥିବୀ, ଆକାଶ ଓ ଅଗ୍ନିକୁ ସନ୍ତୁଳିତ ରଖେ । ଅଧିକନ୍ତୁ ଶ୍ରାବଣୀ ପର୍ବରେ ବୃକ୍ଷରୋପଣ କରିବା ଏକ ପରମ୍ପରା ଅଟେ । ସବୁଜିମାକୁ କାଳେ କାଳେ ସମ୍ବର୍ଦ୍ଧନା ଦିଆଯାଇଛି । ଏଥିରେ ଜୀବଜଗତ ଓ ରାଷ୍ଟ୍ରର ସମୃଦ୍ଧି ନିହିତ । ବୃକ୍ଷରୋପଣର ମହତ୍ତ୍ୱ ଉଲ୍ଲେଖ କରି ଅଥର୍ବ ପୃଥ୍ୱୀସୂକ୍ତରେ କୁହାଯାଇଛି–ବୃକ୍ଷ ବନସ୍ପତି ମଧ୍ୟ ପୃଥିବୀର ସନ୍ତାନ । ବାୟୁରେ ଥିବା ବିଷାକ୍ତ ତତ୍ତ୍ୱ (ଅଙ୍ଗାରକାମ୍ଳ)କୁ ବୃକ୍ଷ ଆହାର ରୂପେ ଗ୍ରହଣ କରି ତା'ର ପ୍ରତିବଦଳରେ ପ୍ରାଣୀ ଆବଶ୍ୟକ କରୁଥିବା ପ୍ରାଣଦାୟକ ବାୟୁ(ଅକ୍ସିଜେନ୍)ପ୍ରଦାନ କରିଥାଏ । ବୃକ୍ଷବାହୁଲ୍ୟ ବର୍ଷାକାରକ । ଅତଏବ ପ୍ରକୃତି ଓ ପର୍ଯ୍ୟାବରଣର ସମୃଦ୍ଧି ଉପରେ ବାସ୍ତୁରାକ୍ଷୀ ଶାଣିତ ଦୃଷ୍ଟି ରଖିଥାଏ ।

**ଇତିହାସ ପୃଷ୍ଠାରେ ରାକ୍ଷୀ :** ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଘଟଣା । ମାସିଡ଼ୋନିଆର ରାଜା ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡର ଥରକୁ ଥର ଭାରତ ଆକ୍ରମଣ କରୁଥା'ନ୍ତି । ପ୍ରବଳପ୍ରତାପୀ ରାଜା ପୁରୁଙ୍କଠାରୁ ପରାସ୍ତ ହେଉଥା'ନ୍ତି । ସ୍ୱାମୀଙ୍କ ପରାଜୟରେ ଲଜ୍ଜିତ ହେଲେ ଆଲେକ୍‌ଜାଣ୍ଡରଙ୍କ ପତ୍ନୀ । ସ୍ୱାମୀଙ୍କ ସୁରକ୍ଷା ନେଇ ଚିନ୍ତିତ ଓ ଆତଙ୍କିତ ହୋଇ ପଡ଼ିଲେ । ସେଥିପାଇଁ ସେ ଏକ ଉପାୟ ପାଞ୍ଚିଲେ । ପୂର୍ବରୁ ରାକ୍ଷୀ ବିଷୟରେ ସେ ଶୁଣିଥିଲେ । ସମ୍ପର୍କ ଯୋଡ଼ିବା ପାଇଁ ସେ ରାଜା ପୁରୁଙ୍କ ନିକଟକୁ ଏକ ରାକ୍ଷୀ ପଠାଇଲେ ଓ ତାଙ୍କୁ ଭଉଣୀ ରୂପେ ଗ୍ରହଣ କରିବାକୁ ଅନୁରୋଧ ଜଣାଇଲେ । ପୁରୁ ତାଙ୍କର ଏହି ଇଚ୍ଛାକୁ ସମ୍ମାନ ଜଣାଇଲେ । ଆଲେକ୍‌ଜାଣ୍ଡରଙ୍କ କୌଣସି କ୍ଷତି କରିବେ ନାହିଁ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

**ମୁସଲମାନ୍ ଶାସକଙ୍କ ହାତରେ ରକ୍ଷୀ :** ରାକ୍ଷୀ ପର୍ବ ଇସ୍ଲାମ ସମାଜକୁ ମଧ୍ୟ ପ୍ରଭାବିତ କରିଆସିଛି । ମଧ୍ୟଯୁଗରେ ମୁସଲମାନ୍ ଶାସକମାନଙ୍କର କଥା । ସେମାନେ ହିନ୍ଦୁରାଜପୁତ





ଶାସିତ ରାଜ୍ୟଗୁଡ଼ିକ ଉପରେ ବାରମ୍ବାର ଆକ୍ରମଣ କରୁଥା'ନ୍ତି । ଅତ୍ୟାଚାରୀ ମୁସଲମାନ୍ ଶାସକଙ୍କଠାରୁ ସ୍ୱକୀୟ ସତୀତ୍ୱ ଓ ପତିବ୍ରତାର ସୁରକ୍ଷା ପାଇଁ ରାଜପୁତ୍ ରମଣୀମାନେ ସେମାନଙ୍କ ପାଖ ପଡ଼ୋଶୀ ରାଜାଙ୍କ ନିକଟକୁ ରାକ୍ଷୀ ପଠାଇ ଭାଇଚାରା ସମ୍ପର୍କ ଯୋଡୁଥା'ନ୍ତି । ହିନ୍ଦୁରାଜବଂଶୀୟ ରମଣୀମାନେ ମୁସ଼୍ଲିମ୍ ବାଦ୍‌ଶାହା ସୁବେଦାରମାନଙ୍କୁ ରାକ୍ଷୀ ବନ୍ଧନ କରି ସେମାନଙ୍କଠାରୁ ସୁରକ୍ଷା ଆଶା କରୁଥିଲେ ।

ଗୁଜୁରାଟର ସୁଲତାନ୍ ବାହାଦୁର ଶାହାଙ୍କ ଆକ୍ରମଣରେ ଆଶଙ୍କିତ ଚିତୋରର ବିଧବା ରାଣୀ ବାଳୁତରାଜା ବିକ୍ରମାଦିତ୍ୟଙ୍କ ମାତା କର୍ଣ୍ଣାବତୀ ହୁମାୟୁନ୍‌ଙ୍କ ନିକଟକୁ ହସ୍ତବନ୍ଧନୀ ପଠାଇ ଭାଇ ବୋଲି ସମ୍ବୋଧନ କରି ଏକ ଚିଠି ଲେଖି ତାଙ୍କୁ ସହାୟତା ଅନୁରୋଧ କରିଥିଲେ । ହୁମାୟୁନ୍ ବୁଝିଥିଲେ 'ରାକ୍ଷୀ ଭାରତୀୟ ପରମ୍ପରାରେ ଧର୍ମର ଊର୍ଦ୍ଧ୍ୱରେ ଏକ ପବିତ୍ର ସମ୍ପର୍କ । ବିପଦ ଆପଦରେ ଭଉଣୀର ସହାୟତା କରିବାର ପ୍ରତିଶ୍ରୁତି ।' ସେ ତୁରନ୍ତ ନିଜର ସୈନ୍ୟଙ୍କୁ ନେଇ ସେଠାରେ ପହଞ୍ଚି ଯାଇଥିଲେ । ସମ୍ରାଟ ପୁରୁ ଓ ସିକନ୍ଦରଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧରେ ସିକନ୍ଦର ହାରି ଯାଇଥିଲେ । ସିକନ୍ଦରଙ୍କ କୌଣସି କ୍ଷତି ଘଟାଇ ନଥିଲେ । ସମ୍ରାଟ ଆକବର ଓ ଜାହାଙ୍ଗୀର ମଧ୍ୟ ନିଜଆଡୁ ସଂହତି ପ୍ରତିଷ୍ଠା ପାଇଁ ସମସ୍ତଙ୍କୁ ରାକ୍ଷୀ ବାନ୍ଧିବାକୁ ଆହ୍ୱାନ ଦେଇଥିଲେ । ବହୁ ବ୍ରିଟିଶ ଅଫିସର ଭାରତରେ ରାକ୍ଷୀବନ୍ଧନକୁ ଉତ୍ସାହିତ କରୁଥିଲେ । ନିଜେ ଆଗ୍ରହର ସହିତ ସେଥିରେ ଭାଗ ନେଉଥିଲେ ।

**ସ୍ୱାଧୀନତା ସଂଗ୍ରାମୀମାନଙ୍କ ହାତରେ ରାକ୍ଷୀ :** ୧୯୪୭ରେ ଭାରତୀୟ ସଂଗ୍ରାମରେ ଜନଜାଗରଣ ପାଇଁ ରାକ୍ଷୀର ଭୂମିକା ମଧ୍ୟ କମ୍ ନଥିଲା । ବଙ୍ଗବାସୀମାନେ ବଙ୍ଗଭଙ୍ଗକୁ ବିରୋଧ କରୁଥିଲେ । ରବୀନ୍ଦ୍ରନାଥ ଠାକୁର ଭାଇଚାରା ଓ ଏକତାର ପ୍ରତୀକ ଭାବେ ରାକ୍ଷୀବନ୍ଧନକୁ ପାଳନ କରୁଥିଲେ । ରାକ୍ଷୀରେ ଏହି ରାଜନୈତିକ ଉପଚାର ସଫଳ ହୋଇଥିଲା । ରାକ୍ଷୀର ସ୍ନେହସୌହାର୍ଦ୍ଦ୍ୟର ଡ଼ୋର ବଙ୍ଗବାସୀଙ୍କୁ ଏକଜୁଟ କରିବାରେ ସମର୍ଥ ହୋଇଥିଲା ।

**ଭାଇ ହାତରେ ରାକ୍ଷୀ :** ଆଜି ଭଉଣୀଟିଏ ଭାଇ ହାତରେ ଅତି ସ୍ନେହଶ୍ରଦ୍ଧାରେ ରାକ୍ଷୀ ବାନ୍ଧି ଦେଇଥାଏ । ମଥାରେ ଚନ୍ଦନର ତିଳକ ମାରି ହଳଦୀ ମିଶ୍ରିତ ଅକ୍ଷତ, ଦୁବ, ଫୁଲ ଓ ଦୀପରେ ଭାଇର ବନ୍ଦାପନା କରେ । ଈଶ୍ୱରଙ୍କ ନିକଟରେ ଦୀର୍ଘ ଆୟୁ କାମନା କରେ । ବିପଦ ଆପଦରେ ଭଉଣୀକୁ ସୁରକ୍ଷା ଯୋଗାଇ ତା'ର ସେହ୍ନମମତାର ମୂଲ୍ୟ ରଖିବା ହେଉଛି ରକ୍ଷାବନ୍ଧନର ଅଭିପ୍ରାୟ । ଏହା ସମାଜରେ ଶିଥିଳ ହୋଇ ପଡୁଥିବା ଭାଇଭଉଣୀର ସମ୍ପର୍କକୁ ମଜବୁତ୍ କରେ । ଅତଏବ ରକ୍ଷାସୂତ୍ର ସଂକଳ୍ପିତ ହେବାର ପ୍ରତୀକ । ଏହା ଉଚ୍ଚ ଜୀବନ ମୂଲ୍ୟ ରକ୍ଷା ପାଇଁ ଜଣକୁ ବ୍ରତଶୀଳ କରାଏ । ଦାୟିତ୍ୱପୂର୍ଣ୍ଣ ଜୀବନଯାପନ କରିବାର ପ୍ରେରଣା ପ୍ରଦାନ କରେ । ରକ୍ଷାବନ୍ଧନ ଉତ୍ସବ ପାଳନ ଦ୍ୱାରା ପାରିବାରିକ ଓ ସାମାଜିକ ଏକତା ଦୃଢ଼ୀଭୂତ ହୋଇଥାଏ । ଭଉଣୀ ସମଗ୍ର ନାରୀଜାତିର ପ୍ରତିନିଧି । ନାରୀ ଅବଳା ଦୁର୍ବଳା ବୋଲି ଭାଇର ବାହୁବଳ ଉପରେ ନିର୍ଭର କରିଥାଏ । ପୁରୁଷର ବଳ ପ୍ରତ୍ୟେକ ନାରୀ ପାଇଁ ଢାଲ ସଦୃଶ ହେଉ ।

**ଦସ୍ୟୁ ହାତରେ ରାକ୍ଷୀ :** କୁଖ୍ୟାତ ଦସ୍ୟୁର ହୃଦୟରେ ମଧ୍ୟ ରାକ୍ଷୀ ସ୍ନେହର ଝର ଫିଟାଏ । ଊନବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧର କଥା । ରାଜସ୍ଥାନର ଯୋଧପୁରର ଘଟଣା । ଚାଲିଥାଏ ଦସ୍ୟୁ ମଙ୍ଗଳ ଦାସର ଅମଙ୍ଗଳ ରାଜ୍ । ମରୁଯାତ୍ରୀଙ୍କଠାରୁ ଆରମ୍ଭ କରି ସାଧାରଣ ଲୋକଙ୍କ ମଧ୍ୟରେ କୋକୁୟା ଭୟ । ରାକ୍ଷୀ ପୂର୍ଣ୍ଣମୀ ଦିନ ସକାଳେ ହୋହଲ୍ଲା–ଦୌଡ଼ି ଚାଲ, ପଳାଇ ଚାଲ ... ମଙ୍ଗଳ ଦାସ ଆସୁଛି । ଯିଏ ଯୁଆଡ଼େ ପାରିଲେ ଲୁଚିଗଲେ । ହେଲେ ନିଜକୁ ଲୁଚାଇ ପାରିଲା ନାହିଁ ଏକ ବିଧବା ସ୍ତ୍ରୀଲୋକ । କାଖରେ ଚାରି ପାଞ୍ଚବର୍ଷର ଅବୁଝା ଝିଅଟି । ରାହା ଧରି କାନ୍ଦୁଛି –ଭାଇ ହାତରେ ରାକ୍ଷୀ ବାନ୍ଧିବ ବୋଲି । ମଙ୍ଗଳ ଦାସର ଭୟ ନିରୀହ ଶିଶୁକୁ କାହିଁ ସ୍ପର୍ଶ କରିବ ? ଇତିମଧ୍ୟରେ ମରୁଦସ୍ୟୁ ମଙ୍ଗଳ ଦାସ ନିଜ ଦଳବଳ ସହିତ ଓଟ ପିଠିରେ ବସି ବିଧବାଟି ପାଖରେ ପହଞ୍ଚି ସାରିଥାଏ । ତାକୁ ଦେଖି ବିଧବାଟି ବିଚରା ବରଡ଼ାପତ୍ର ପରି ଥରୁଥାଏ । ମୁଦ୍‌ଗର ପରି ହାତଟି ବାହାର କରି ବଢାଇ ଦେଇ କୁନି ଝିଅଟିକୁ କହିଲା–ନେ ! ମୋ ହାତରେ ରାକ୍ଷୀ ବାନ୍ଧ । ମୁଁ ତୋର ଭାଇ । କୁନି ଝିଅଟି ତା'ର କୋତରା ଚୁନରୀରୁ ଖିଏ ଛିଡ଼େଇ ଖିଲି ଖିଲି ହସି ରାକ୍ଷୀଟିଏ ବାନ୍ଧି ଦେଲା ମଙ୍ଗଳ ଦାସ ହାତରେ । ଲୋକଙ୍କ ଆଖି ସଜଳ ହୋଇ ଉଠିଲା । ସାରା ଜୀବନ ସେହି ଭାଇଭଉଣୀ ସମ୍ପର୍କ ଅତୁଟ ରହିଥିଲା ।

**ରାକ୍ଷୀ ପୂର୍ଣ୍ଣମୀରେ ଗହ୍ମାଡ଼ିଆଁ :** ଓଡ଼ିଶାର ସାମରିକ ପରମ୍ପରାରେ ଗହ୍ମା ପୂର୍ଣ୍ଣିମା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ପାଇକମାନେ ନୂତନ ରଣକୌଶଳର ଅଭ୍ୟାସ ପାଇଁ ଶ୍ରାବଣପୂର୍ଣ୍ଣିମାକୁ ଶୁଭଙ୍କର ମନେ କରୁଥିଲେ । ଏବେ ମଧ୍ୟ ପାଇକମାନଙ୍କ ସମରାଭ୍ୟାସ 'ଗହ୍ମାଡ଼ିଆଁ' ରୂପେ ପରିଚିତ ।

**ଲଘୁଜନଙ୍କ ହାତରେ ରାକ୍ଷୀ:** ଶ୍ରାବଣପୂର୍ଣ୍ଣିମା ଦିନ ପିତା, ମାତା ଓ ଗୁରୁଜନମାନଙ୍କ ନିକଟକୁ ଯାଇ ସାନମାନେ ନମ୍ରତାପୂର୍ବକ ନିଜର ଶ୍ରଦ୍ଧା, ସମ୍ମାନ ଓ କୃତଜ୍ଞତା ପ୍ରକାଶ କରିଥା'ନ୍ତି । ଗୁରୁଜନମାନେ ମଧ୍ୟ ନିଜର ବାତ୍ସଲ୍ୟ ଭାବ ଦେଖାଇ ଆଶୀର୍ବାଦର ପ୍ରତୀକ ସେମାନଙ୍କ ହାତରେ ରାକ୍ଷୀ ବାନ୍ଧି ଦେଇଥା'ନ୍ତି ।

**ଆଧ୍ୟାତ୍ମିକ ବିକାଶ ପାଇଁ ଶ୍ରାବଣୀ ଉପାକର୍ମ :** ଭାରତୀୟ ସଂସ୍କୃତିର ଏକ ବୈଶିଷ୍ଟ୍ୟ ହେଉଛି ପର୍ବପର୍ବାଣିର ପୃଷ୍ଠ ଭୂମିରେ ଆଧ୍ୟାତ୍ମିକ ଅନ୍ୱେଷଣ କରିବା । ଶ୍ରାବଣୀ ପର୍ବ ପାଳନରେ ଆତ୍ମିକ ଚେତନାର ଉତ୍ତରଣ ଘଟିଥାଏ । ଶ୍ରବଣରୁ ଶ୍ରାବଣୀ ଶବ୍ଦ ନିଷ୍ପନ୍ନ । ନବଧା ଭକ୍ତିର ପ୍ରଥମ ସୋପାନ ଶ୍ରବଣ । ଆତ୍ମିକ ବିକାଶର ପ୍ରଥମ ପାହାଚ ଆତ୍ମା ବିଷୟରେ ଶୁଣିବା । ଶାସ୍ତ୍ରବାକ୍ୟ ଓ ଗୁରୁବାକ୍ୟ ଶୁଣି ମନନ କଳାପରେ ତାକୁ ପ୍ରୟୋଗ କରାଯାଇଥାଏ । ବୈଦିକ ଜ୍ଞାନକୁ ଶୁଣିବା ହେଉଛି ଶ୍ରାବଣୀ ଉପାକର୍ମ । ମଣିଷ ଜୀବନରେ ଶିଖିଲେ ତା'ର କ୍ରିୟାନ୍ୱୟନ କରେ । କାରଣ ମଣିଷ ହେଉଛି ଏକ ଶୈକ୍ଷିକ ଜୀବ । ଶୃଙ୍ଗାର ରସର ପ୍ରାବଲ୍ୟ ହେତୁ ଶ୍ରାବଣ ମାସରେ ଆଧ୍ୟାତ୍ମ୍ୟ ବିଦ୍ୟାର ବିଶେଷଜ୍ଞମାନେ ନାନା ପ୍ରକାର ଧର୍ମାଚରଣ ଓ ତପଶ୍ଚର୍ଯ୍ୟାର ବିଧାନ ନିର୍ଦ୍ଦେଶ ଦେଇଛନ୍ତି । ଧର୍ମର ଅର୍ଥ ହେଲା ଯେ ଆମ୍ଭେ ଏଭଳି କାର୍ଯ୍ୟ କରିବା ଉଚିତ୍ ଯାହା ମାଧ୍ୟମରେ ଆମର ମନକୁ ଶାନ୍ତି ମିଳିବ ଓ ମୋକ୍ଷର ଦ୍ୱାର ଖୋଲିଯିବ । ଏହି ମର୍ମରେ ଶୁଭ ସଂସ୍କାରର ଚାରାରୋପଣ କରାଯାଇଥାଏ । ଏହା ହେଉଛି ଆତ୍ମ ଜାଗୃତିର ମାସ । ଲୋକେ ସଂସ୍କାରିତ ହେବା ସଙ୍ଗେ ସଙ୍ଗେ ସଂକଳ୍ପବାନ୍ ମଧ୍ୟ ହୋଇଥା'ନ୍ତି ।

ଉପସଂହାରରେ ଏତିକି କୁହାଯାଇପାରେ ରାକ୍ଷୀ ବନ୍ଧନ, ଗହ୍ମାପୂର୍ଣ୍ଣିମା ଓ ଝୁଲଣଯାତ୍ରା – ଏହି ତିନୋଟି ପର୍ବ ଗୋଟିଏ ତିଥିରେ ପାଳିତ ହେଉଛି । ସମାଜରେ ସୁଧାର ଆଣିବା ପାଇଁ ଏଥିରୁ ପ୍ରେରଣା ମିଳେ । ମାନବକୁ ପରମ୍ପରା ପ୍ରତି ଶ୍ରଦ୍ଧାଶୀଳ କରେ । ଶାନ୍ତି, ପ୍ରୀତି ଓ ସ୍ନେହବନ୍ଧନର ପ୍ରତୀକ ରାକ୍ଷୀ । ଏହା ନରୀ ଜାତି ପ୍ରତି ସମ୍ମାନ ଓ ଦାୟିତ୍ୱବୋଧର ଜାଗରଣ ସଞ୍ଚାର କରିଥାଏ । ସମ୍ପର୍କ, ସହୃଦୟତା ଓ ସଂହତିର ଭାବ ଉଦ୍ରେକ କରି ସାମାଜିକ ଜୀବନକୁ ସମୃଦ୍ଧ କରି ଗଢିତୋଳେ । ପରିବେଶରେ ସନ୍ତୁଳନ ରକ୍ଷାପୂର୍ବକ ରାଷ୍ଟ୍ରୀୟ ଜୀବନରେ ସମନ୍ୱୟ ଆଣି ତାକୁ ସୁସଂହତ କରେ । ମଣିଷର ଉତ୍ସବ ପ୍ରେମ ତାକୁ ଜୀବନର ଉଚ୍ଚତର ଆଭିମୁଖ୍ୟ ଆଡ଼କୁ ଆକୃଷ୍ଟ କରେ । ପାରସ୍ପରିକତାର ମନ୍ତ୍ର ବଳରେ ଆତ୍ମଜ୍ଞାନ ବାଟ ଫିଟାଏ ।

କ୍ୱା.ନଂ– ସି /୨୨/୧, ନାଲକୋ
ଦାମନଯୋଡ଼ି, କୋରାପୁଟ, ୭୬୩୦୦୮







# ଓଡ଼ିଶାର ବୃହତ୍ ସହିଦ୍ ସ୍ମୃତି ପୀଠ – ଇରମ

**ଶ୍ରୀନିବାସ ଆଚାର୍ଯ୍ୟ**

ପ୍ରାୟ ଦେଢ଼ଶହ ବର୍ଷ ଧରି ଜାରି ରହିଥିବା ଭାରତୀୟ ମୁକ୍ତିକାମୀ ଆନ୍ଦୋଳନର ମଇଦାନରେ ଅର୍ଥାତ୍ ୧୮୦୩ ମସିହାରୁ ୧୯୪୭ ମସିହା ମଧ୍ୟରେ ଲକ୍ଷ ଲକ୍ଷ ସ୍ୱାଧୀନତା ସଂଗ୍ରାମୀ କାରାବରଣ କରିବା ସଙ୍ଗେ ସଙ୍ଗେ ହଜାର ହଜାର ସଂଗ୍ରାମୀ ସହିଦ୍ ହୋଇଥିଲେ । ସେହିସବୁ ସହିଦମାନଙ୍କ ମଧ୍ୟରୁ କେହି କେହି ଫାଶୀ ଖୁଣ୍ଟରେ ଝୁଲିଥିଲେ ତ କେହି କେହି ବନ୍ଧୁକ ମୁନରେ ରକ୍ତରଞ୍ଜିତ ହୋଇ ଖଣ୍ଡ ବିଖଣ୍ଡ ଅବସ୍ଥାରେ ବିଚ୍ ବଜାରର ରାସ୍ତା ଉପରେ ଟଳି ପଡ଼ିଥିଲେ । ଅନ୍ୟ କେହି କେହି ବଣ ଜଙ୍ଗଲ ଘେରା ପାହାଡ଼ ପର୍ବତରେ ଗୁଳିବିଦ୍ଧ ହୋଇ ପୋକମାଛି ପରି ସଢ଼ି ସହିଦ ହୋଇଥିଲେ, ଯାହାର ପ୍ରକୃତ ହିସାବ ଆଜିର ଇତିହାସ କହିବା ଅସମ୍ଭବ । ସେସବୁ ନଥିଲା ଜାତିଗତ, ବ୍ୟକ୍ତିଗତ ଓ ଧର୍ମଗତ ସଂଗ୍ରାମ, ତାହା ଥିଲା ସମଗ୍ର ଭାରତୀୟଙ୍କର ଏକ ପ୍ରଜାଶୋଷଣକାରୀ, ଅମାନୁଷିକ, ନିଷ୍ଠୁର ଓ ଅତ୍ୟାଚାରୀ ଫିରିଙ୍ଗ ଶାସକ ବିରୁଦ୍ଧରେ । ୧୮୮୫ ମସିହାରେ ସର୍ବଭାରତୀୟ ସ୍ତରରେ ଜାତୀୟ କଂଗ୍ରେସ ନାମରେ ଏକ ରାଜନୈତିକ ସଂଗଠନ ଜନ୍ମଲାଭକରି ଭାରତ ସ୍ୱାଧୀନତା ପାଇଁ ସ୍ୱର ଉତ୍ତୋଳନ କରିଥିଲେ ମଧ୍ୟ ତାହା ସେତେଟା ଫଳବତୀ ହୋଇ ନଥିଲା । ୧୯୧୫ ମସିହାରେ ଆମ ଜାତିର ଜନକ ମହାତ୍ମାଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ଆସି ଏହି ଆନ୍ଦୋଳନର ମଙ୍ଗ ଧରିବା ସଙ୍ଗେ ସଙ୍ଗେ ମୁଖ୍ୟ କର୍ଣ୍ଣଧାର ରୂପେ ତ୍ୱରାନ୍ୱିତ କରାଇଥିଲେ । ସେ ଅହିଂସା ନୀତିକୁ ଅସ୍ତ୍ର ରୂପେ ଧରି ସମଗ୍ର ଭାରତରେ ପାଦରେ ଚାଲି ଚାଲି ସ୍ୱାଧୀନତାର ବୀଜ ରୋପଣ କରିଥିଲେ । ସେ ତାଙ୍କର ଦକ୍ଷ ନେତୃତ୍ୱ, ସାହସିକତା ଓ କାର୍ଯ୍ୟଧାରାରେ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମଗ୍ର ଭାରତବାସୀଙ୍କୁ ଗୋଟିଏ ରଜ୍ଜୁରେ ବାନ୍ଧିପାରିଥିଲେ । ୧୯୨୧ ମସିହାରେ ତାଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନ (ପ୍ରଥମ ପର୍ଯ୍ୟାୟ), ୧୯୩୦ ମସିହାରେ ଲବଣସତ୍ୟାଗ୍ରହ (ଦ୍ୱିତୀୟ ପର୍ଯ୍ୟାୟ) ଓ ୧୯୪୨ ମସିହାରେ ତୃତୀୟ ତଥା ଶେଷ ପର୍ଯ୍ୟାୟ ଭାରତଛାଡ଼ ଆନ୍ଦୋଳନ ଫଳରେ ଭାରତର ଶାସନଗାଦି ଛାଡ଼ିବାକୁ ଇଂରେଜ ସରକାର ବାଧ୍ୟ ହୋଇଥିଲେ । ଏହି ତିନି ପର୍ଯ୍ୟାୟ ମଧ୍ୟରେ ଶେଷ ପର୍ଯ୍ୟାୟ ତଥା ଭାରତଛାଡ଼ ଆନ୍ଦୋଳନ ବିଶେଷ ଗୁରୁତ୍ୱବହନ କରିଥିଲା । ଇଂରେଜ ସରକାରଙ୍କର ଦୋମୁହାଁ ନୀତିକୁ ବିଶ୍ୱାସ ନ କରି ୧୯୪୨ ମସିହା ଅଗଷ୍ଟମାସ ୮ ତାରିଖରେ ବମ୍ବେଠାରେ ଭାରତୀୟ ଜାତୀୟ କଂଗ୍ରେସ ସମ୍ମିଳନୀରେ ଗାନ୍ଧୀ ଭାରତୀୟମାନଙ୍କୁ 'କର ବା ମର' ମନ୍ତ୍ରରେ ଦୀକ୍ଷିତ କରାଇ ଭାରତଛାଡ଼ ଆନ୍ଦୋଳନରେ ଝାସ ଦେବାକୁ ଆହ୍ୱାନ ଦେଇଥିଲେ । ସେତେବେଳକୁ ଗାନ୍ଧୀଙ୍କ ଉପରେ ଭାରତବାସୀଙ୍କର ଅଟଳ ବିଶ୍ୱାସ ଆସିଯାଇଥିଲା । ଭାରତର ଆବାଳବୃଦ୍ଧବନିତା ଏହି ମୁକ୍ତିକାମୀ ଆନ୍ଦୋଳନରେ ଝାସ ଦେଇ ସ୍ୱାଧୀନତାର ସ୍ୱାଦ ଲାଭ କରିଥିଲେ ।

ଏହିସବୁ ମୁକ୍ତିକାମୀ ଆନ୍ଦୋଳନରେ ଓଡ଼ିଶାର ଅବଦାନ ଅବିସ୍ମରଣୀୟ । ଏହିସବୁ ଆନ୍ଦୋଳନ ଖୋର୍ଦ୍ଧାର ପାଇକ ବିଦ୍ରୋହ, ସମ୍ବଲପୁରର ବୀର ସୁରେନ୍ଦ୍ର ସାଏ, ଢ଼େଙ୍କାନାଳ, କୋରାପୁଟ, ଘୁମୁସର, ପାପଡ଼ାହାଣ୍ଡି, ରଣପୁର, ନୟାଗଡ଼, ନିମାପଡ଼ା, ପୁରୀ, ନୀଳଗିରି, ବାଣପୁର, ଇଞ୍ଚୁଡ଼ି, ଇରମ, କେଉଁଝର ଇତ୍ୟାଦି ଶତ ଶତ ସ୍ଥାନରେ ବିଭିନ୍ନ ପର୍ଯ୍ୟାୟରେ ଭିନ୍ନ ଭିନ୍ନ ସମୟରେ ଘଟି ଯାଇଥିଲା, ଯାହାକି ଇତିହାସ କହେ । ଯେଉଁସବୁ ସ୍ଥାନରେ ବୀର ସଂଗ୍ରାମୀମାନେ ସହିଦ ହୋଇଥିଲେ,





ଆଜି ସେହିସ୍ଥାନଗୁଡ଼ିକ ଗୋଟିଏ ଗୋଟିଏ ସହିଦ ସ୍ମୃତି ପୀଠରୂପେ ଖ୍ୟାତି ଲାଭ କରିଛି । ସେହି ପୀଠମାନଙ୍କ ମଧ୍ୟରେ ୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖ ସୋମବାର ଦିନ ଅବିଭକ୍ତ ବାଲେଶ୍ୱର ଜିଲ୍ଲା ତଥା ବର୍ତ୍ତମାନ ଭଦ୍ରକ ଜିଲ୍ଲାର ବାସୁଦେବପୁରର ଇରମ ଅନନ୍ୟ । ଏହି ଲୋମହର୍ଷଣକାରୀ ଓ ଅମାନୁଷିକ ଐତିହାସିକ ଗୁଳିକାଣ୍ଡରେ ଏକ ସମୟରେ ୨୮ଜଣ ସହିଦ ଓ ପରେ ଜେଲ ଭିତରେ ଜଣଙ୍କର ସହିଦ ହେବା, ଯାହାକି ଓଡ଼ିଶାର କୌଣସି ସ୍ଥାନରେ ଘଟିବା ବିରଳ । ତେଣୁ ଏହାକୁ ବୃହତ ଐତିହାସିକ ଘଟଣା ଓ ଏହି ପୀଠକୁ ଓଡ଼ିଶାର ବୃହତ୍ତମ ସହିତ ସ୍ମୃତି ପୀଠ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବାସୁଦେବପୁରର ବୀର ଭୂମି ଇରମ୍‌ଠାରେ ୧୯୨୧ର ଅସହଯୋଗ ଆନ୍ଦୋଳନ, ୧୯୩୦ର ଲବଣ ସତ୍ୟାଗ୍ରହ ଓ ୧୯୩୪ର ପ୍ରଜା ଆନ୍ଦୋଳନ ଗୋଟିଏ ଗୋଟିଏ ସ୍ତମ୍ଭ ପରି ୧୯୪୨ର ଭାରତଛାଡ଼ ଆନ୍ଦୋଳନ ପାଇଁ ଖୋରାକ ଯୋଗାଇଥିଲା । ଏହା ସତ୍ୟ ଯେ, ଯେକୌଣସି ସଂଗଠନ ତଥା ଅନୁଷ୍ଠାନ ଗୋଟିଏ ଦିନରେ ଦୃଢ଼ ମୂଳଦୁଆ ରୂପେ ପରିଣତ ହୋଇନଥାଏ । ତେଣୁ ଏହାର ପୂର୍ବ ପିଢ଼ି ତଥା ସଂଗଠକମାନେ ଦୃଢ଼ ମୂଳଦୁଆର ବୀଜ ରୋପଣ କରିଥାନ୍ତି । ସେହିପରି ୧୯୨୧ ମସିହା ଅସହଯୋଗ ଆନ୍ଦୋଳନ ସମୟରେ ଇରମର ମେଳନ ପଡ଼ିଆରେ କଂଗ୍ରେସର ଏକ ବିରାଟ ପଟୁଆର ସହିତ ସଭା ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ସଭାପତିତ୍ୱ କରିଥିଲେ ଉପେନ୍ଦ୍ରନାଥ ମହାପାତ୍ର । ସାରଗର୍ଭକ ଭାଷଣ ଦେଇଥିଲେ ବିପ୍ଳବୀ ତଥା ଜାତୀୟତାବାଦୀ କବି ବାଞ୍ଛାନିଧି ମହାନ୍ତି । ଗୀତ ମାଧ୍ୟମରେ କବି ବାଞ୍ଛାନିଧି ମହାନ୍ତି ଏପରି ଉଦ୍‌ବୋଧନ ଦେଇଥିଲେ ଯେ ଯାହାକି ଇରମବାସୀଙ୍କୁ ଜାତୀୟ ସ୍ରୋତରେ ମନ୍ତ୍ରମୁଗ୍ଧ କରିଥିଲା ।

ସେହିପରି ୧୯୩୦ ମସିହାର ଲବଣ ସତ୍ୟାଗ୍ରହରେ ଜାତୀୟ ଆନ୍ଦୋଳନର ସୈନିକ ଡକ୍ଟର ହରେକୃଷ୍ଣ ମହତାବ, ଭାଗବତ ପ୍ରସାଦ ସାହୁ, ଗୋକୁଳାନନ୍ଦ ମହାନ୍ତି, ନିତ୍ୟାନନ୍ଦ ମହାନ୍ତି ଓ ନୀଳମଣି ରାଉତରାୟ ଇତ୍ୟାଦି ସଂଗ୍ରାମୀମାନଙ୍କ ନେତୃତ୍ୱରେ ବାସୁଦେବପୁର, ଚାନ୍ଦବାଲି, ଇରମ୍, ଧାମନଗର ଓ ଭଣ୍ଡାରି ପୋଖରୀ ଅଞ୍ଚଳର ହଜାର ହଜାର କୃଷକ, ଶ୍ରମିକ, ଦିନମଜୁରିଆ, ଯୁବଗୋଷ୍ଠୀ, ସରକାରୀ କର୍ମଚାରୀ ଓ ନାରୀମାନେ ଅଂଶଗ୍ରହଣ କରି ଭିନ୍ନ ଭିନ୍ନ ସମୟ ଓ ସ୍ଥାନଗୁଡ଼ିକରେ ପ୍ରଜାମେଳି, ସତ୍ୟାଗ୍ରହ ପିକେଟିଙ୍ଗ, ଶୋଭାଯାତ୍ରା ଓ ସଭା ସମିତି କରାଇ ଦେଶମାତୃକାର ସେବାରେ ମନ ବଳାଇଥିଲେ । ଏହିସବୁ ଆନ୍ଦୋଳନାତ୍ମକ ଘଟଣାକୁ ୧୯୩୪ ମସିହାର ଗାନ୍ଧୀଙ୍କର ପଦଯାତ୍ରା ବିଶ୍ୱାସଭାଜନ କରିଥିଲା । ଏଥି ସହିତ ତତ୍‌କାଳୀନ ରାଜ୍ୟସ୍ତରୀୟ ନେତୃବୃନ୍ଦ ବହୁବାର ଯଥା ଉତ୍କଳମଣି ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ ଓ ନବକୃଷ୍ଣ ଚୌଧୁରୀ, ନାରୀନେତ୍ରୀ ମାଳତୀ ଚୌଧୁରୀ ଓ ରମାଦେବୀ ଇତ୍ୟାଦି ସଂଗ୍ରାମୀମାନଙ୍କ ମନରେ ଦୃଢ଼ ମନୋବଳ ସୃଷ୍ଟି କରିଥିଲା । ଅନ୍ୟପକ୍ଷରେ ସେଠାକାର ତତ୍‌କାଳୀନ ଜମିଦାର ରାଧାକାନ୍ତ ପାଢ଼ୀ ଇଂରେଜ ସରକାରଙ୍କ ଗୋଲାମୀ ସାଜି ପ୍ରଜାମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରିବା ସହ ଜୋରଜବରଦସ୍ତ ବିଭିନ୍ନ ପ୍ରକାରର କର (ଖଜଣା) ଆଦାୟ କରୁଥିଲେ । କର ନଦେଇ ପାରିଲେ ଘରୁ ବାସନକୁସନ ବା ଘରକରଣା ଜିନିଷ ନେବା ସହ ମାଡ଼ ମାରିବାକୁ ପଛାଉ ନଥିଲେ । ତେଣୁ ସେଠାକାର କୃଷକ, ଶ୍ରମିକ ଓ ଦିନ ମଜୁରିଆ ମେଳି କରି ଜମିଦାର, ଇଂରେଜ କର୍ମଚାରୀ ଓ ପୁଲିସି ଉପରେ ଅତିଷ୍ଠ ହୋଇ ବିଭିନ୍ନ ପ୍ରକାର ସଭାସମିତି ମାଧ୍ୟମରେ ସେମାନଙ୍କର ନ୍ୟାର୍ଯ୍ୟ ଅଧିକାର ପାଇଁ ପ୍ରତିବାଦ କରୁଥିଲେ । ଶହ ଶହ ପ୍ରଜାମାନଙ୍କର ଅଶାନ୍ତିର କ୍ଷୋଭ ପୁଞ୍ଜିଭୂତ ହୋଇ ଅଗ୍ନିଶିଖା ପରି ବିସ୍ଫୋରକ ରୂପ ନେଇଥିଲା ।

୧୯୪୨ ମସିହା ସେପ୍ଟେମ୍ବର ୨୮ତାରିଖ ଦିନ ପୁଲିସ ବାହିନୀ କିଛି ପ୍ରଜାମାନଙ୍କୁ ବନ୍ଦୀ କରିବାର ଖବର ପାଇ, ଏହାକୁ ପ୍ରତିବାଦ କରିବା ପାଇଁ ଇରମର ମେଲଣ ପଡ଼ିଆଠାରେ ସତ୍ୟାଗ୍ରହୀମାନେ ଏକ ସଭାକରୁଥିଲେ । ଏହି ସଭାରେ ଇରମ ଅଞ୍ଚଳରର ସତ୍ୟାଗ୍ରହୀମାନେ ଅତ୍ୟାଚାରୀ ଜମିଦାରଙ୍କ ଗୋଲାମୀ କର୍ମଚାରୀ ଓ ପୁଲିସ ବାହିନୀକୁ ପୂରାଇଦେବେ ନାହିଁ ବୋଲି ଦୃଢ଼ ସଂକଳ୍ପ ନେଇଥିଲେ । ଏହି ସଭାରେ କମଳାକାନ୍ତ କର ସଭାପତିତ୍ୱ କରିଥିଲେ । ଏହି ଘଟଣା ଗୋଲାମୀ ଜମିଦାର ରାଧାକାନ୍ତ ପାଢ଼ୀ ବାସୁଦେବପୁର ଥାନାରେ ଗୁପ୍ତଚରଭାବେ ସୂଚନା ଦେଇଥିଲେ । ଏହି ଖବର ପାଇ ବାସୁଦେବପୁର ଥାନାର ତତ୍‌କାଳୀନ ଡ଼ି.ଏସ୍.ପି. କୁଞ୍ଜବିହାରୀ ମହାନ୍ତିଙ୍କ ନେତୃତ୍ୱରେ ଏକ ସ୍ୱତନ୍ତ୍ର ପୁଲିସ ବାହିନୀ ଇରମ ଆସୁଥିବା ବେଳେ ବାଟରେ





ଏକ ନଦୀ ପଡ଼ିଥିଲା । ନଦୀ ଘାଟରେ ଥିବା ନାବିକ ପୁଲିସ ବାହିନୀକୁ ନଦୀପାର କରିବାକୁ ମନା କରିବାରୁ ସେମାନେ ନାବିକକୁ ନଦୀକୁ ଠେଲି ଦେଇ ନିଜେ ଡ଼ଙ୍ଗା ମାଧ୍ୟମରେ ନଦୀ ପାର ହୋଇ ଇରମ ଅଞ୍ଚଳରେ ପ୍ରବେଶ କରିଥିଲେ । ସେହି ମେଳନ ପଡ଼ିଆକୁ ଯିବା ପାଇଁ ଗୋଟିଏ ମାତ୍ର ଅଣଓସାରିଆ ରାସ୍ତାଥିଲା । ସେହି ରାସ୍ତାକୁ ଅବରୋଧକରି ରକ୍ତମୁଖା ପୁଲିସିବାହିନୀ ସଭାସ୍ଥଳକୁ ପ୍ରବେଶ କରିବା ସମୟରେ ସଭାରେ ସଂଗ୍ରାମୀ ଗଣେଶ ପ୍ରସାଦ ତ୍ରିପାଠୀ ସତ୍ୟାଗ୍ରହୀମାନଙ୍କ ମନରେ ସରକାର ବିରୋଧୀ ଅଗ୍ନିବର୍ଷି ଭାଷଣ ଦେଉଥିଲେ । ପୁଲିସିବାହିନୀଙ୍କ ଆଗମନକୁ ଦେଖି ସମସ୍ତ ସଂଗ୍ରାମୀବନ୍ଧୁ ଏକ ସ୍ୱରରେ ଦେଶ ମାତୃକାକୁ ସ୍ୱାଧୀନ କରିବା ଓ ଗାନ୍ଧୀଙ୍କ ଜୟଗାନ ଧ୍ୱନିମାନ ଦେଇଥିଲେ । ଏଥିସହିତ ପୋଲିସବାହିନୀର ସମ୍ମୁଖରେ ସେମାନଙ୍କ ଆଗମନ ଓ କାର୍ଯ୍ୟକଳାପର ପ୍ରତିବାଦ କରିଥିଲେ ।

ତତ୍‌କାଳୀନ 'ଇରମ' ଅଞ୍ଚଳରେ ଥିବା ୬ଟି ଗ୍ରାମପଞ୍ଚାୟତର ୨୭ଟି ଗ୍ରାମର ଅଧିବାସୀମାନଙ୍କୁ ନେଇ ଇଂରେଜ ସରକାରଙ୍କର ଶୋଷଣ ଓ ମାରଣ ନୀତିକୁ ପ୍ରତିବାଦ କରିବା ପାଇଁ ବିପ୍ଳବୀ କବି ବାଞ୍ଛାନିଧି ମହାନ୍ତିଙ୍କ ନାମରେ ସ୍ୱାଧୀନ ବାଞ୍ଛାନିଧି ଚକଲା ନାମକ ଏକ ଦୃଢ଼ ସଂଗଠନ ଗଠନ କରିଥିଲେ । ସେତେବେଳେ ଇରମ ଅଞ୍ଚଳରେ କୌଣସି ରାଜନୈତିକ ବିପଦର ଆଶଙ୍କା ଦେଖିଲେ ଶଙ୍ଖ ଧ୍ୱନି ଦ୍ୱାରା ସମସ୍ତଙ୍କୁ ସତର୍କ କରାଇବାର ଉପାୟ ଅବଲମ୍ବନ କରାଯାଉଥିଲା । ଯାହାଫଳରେ କି ସମସ୍ତ ଇରମବାସୀ ଗୋଟିଏ ସ୍ଥାନରେ ଏକତ୍ରିତ ହୋଇ ଘଟଣାର ପ୍ରତିବାଦ କରୁଥିଲେ । ସେହିଦିନ ଏହି ଶଙ୍ଖଧ୍ୱନି ସୂଚନା ଦେଇଥିଲା । ଫଳରେ ହଜାର ହଜାର ସତ୍ୟାଗ୍ରହୀ କ୍ଷଣକ ମଧ୍ୟରେ ସେହି ମେଳନ ପଡ଼ିଆରେ ସମବେତ ହୋଇ ଅହିଂସା ମାର୍ଗର ସରକାରୀ ବିରୋଧୀ ଧ୍ୱନିମାନ ଦେଇଥିଲେ । ଅପରପକ୍ଷରେ ସେହି ସମୟରେ ଜମିଦାରଙ୍କ ତରଫରୁ ଏକ ମିଥ୍ୟା ଖବର ପୁଲିସ ବାହିନୀଙ୍କୁ ଦିଆଗଲା ଯେ, ପୁଲିସ ଓ ସରକାରଙ୍କୁ ଆକ୍ରମଣ କରିବା ପାଇଁ ହଜାର ହଜାର ନରନାରୀ ରୁଣ୍ଡ ହୋଇଛନ୍ତି । ଏହି ଖବର ଶୁଣି ଉତ୍‌କ୍ଷିପ୍ତ ଡ଼ି.ଏସ୍.ପି. ଗୁଳି ବର୍ଷଣ କରିବାକୁ ଆଦେଶ ଦେଇଥିଲେ । ହଠାତ୍ ଗୁଳିବର୍ଷଣ ହେବା ଦେଖି ପ୍ରାଣ ବିକଳରେ ସତ୍ୟାଗ୍ରହୀମାନେ ଏଣେତେଣେ ପଳାଇ ଯିବାକୁ ଉଦ୍ୟମ କରିଥିଲେ । ଚାହୁଁ ଚାହୁଁ ଘଟଣାସ୍ଥଳରେ ୨୮ଜଣ ବନ୍ଧୁକ ମୁନରେ ଟଳି ପଡ଼ି ସହିଦ ହୋଇଥିଲେ । ଅନ୍ୟ ଜଣେ ଜେଲ ଭିତରେ ମୃତ୍ୟୁବରଣ କରିଥିଲେ । ଏତଦ୍‌ବ୍ୟତୀତ ପ୍ରାୟ ୫୬ଜଣ ରକ୍ତରଞ୍ଜିତ ହୋଇ କ୍ଷତ ବିକ୍ଷତ ହୋଇଥିଲେ । ଏକ ଆଧାତ୍ମିକ ପୀଠ ମେଳନପଡ଼ିଆଟି ଏକ ନିଷ୍ଠୁର ନିର୍ମମ, ଅତ୍ୟାଚାରୀ ସରକାରଙ୍କ ବନ୍ଧୁକ ମୁନରେ ରକ୍ତରଞ୍ଜିତ ହୋଇ ଏକ ରକ୍ତର ବନ୍ୟା ସୃଷ୍ଟି କରିଥିଲା । ଏହି ହୃଦୟବିଦାରିତ ଘଟଣାଟି ସମଗ୍ର ଦେଶରେ ଚହଳ ପକାଇଦେଲା ଓ ବ୍ୟାପକ ପ୍ରତିବାଦ କରାଗଲା । କିନ୍ତୁ ନିଷ୍ଠୁର ସରକାର କିଛି ନ ଶୁଣି ପୁନଃରାୟ ଗ୍ରାମ ଗ୍ରାମ ବୁଲି ଅନ୍ୟାୟ, ଅତ୍ୟାଚାର ଓ ଲୁଣ୍ଠନ ପ୍ରକାରର ଅଘଟଣ ଘଟାଇବା ସଙ୍ଗେ ସଙ୍ଗେ ଯାହାକୁ ଯେଉଁଠାରେ ଦେଖିଲେ ମିଥ୍ୟା ଦଫାମାନ ଲଗାଇ ବନ୍ଦୀ କଲେ । ତେଣୁ ସେହି ଗ୍ରାମଗୁଡ଼ିକର ନରନାରୀ ଘରଦ୍ୱାର ଛାଡ଼ି ପଳାୟନ କଲେ ।

ସେହି ରକ୍ତ ଜର୍ଜରିତ ନାରକୀୟ ଗୁଳିକାଣ୍ଡରେ ଯେଉଁମାନେ ସହିଦ ହୋଇଥିଲେ, ସେମାନେ ଥିଲେ (୧) ବୃନ୍ଦାବନ ପଣ୍ଡା, (୨) ଜଟି ସାହୁ, (୩) ଗୋବିନ୍ଦ ରାଉତ, (୪) ନିଧି ମଳିକ, (୫) ଶଙ୍କର ମଳିକ, (୬) ଉପ ମଳିକ, (୭) ଭଗବାନ ରାଉତ (୮) ଦିବାକର ପାଣିଗ୍ରାହୀ, (୯) ମଣି ପ୍ରଧାନ, (୧୦) ହରି ସାହୁ, (୧୧) ରତ୍ନାକର ପାଣିଗ୍ରାହୀ, (୧୨) ବଲ୍ଲଭ ବେହେରା, (୧୩) ହୃଷିକେଶ ବେହେରା, (୧୪) ବିଶ୍ୱନାଥ ଦାସ, (୧୫) ଗୋପାଳ ଚନ୍ଦ୍ର ଦାସ (୧୬) ବିଜୁଳି ଦାସ, (୧୭) ରାଧୁ ମହାଳିକ, (୧୮) ମାଘ ମହାଳିକ, (୧୯) ମଣି ବେହେରା, (୨୦) ଧ୍ରୁବ ଚରଣ ଦେ, (୨୧) ବାସୁ ସାହୁ (୨୨) ରାମ ମାଝୀ, (୨୩) କାଳୀ ମାଝୀ, (୨୪) ଭୁଆ ମାଝୀ, (୨୫) କୃଷ୍ଣ ମାଝୀ, (୨୬) ମଦନ ଦଳାଇ, (୨୭) ହରି ବେହେରା, (୨୮) କୃପାସିନ୍ଧୁ ବେହେରା, (୨୯) ନାରୀ ସହିଦ ପରବେଓ୍ୱା । ପରିନେବେ ଓ ୧୨ ବର୍ଷର ବାଳକ ବିଜୁଳି ଦାସଙ୍କର ସହିଦ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ଭାରତୀୟ ମୁକ୍ତିକାମୀ ମଇଦାନରେ ପରିବେଓ୍ୱା ହେଉଛନ୍ତି ପ୍ରଥମ ମହିଳା ସହିଦ ।

ଏପରି ଲୋମହର୍ଷଣକାରୀ ହତ୍ୟାକାଣ୍ଡ ସମଗ୍ର ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଦେଖାଯିବା ବିରଳ । କିନ୍ତୁ ୧୯୧୯ ମସିହାରେ ପାବର ଅମୃତସରଠାରେ ଘଟିଥିବା ଜାଲିଆନାୱାଲାବାଗର ଗୁଳିକାଣ୍ଡ ଭାରତ କାହିଁକି ସମଗ୍ର ବିଶ୍ୱରେ ଏକ ଐତିହାସିକ ସ୍ମୃତି ପୀଠ ରୂପେ ଖ୍ୟାତି ଅର୍ଜନ କରିଛି । କିନ୍ତୁ ୧୯୪୨ ମସିହାରେ ଓଡ଼ିଶାର ଇରମ ନରସଂହାର ହତ୍ୟାକାଣ୍ଡ ଜାଲିଆନାୱାଲାବାଗ ଗୁଳିକାଣ୍ଡର ସମତୁଲ୍ୟ ଅଟେ । ତେଣୁ ଏହି ନାରକୀୟ ହତ୍ୟାକାଣ୍ଡ ଦ୍ୱିତୀୟ ଜାଲିଆନାୱାଲାବାଗ ହତ୍ୟାକାଣ୍ଡର ମାନ୍ୟତା ପାଇଅଛି । ଏହି ରକ୍ତତୀର୍ଥ ଇରମ ହତ୍ୟାକାଣ୍ଡକୁ ସମ୍ମାନ ଜଣାଇବା ଓ ଚିରଦିନ ଏକ ସ୍ମରଣୀୟ ଘଟଣାକୁ ମନେରଖିବା ପାଇଁ ୧୯୮୧ ମସିହାରେ ତତ୍କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ଏକ ସ୍ମୃତି ମନ୍ଦିର ଉନ୍ମୋଚନ ହୋଇଥିଲା । ପରବର୍ତ୍ତୀ ସମୟରେ ଏହାକୁ ଏକ ପର୍ଯ୍ୟଟନ ସ୍ଥଳୀ ରୂପେ ଓଡ଼ିଶା ସରକାରଙ୍କ ଦ୍ୱାରା ଅନୁମୋଦନ ହୋଇଥିଲା । ପ୍ରତିବର୍ଷ ସେପ୍ଟେମ୍ବର ମାସ ୨୮ ତାରିଖରେ ଏଠାରେ ଜିଲ୍ଲା ପୁଲିସ ତରଫରୁ ସେହି ଅମର ସହିଦଙ୍କ ସ୍ମୃତି ଉଦ୍ଦେଶ୍ୟରେ ତୋପ ସଲାମୀ କରାଯାଉଅଛି । ଆଉ ମଧ୍ୟ ସ୍ମୃତି କମିଟି ତରଫରୁ ଦିନସାରା ସହିଦମାନଙ୍କ ସମ୍ମାନାର୍ଥେ ସଭାସମିତି କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଦେଶାତ୍ମବୋଧକ କାର୍ଯ୍ୟକ୍ରମମାନ କରାଯାଏ । ଆଜି ବି ସେହି ନାରକୀୟ ବିଭତ୍ସମୟ ହତ୍ୟାକାଣ୍ଡ ମନେ ପଡ଼ିଲେ ଶରୀରରେ ଏକ ଜାତୀୟତା ପ୍ରେମ ଜାଗ୍ରତ ହୋଇଥାଏ । ଏହି ପବିତ୍ର ପୀଠର ମାଟି ମହାନ ବୋଲି ବିଶ୍ୱାସ ଭାଜନ ହୋଇପାରିଛି । ସେହିଦିନର ସହିଦମାନଙ୍କର ରକ୍ତରଞ୍ଜିତ ବୀର ମାଟି ଆଜି ସମସ୍ତଙ୍କ ପାଇଁ ଏକ ତୀର୍ଥଭୂମି ହୋଇଯାଇଛି । ତେଣୁ ଏହି ପବିତ୍ର ପୀଠଟି ଚିରଦିନ ଅକ୍ଷୟ ସ୍ମୃତି ରୂପେ ରହିବା ଏକାନ୍ତ ଆବଶ୍ୟକ । କାରଣ ଏହା ଦେଶ ଓ ଜାତିର ଗର୍ବ ଓ ଗୌରବ । ଏହି ପବିତ୍ର ପୀଠର ଗୁଣଗରିମାରେ ଆଜିର ଯୁବପିଢ଼ି ଓ ଭବିଷ୍ୟତ ନାଗରିକମାନେ ଆଦର୍ଶିତ ହେବା ସହ ଏହାର ଅକ୍ଷୟ ଧ୍ୱଜାକୁ ସୁରକ୍ଷା ରଖିବା ଏକାନ୍ତ କାମ୍ୟ ।

ପ୍ଲଟ ନଂ- ୭୮୫/୧୨୪୦, ଦୁର୍ଗାମାଧବ ନଗର
ଲେନ ନଂ-୮, ଶ୍ୟାମପୁର, ଭୁବନେଶ୍ୱର

# ବିଘ୍ନ ବିନାଶନ

**ବିଦ୍ୟାଧର ବାରିକ**

ଆହେ ବିଘ୍ନରାଜ ଗଉରୀ ନନ୍ଦନ
ଘେନିବ ମୋର ଜଣାଣ
ତୁମ୍ଭେ ବୁଦ୍ଧି ଦାତା ତୁମ୍ଭେ ଜ୍ଞାନ ଦାତା
ଜୀବର ତୁମ୍ଭେ କାରଣ ।
ଦେବଙ୍କ ମଧ୍ୟରେ ତୁମ୍ଭେ ଅଗ୍ରପୂଜ୍ୟ
ତୁମ୍ଭେ ବିଘ୍ନ ବିନାଶନ
ମହାଯୋଦ୍ଧା ମଧ୍ୟେ ସ୍ଥାନ ଯେ ତୁମ୍ଭର
ବୁଦ୍ଧିରେ ତ ବିଚକ୍ଷଣ ।
ମାତାଙ୍କ ବଚନ ପାଳିଥିଲ ପ୍ରଭୁ
ଶିବେ ହେଲେ ହଇରାଣ
ତୁମ୍ଭପରି କିଏ ଜଗତରେ ଅଛି
ଆହେ ପ୍ରଭୁ ଗଜାନନ ।

ତୁମ୍ଭଠାରେ ଅଛି ମାତାପିତା ଭକ୍ତି
ମାନିଛନ୍ତି ଦେବଗଣ
ମାତାପିତା ଚତୁଃପାଶେ ବୁଲିଯାଇ
କରିଲ ବିଶ୍ୱ ଭ୍ରମଣ !
ଅଜ୍ଞାନ ଅନ୍ଧାର ଦୂର କରି ଦିଅ
ସୁଖରେ ରହନ୍ତୁ ଜନ
ଜ୍ଞାନର କିରଣ ଢାଳିଦିଅ ପ୍ରଭୁ
ଏହି ଆମ ନିବେଦନ ।

କାଇମାଟିଆ, ପାଟଣା
ଯାଆଁଳା, ଖୋର୍ଦ୍ଧା





# ସ୍ୱାଧୀନତା ସଂଗ୍ରାମରେ ମହାମାନବ ମହାତ୍ମା ଗାନ୍ଧୀ

ଜୟଶଙ୍କର ନାୟକ

ଆଜି ଅଗଷ୍ଟ ପନ୍ଦର। ଆମ ଦେଶର ସ୍ୱାଧୀନତା ଦିବସ। ଏହି ସ୍ୱାଧୀନତା ଦିବସ ଆମ ପାଇଁ ଏକ ଦାନ ସ୍ୱରୂପ ନଥିଲା। ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ଦେଶବାସୀଙ୍କୁ କଠୋର ସଂଗ୍ରାମ ଓ ଅସୀମ ତ୍ୟାଗ ସ୍ୱୀକାର କରିବାକୁ ପଡିଛି। ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନେ ଆମର ଚିର ନମସ୍ୟ। ସେମାନଙ୍କୁ ସ୍ମରଣ କରି ରଖିବା ପାଇଁ ଆଜି ଦିନଟି ଆମକୁ ସୁଯୋଗ ଦେଇଥାଏ। ବିଶେଷକରି ମହାତ୍ମାଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ୍, ସୀମାନ୍ତ ଗାନ୍ଧୀ, ସରୋଜିନୀ ନାଇଡୁ, ଗୋପବନ୍ଧୁ ଦାସ, ସୁଭାଷ ଚନ୍ଦ୍ର ବୋଷ ଓ ସ୍ୱାଧୀନତା ଆନ୍ଦୋଳନର ଅନ୍ୟ ବହୁ ନେତା, ଯେଉଁମାନଙ୍କ ତ୍ୟାଗ ତଥା ଆତ୍ମୋତ୍ସର୍ଗ ବିନା ଭାରତବର୍ଷ ସ୍ୱାଧୀନତାର ଆଲୋକ ଦେଖିବା ସମ୍ଭବପର ହୋଇ ପାରିନଥାନ୍ତା। ସେମାନଙ୍କ ନିକଟରେ ଆମ ଦେଶ ଚିର କୃତଜ୍ଞ। ଆଜି ତାଙ୍କରି ଯୋଗୁଁ ଭାରତବାସୀ ଅନ୍ୟ ବିଦେଶୀ ରାଷ୍ଟ୍ରଭଳି ତା'ର ବିଜୟୀ ପତାକା ଫରଫର୍ ହୋଇ ଉଡାଇ ପାରିଛନ୍ତି । ଏହା ବହୁଦିନ ଧରି ବ୍ରିଟିଶ ଶାସନାଧୀନ ହୋଇ ରହିବା ପରେ ବିଦେଶୀ କବଳରୁ ମୁକ୍ତିଲାଭ କରି ଏକ ସ୍ୱାଧୀନ ଓ ସାର୍ବଭୌମ ରାଷ୍ଟ୍ରରେ ପରିଣତ ହୋଇଛି। ସୁଜଳା, ସୁଫଳା, ଶସ୍ୟ, ଶ୍ୟାମଳା, ବୀରପ୍ରସୂ ଭାରତଭୂମି ବହୁ ବର୍ଷ ଧରି ପରାଧୀନତାର ନାଗ ଫାଶରେ ଆବଦ୍ଧ ହୋଇ ହରାଇ ବସିଲା ତା'ର ସକଳ ଐତିହ୍ୟ ଓ ସକଳ ଗୌରବ। ଆକୁମାରୀ ହିମାଞ୍ଚଳ ଭାରତବର୍ଷର ଅଗଣିତ ଜନତାର ହୃଦୟରେ ସ୍ୱାଭିମାନୀ ଜାତୀୟତାଭାବ ଜାଗ୍ରତ କରି ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଦେଶ ହେଲା ସ୍ୱାଧୀନ। ଏହା ଧର୍ମନିରପେକ୍ଷ ସାର୍ବଭୌମ ଗଣତାନ୍ତ୍ରିକ ସମାଜବାଦୀ ରାଷ୍ଟ୍ର ଭାବରେ ଏ ଦେଶ ସମଗ୍ର ବିଶ୍ୱରେ ନିଜର ଗୌରବ ବୃଦ୍ଧି କଲା।



ବିଦେଶୀ ଶାସନର ଦାରୁଣ ନିର୍ଯାତନା ଏ ଦେଶର ଅଧିବାସୀଙ୍କର ଅନ୍ତରରେ ପ୍ରଜ୍ୱଳିତ କଲା ସ୍ୱାଭିମାନୀ ଭାବ। ଏ ଦେଶର ପ୍ରତ୍ୟେକ ନାଗରିକଙ୍କ ଅନ୍ତରରେ ସୃଷ୍ଟି କଲା ଦେଶ ମାତୃକାର ମୁକ୍ତି ପାଇଁ ଦୁର୍ବାର ଲାଳସା। ଜୀବନ ବିନିମୟରେ ଦେଶ ମାତୃକାର ମୁକ୍ତି ପାଇଁ ସେମାନେ ହେଲେ ଦୃଢପରିକର। ଜୀବନ ବିନିମୟରେ ଦେଶର ମୁକ୍ତି ପାଇଁ ଏ ଦେଶର ଜନତା ହେଲେ ଐକ୍ୟବଦ୍ଧ। ଇଂରେଜ ଶାସନର ଗୁଳିଗୋଳା ବନ୍ଧୁକ ମୁକ୍ତିକାମୀ ଜନତାଙ୍କୁ ଲକ୍ଷ୍ୟଚ୍ୟୁତ କରିପାରିଲା ନାହିଁ। ସ୍କୁଲ, କଲେଜ ପରିତ୍ୟାଗ କରି ଛାତ୍ର ସମାଜ ଏହି ଆନ୍ଦୋଳନରେ ଯୋଗ ଦେଲେ। ପୁରପଲ୍ଲୀର କୃଷକ ସମାଜ ମଧ୍ୟ ଗଭୀର ମନୋବଳ ନେଇ ମୁକ୍ତି ଯୁଦ୍ଧରେ ଶହୀଦ ହେବାକୁ ବାହାରି ଆସିଲେ। ଖୁଦିରାମ, ଲକ୍ଷଣ ନାଏକ, ଭଗତ ସିଂ,

ଉଦ୍ଧାମ ସିଂ ହସି ହସି ଝୁଲି ପଡିଛନ୍ତି ବ୍ରିଟିଶ ଶାସନର ଫାଶି ଖୁଣ୍ଟରେ। 'ଝଣ୍ଡା ଉଞ୍ଚା ରହେ ହମାରା' ଧ୍ୱନି ଦେଉ ଦେଉ ୭୫ ବର୍ଷର ବୃଦ୍ଧା ମାତଙ୍ଗିନୀ ହାଜରା ଲୋଟି ପଡିଛନ୍ତି ମାତୃଭୂମିର କୋଳରେ। ବୀରାଙ୍ଗନା ଝାନ୍ସୀରାଣୀ ଲକ୍ଷ୍ମୀବାଇ ସମର କ୍ଷେତ୍ରରେ ଯୁଦ୍ଧ କରୁ କରୁ ଶତ୍ରୁ ପକ୍ଷର ଅସ୍ତ୍ରାଘାତରେ ହୋଇଛନ୍ତି ଧରାଶାୟୀ। ବାର ବର୍ଷର ବାଳକ ବାଜି ରାଉତ ଛାତି ପାତି ଦେଇଛନ୍ତି ବ୍ରିଟିଶ ଶକ୍ତିର ଗୁଳିରେ। ଅନୈକ୍ୟ ମଧ୍ୟରେ ଐକ୍ୟ, ବୈସାଦୃଶ୍ୟ ମଧ୍ୟରେ ସାଦୃଶ୍ୟ ଏବଂ ବୈଷମ୍ୟ ଭିତରେ ସାମ୍ୟ ସୃଷ୍ଟି କରିବା ହିଁ ଭାରତୀୟ ସଂସ୍କୃତିର ମୂଳମନ୍ତ୍ର ଅଟେ। ବ୍ରିଟିଶ ଶାସନର ଅଧୀନରେ ରହି ଗୋଲାମୀ କରି ଜୀବନ ଅତିବାହିତ କରିବାକୁ ସେମାନେ କୁଣ୍ଠାବୋଧ ପ୍ରକାଶ କଲେ। ମହାମାନବ ମହାତ୍ମା ଗାନ୍ଧୀ ଭାରତୀୟ ମୁକ୍ତି ଆନ୍ଦୋଳନର ଥିଲେ ଭଗୀରଥ। ସେ ହେଲେ ଭାରତର ଅତ୍ୟାଚାର ବିଦଳିତ ଅଗଣିତ ଜନତାର ମୁକୁଟବିହୀନ ସମ୍ରାଟ। ପରାଧୀନ ଭାରତବର୍ଷକୁ ବ୍ରିଟିଶ ଶାସନର ରଥଚକ୍ର ତଳୁ ଉଦ୍ଧାର କରିବାକୁ ସେ ହେଲେ ବଦ୍ଧପରିକର। ଏହି ଆନ୍ଦୋଳନକୁ ରୂପରେଖ ଦେଲେ ମହାମାନବ ମହାତ୍ମାଗାନ୍ଧୀ।

ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଏହି ସଂଗ୍ରାମରେ ସତ୍ୟ, ଅହିଂସା, ସତ୍ୟାଗ୍ରହ ଓ ଅସହଯୋଗ ଉପରେ ଆଧାରିତ ବିଶେଷ ଭୂମିକା ଗ୍ରହଣ କରିଥିଲା। ଭାରତ ମାତାର ସୁଯୋଗ୍ୟ ସନ୍ତାନ, ସତ୍ୟ ଓ ଅହିଂସାର ପୃଷ୍ଠପୋଷକ ଶାନ୍ତି ଓ ମୈତ୍ରୀର ପରମ ସାଧକ, ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟ କର୍ଣ୍ଣଧାର, ସ୍ୱାଧୀନ ଭାରତର ସ୍ରଷ୍ଟା, ଜାତିର ଜନକ ପ୍ରିୟ ବାପୁଜୀ, ଯୁଗମାନବ ମହାନୁଭବୀ ମହାମାନବ ମହାତ୍ମା ଗାନ୍ଧୀ ୧୮୬୯ ମସିହା ଅକ୍ଟୋବର ୨ ତାରିଖରେ ଭାରତର ଉତ୍ତର-ପଶ୍ଚିମ ଭାଗରେ ଥିବା ଗୁଜୁରାଟ ଅନ୍ତର୍ଗତ ପୋରବନ୍ଦରଠାରେ ଜନ୍ମଲାଭ କରିଥିଲେ । ତାଙ୍କ ବାଲ୍ୟକାଳର ନାମ ଥିଲା ' ମୋହନ ଦାସ କରମ ଚାନ୍ଦ ଗାନ୍ଧୀ'। ତାଙ୍କ ପିତା ଥିଲେ କୁଟୁମ୍ବ ପ୍ରେମୀ, ସତ୍ୟପ୍ରିୟ, ସାହସୀ, ଉଦାର ସେତେବେଳେ ପୋରବନ୍ଦର ଜଣେ ଦେଶୀୟ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା। ନୀତିନିଷ୍ଠ ଗାନ୍ଧୀଙ୍କ ପିତା ଦେୱାନ ଥିଲାବେଳେ ପୋରବନ୍ଦର ରାଜାଙ୍କ ସହ ମତାନ୍ତର ହୋଇଥିଲା। ତା' ପରେ ସେ ରାଜକୋଟରେ ଦେୱାନ ରହିଲେ। ସେ ଲାଞ୍ଚ ମିଛର ଘୋର ବିରୋଧକୁ ଉପଯୁକ୍ତ ଶୁଦ୍ଧ ନ୍ୟାୟ ପ୍ରଦାନ କରୁଥିଲେ। ସେ ରାଜ୍ୟର ବଡ ବିଶ୍ୱାସୀ ଓ ରାଜଭକ୍ତ ଥିଲେ। ରାଜକୋଟର ଠାକୁର-ସାହେବଙ୍କୁ ଜଣେ ପ୍ରାଦେଶିକ ସ୍ତରର ସାହେବ ଅପମାନ କରିବାରୁ ସେ ଏହାର ପ୍ରତିବାଦ କରିଥିଲେ ଓ ସାହେବ ତାଙ୍କୁ କେତେ ଘଣ୍ଟା ହାଜତରେ ରଖିଥିଲେ। ମହାତ୍ମା ଗାନ୍ଧୀଙ୍କ ଜନନୀ ପୁତୁଳିବାଈ ଜଣେ ଧର୍ମପରାୟଣ ମହିଳା ଥିଲେ। ସେ ବହୁ କଠିନ ବ୍ରତ ଉପବାସ ନିର୍ବିଘ୍ନରେ ପାଳୁଥିଲେ।

ରାଜକୋଟର ଏକ ଗାଉଁଲି ଚାଟଶାଳୀରେ ଗାନ୍ଧୀଙ୍କ ଶିକ୍ଷା ଆରମ୍ଭ ହେଲା। ତା' ପରେ ସହରର ଏକ ପଡାର ପାଠଶାଳାରେ ୧୨ ବର୍ଷ ବୟସରେ ଏକ ହାଇସ୍କୁଲରେ ନାମ ଲେଖାଇଥଲେ। ପିଲାଦିନେ ସେ ଖୁବ୍ ଲାଜକୁଳା ଓ ଭୟାଳୁ ଥିଲେ। 'ରମ୍ଭା' ନାମ୍ନୀ ଜଣେ ଶୁଭାକାଂକ୍ଷୀ ମହିଳା ତାଙ୍କୁ 'ରାମନାମ' ଜପ କରିବାକୁ ପରାମର୍ଶ ଦେଇ ମନରୁ ଭୟ ଛଡାଇ ଥିଲେ। ତାଙ୍କ ପିତା ଆଣିଥିବା ପୁସ୍ତକ 'ଶ୍ରବଣ ପିତୃଭକ୍ତ' ନାଟକ ପଢି ଓ ଗାଁ କୁ ଆସିଥିବା ନାଟ୍ୟ ଦଳ ଦ୍ୱାରା ଅଭିନୀତ ନାଟକ ଦେବତାଙ୍କ ଜୀବନରେ ବିଶେଷ ପ୍ରଭାବ ପଡିଥିଲା। ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ମନ ମଧ୍ୟରେ ଏହି ଶ୍ରବଣ ଓ ହରିଶ୍ଚନ୍ଦ୍ର ଦୁଇଟି ଚରିତ୍ର ଜୀବିତ ରହିଥିଲା।

ସେ କସ୍ତୁରୀ ବାଈଙ୍କୁ ବିବାହ କରିଥିଲେ। କସ୍ତୁରୀ ବାଈ ସ୍ୱଭାବରେ ସରଳ ଜୀବନ, ସ୍ୱାଧୀନ, ପରିଶ୍ରମୀ ଓ ସ୍ପଷ୍ଟବାଦୀ ଥିଲେ। କିଛିଦିନ ପରେ ଗାନ୍ଧୀ ଖରାପ କାର୍ଯ୍ୟ କରି ବହୁ ଅନୁତାପ କରିଥିଲେ। ପରେ ଏକ ଚିଠି ଲେଖି ପିତାଙ୍କୁ ଜଣାଇ ଦୋଷ ସ୍ୱୀକାର କରି ଶାସ୍ତି ମାଗିଥିଲେ ଏବଂ ଭବିଷ୍ୟତରେ ଏପରି ଦୋଷ କଦାପି କରିବେ ନାହିଁ ବୋଲି ପ୍ରତିଜ୍ଞା କଲେ। ଚିଠି ପଢି ପିତାଙ୍କ ନେତ୍ର ଯୁଗଳରୁ ଲୋତକ ବିନ୍ଦୁ ଝରି ଚିଠିଟି ଭିଜିଗଲା। ଅସୁସ୍ଥ ଥିବା ପିତାଙ୍କ କୋହ ତାଙ୍କୁ ବିଚଳିତ କରିଥିଲା। ପରେ ଗାନ୍ଧିଜୀ ନିଜକୁ ବହୁ ପରିମାଣରେ ପରିମାର୍ଜିତ କରିପାରିଥିଲେ।

ପିତାଙ୍କ ମୃତ୍ୟୁ ପରେ ପରିବାରର ଜଣେ ହିତୈଷୀ ବନ୍ଧୁଙ୍କ ପରାମର୍ଶରେ ଗାନ୍ଧୀଙ୍କ ବଡଭାଇ ଗାନ୍ଧୀଙ୍କୁ ବିଲାତରେ ବାରିଷ୍ଟରୀ ପଢିବା ପାଇଁ ଛାଡିଲେ। ଗାନ୍ଧିଜୀ ତାଙ୍କ ମା'ଙ୍କ ନିକଟରେ ମଦ, ମାଂସ ସ୍ପର୍ଶ ନ କରିବା ପାଇଁ ଶପଥ କରିଥିଲେ। ବିଲାତରେ



ବାରିଷ୍ଟରୀ ପାସ୍ କରି ସାରିବା ପରେ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ। ମାତ୍ର ଭାରତରେ ସେ ପ୍ରଥମେ ସେପରି ସଫଳତା ପାଇ ପାରି ନଥିଲେ। ଦକ୍ଷିଣ ଆଫ୍ରିକାର ବାସିନ୍ଦା ଜଣେ ଭାରତୀୟ ବ୍ୟବସାୟୀଙ୍କ ସପକ୍ଷରେ ମୋକଦ୍ଦମା ଲଢ଼ିବା ପାଇଁ ସେ ୧୮୯୩ ମସିହାରେ ଦକ୍ଷିଣ ଆଫ୍ରିକା ଯାତ୍ରା କରିଥିଲେ । ସେ ବ୍ୟବସାୟୀ ଜଣକ ଗାନ୍ଧିଜୀଙ୍କ ବଡଭାଇଙ୍କ ଚିହ୍ନା ପରିଚୟ ଜାଣିଥିଲେ। ସେହି ସମୟରେ ଗୋରା ଲୋକମାନେ ଦକ୍ଷିଣ ଆଫ୍ରିକାର କୃଷ୍ଣକାୟ ବ୍ୟକ୍ତିମାନଙ୍କୁ ଘୃଣା ଚକ୍ଷୁରେ ଦେଖି ଶୋଷଣ କରୁଥିଲେ ଏବଂ ଅନେକ ନିର୍ଯାତନା ଦେଉଥିଲେ। ଏହି ବର୍ଣ୍ଣ ବିଦ୍ୱେଷ ନୀତି ଗାନ୍ଧିଜୀଙ୍କ ପକ୍ଷେ ଅସହ୍ୟ ହେଲା। ସେ ଆଫ୍ରିକୀୟ ଓ ଭାରତୀୟମାନଙ୍କୁ ସଂଗଠିତ କରି ସତ୍ୟ ଓ ଅହିଂସା ମାଧ୍ୟମରେ ଗୋରା ସରକାରଙ୍କ ବିରୋଧରେ ଆନ୍ଦୋଳନ ଆରମ୍ଭ କରିଥିଲେ। ଗାନ୍ଧିଜୀ ଏଥିରୁ ବହୁ ଆତ୍ମିକ ବଳ ଲାଭ ଅନୁଭବ କରିଥିଲେ। ଏହାକୁ ପ୍ରୟୋଗ କରି ଭାରତବର୍ଷର ଇଂରେଜମାନଙ୍କୁ ବିତାଡିତ କରିବା ପାଇଁ ଦୃଢ ଆଶା ପୋଷଣ କରିଥିଲେ।

ଭାରତୀୟମାନେ ଗୋରା ସରକାରଙ୍କ ଦ୍ୱାରା ଅତ୍ୟାଚାରିତ, ନିଷ୍ପେସିତ, ଅବହେଳିତ, ନିର୍ଯାତିତ ହୋଇ ଦୁଃଖ ଯନ୍ତ୍ରଣାରେ ଅତି ଦୟନୀୟ ଅବସ୍ଥାରେ ଜୀବନ ବିତାଉଥିଲେ। ଗାନ୍ଧିଜୀଙ୍କ ଆହ୍ୱାନ ଥିଲା 'କର ବା ମର'। ଗାନ୍ଧିଜୀ ଜନତାଙ୍କ ପ୍ରତିନିଧି ହୋଇ ବିହାରର ଚମ୍ପାରଣଠାରେ ଅତ୍ୟାଚାରିତ ଚାଷୀମାନଙ୍କର ଆନ୍ଦୋଳନ ୧୯୧୫ ମସିହାରେ ଅହମ୍ମଦାବାଦର ଶ୍ରମିକ ଆନ୍ଦୋଳନ, ପଞ୍ଜାବର ଜାଲିଆନାୱାଲାବାଗଠାରେ ଇଂରେଜ ସରକାର ବିରୋଧରେ ହୋଇଥିବା ଆନ୍ଦୋଳନ, ଗୁଜୁରାଟର କୃଷକ ଆନ୍ଦୋଳନ ଓ ରାୱଲଟ୍ ଆଇନ୍ ବିରୋଧରେ ହୋଇଥିବା ଆନ୍ଦୋଳନ ଇତ୍ୟାଦିରେ ସଫଳ ଲାଭ କରିଥିଲେ। ଇଂରେଜମାନଙ୍କ ଅନ୍ୟାୟ, ଅତ୍ୟାଚାରରୁ ମୁକ୍ତି ପାଇବାକୁ ହେଲେ ଭାରତର ସ୍ୱାଧୀନତା ନିହାତି ଅପରିହାର୍ଯ୍ୟ ବୋଲି ସେ ଅନୁଭବ କଲେ। ସାବରମତୀ ଆଶ୍ରମରେ ରହି କିଭଳି ଭାବେ ଭାରତ ସ୍ୱାଧୀନ ହେବ ସେହି ପରିକଳ୍ପନାକୁ ରୂପରେଖ ଦେଲେ ଏବଂ ବିଭିନ୍ନ ପ୍ରକାରର ଆନ୍ଦୋଳନର ଚିନ୍ତାଧାରା ତାଙ୍କ ମନ ଭିତରେ ଆନ୍ଦୋଳନ ଜାଗି ଉଠିଥିଲା। ତାଙ୍କରି ନେତୃତ୍ୱରେ ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ, ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ, ୧୯୪୨ ମସିହାରେ 'ଭାରତ ଛାଡ' ଆନ୍ଦୋଳନ ହୋଇଥିଲା । ଏଥିପାଇଁ ସେ ବହୁବାର କାରାବରଣ କରିଥିଲେ। ଶେଷରେ ତାଙ୍କରି ସ୍ୱପ୍ନ ସଫଳ ହେଲା ଓ ଭାରତ ଆକାଶରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନତାର ସୂର୍ଯ୍ୟୋଦୟ ହେଲା।

ସତ୍ୟ, ଅହିଂସା, ତ୍ୟାଗ, ନିଃସ୍ୱାର୍ଥପରତା, ସମୟାନୁବର୍ତ୍ତିତା, କର୍ତ୍ତବ୍ୟପରାୟଣତା ତାଙ୍କ ଜୀବନର ମୂଳମନ୍ତ୍ର ଥିଲା। ଛୋଟବଡ, ଧନୀ, ଗରିବ, ନିର୍ଦ୍ଧନ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସବୁ ମଣିଷ ସମାନ। ହରିଜନ ଆଦିବାସୀ ଦଳିତ ନିଷ୍ପେଷିତମାନଙ୍କ ଉନ୍ନତି ନିମନ୍ତେ ସେ ସର୍ବଦା ଚେଷ୍ଟା କରୁଥିଲେ। ଅସ୍ପୃଶ୍ୟତା ନିବାରଣ ପାଇଁ ସେ ଆଜୀବନ ସଂଗ୍ରାମ ଚଳାଇଥିଲେ। ନିଜେ ଆଶ୍ରମରେ ପାଇଖାନା ସଫା କରୁଥିଲେ। 'ନିଜ କାମ ନିଜେ କର' ବୋଲି ଆହ୍ୱାନ ମଧ୍ୟ ଦେଉଥିଲେ। ସେଥିରେ ବହୁତ ଆନନ୍ଦ ଅନୁଭବ କରୁଥିଲେ। ଜୀବନରେ ରୋଗୀସେବା କରିବା ତାଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟ ଥିଲା। ଜୀବନରେ ସୂତା କାଟି ବସ୍ତ୍ର ପିନ୍ଧୁଥିଲେ। ତେଣୁ ତାଙ୍କର ଆହ୍ୱାନ ଥିଲା-''କାଟି ଖାଅ, କୁଟି ପିନ୍ଧ''। ଏପରିକି କୁଷ୍ଠ ରୋଗୀମାନଙ୍କୁ ମଧ୍ୟ ଘୃଣା ନ କରି ତାଙ୍କ ସେବା କରୁଥିଲେ। ତେଣୁ ତାଙ୍କୁ ଦରିଦ୍ର ନାରାୟଣ ଓ ପତିତପାବନ ବୋଲି କୁହାଯାଉଥିଲା। ଗାନ୍ଧିଜୀଙ୍କର କୃତିତ୍ୱ ଓ ବ୍ୟକ୍ତିତ୍ୱର ମୂଲ୍ୟାଙ୍କନ କରି କବିଗୁରୁ ବିଶ୍ୱକବି ରବିନ୍ଦ୍ରନାଥ ଠାକୁର ଉଲ୍ଲେଖ କରିଥିଲେ- ରାଜନୀତିଜ୍ଞ ସଂଗଠକ, ଜନନାୟକ, ନୈତିକ ସଂସ୍କାର ହିସାବରେ ଗାନ୍ଧିଜୀ ମହାନ ଥିଲେ ମଧ୍ୟ ଜଣେ ମାନବ ହିସାବରେ ସେ ଥିଲେ ଶ୍ରେଷ୍ଠ ଓ ମହନୀୟ କୃତିତ୍ୱର ଅଧିକାରୀ । ଯଥାର୍ଥରେ ଗାନ୍ଧିଜୀ ଥିଲେ ଜଣେ ମହାତ୍ମା ମହାନୁଭବ ମହାପୁରୁଷ। ଯୀଶୁଖୀଷ୍ଟଙ୍କ ସମୟରୁ ବିଶ୍ୱରେ ମହାତ୍ମା ଗାନ୍ଧୀଙ୍କ ପରି ଜଣେ ଦେଶଭକ୍ତ ଜନ୍ମ ହୋଇ ନାହାନ୍ତି। ଗାନ୍ଧିଜୀଙ୍କର ନୀତି, ଆଦର୍ଶ, ଚିନ୍ତାଧାରା, କର୍ମପନ୍ଥା ଓ କୃତିତ୍ୱକୁ ସମୀକ୍ଷା ତଥା ପର୍ଯ୍ୟାଲୋଚନା କରି ଏହି ସିଦ୍ଧାନ୍ତରେ ବିଶ୍ୱବାସୀ ଉପନୀତ ହୋଇଛନ୍ତି ଯେ ସକ୍ରେଟିସ୍, ଲେନିନ୍ ଗାରିବାଲ୍ଡି, ସାନିୟାତ ସୋନ କିମ୍ବା ଜର୍ଜ ୱାଶିଂଟନ୍ ଗାନ୍ଧିଜୀଙ୍କ ସହିତ ସମକକ୍ଷ ହୋଇ ନପାରନ୍ତି। ନେପୋଲିୟନ ଯୁଦ୍ଧ କରି ପରିଶେଷରେ ପରାଜୟ ବରଣ କରିଥିଲେ। ହିଟ୍ଲର

ୟୁରୋପକୁ କାରାଗତ କରି ମୃତ୍ୟୁ ମୁଖରେ ପଡିଗଲେ । ଗାନ୍ଧିଜୀ ସଂଗ୍ରାମ କରି ଶେଷରେ କୃତକାର୍ଯ୍ୟ ହୋଇଥିଲେ । ବିଶିଷ୍ଟ ବୈଜ୍ଞାନିକ ଆଇନଷ୍ଟାଇନ ଗାନ୍ଧିଜୀଙ୍କୁ ବିଂଶ ଶତାବ୍ଦୀର ଆଶ୍ଚର୍ଯ୍ୟମାନଙ୍କ ରୂପେ ଅଭିହିତ କରିଛନ୍ତି । ସେ ଉଲ୍ଲେଖ କରିଥିଲେ ଯେ ରକ୍ତ ମାଂସ ଧରି ଏଭଳି ଜଣେ ମାନବ ଏ ପୃଥିବୀରେ ଜନ୍ମଗ୍ରହଣ କରିଥିଲେ । ଗାନ୍ଧିଜୀଙ୍କର ବିଜୟ ଥିଲା ଅନ୍ୟାୟ ଉପରେ ନ୍ୟାୟର ବିଜୟ, ମିଥ୍ୟା ଉପରେ ସତ୍ୟର ବିଜୟ, ପରିଶେଷରେ ୧୯୪୮ ମସିହା ଜାନୁଆରୀ ୩୦ ତାରିଖରେ ତାଙ୍କର ମୃତ୍ୟୁ ହୋଇଥିଲା । ଗାନ୍ଧିଜୀଙ୍କ ମୃତ୍ୟୁ ପରେ ଭାରତ ଜଣେ ନିଃସ୍ୱାର୍ଥପର ଦେଶ ସେବକ ତଥା ଅହିଂସାର ପୂଜାରୀଙ୍କୁ ହରାଇ ବସିଲା । ସେ ଆଜି ଆମ ଭିତରେ ନାହାଁନ୍ତି ସତ, କିନ୍ତୁ ତାଙ୍କର ସରଳ, ନିରାଡମ୍ବର ଜୀବନଯାତ୍ରା, ନିର୍ଭୀକତା ଓ ଚରିତ୍ରବତା ପାଇଁ ସେ ଆମମାନଙ୍କଠାରେ ସର୍ବଦା ଚିର ସ୍ମରଣୀୟ ହୋଇ ରହିବେ ।

ଗ୍ରାମ/ପୋ.ଅ– ଖିଚିଂ, ଜିଲ୍ଲା– ମୟୂରଭଞ୍ଜ
ପିନ୍ – ୭୫୭୦୩୯

# ଏଇ ଆମ ଯଶକୀର୍ତ୍ତି

ସୁଦାମ ଚରଣ ଜେନା

ଭାରତ ମାତାର ବନ୍ଦନା କରିବା
ଅଗଷ୍ଟ ପନ୍ଦର ଆଜି
ହଜିତ ଗଲେଣି ସୁଯୋଗ୍ୟ ସନ୍ତାନ
କେତେ ଯେ ଲେଖକ କବି
ଜାତୀୟ ପତାକା ଉଡୁଅଛି ଦେଖ
ମଥାପରେ ଫରଫର
ବୀର ଶହୀଦ୍‌ଙ୍କ କଥା ମନେପଡେ
ଆଖିରୁ ଝରଇ ଲୁହ
ଜାତୀୟତାବାଦୀ କେତେ ଦେଶପ୍ରେମୀ
ଦେଲେ ନିଜ ପ୍ରାଣ ଦାନ
ଜାତି–ଧର୍ମ–ବର୍ଣ୍ଣ ଭୁଲିଯାଇ ଆମେ
ରଖିବା ଦେଶର ମାନ
ମାତୃଭୂମି ପାଇଁ ରକତ ଝରିଛି
କେତେ ଯେ ଅଭୁଲା ସ୍ମୃତି
ଲୌହ ଶୃଙ୍ଖଳକୁ ଚୁର୍‌ମାର୍ କରି
ଛାତିକୁ ଦେଇ ସେ ପାତି
ଗୋରା ଫଉଜଙ୍କ କମାଣ ଆଘାତେ
କେତେ ଯେ ପଡିଲେ ଟଳି
ଜାଲିଆନାୱାଲାବାଗ ମନେ ପଡିଗଲେ
କିଏ ବା ପାରିବ ଭୁଲି
ଓଡ଼ିଆ ଜାତିର ଲଢୁଆ ସୈନିକ
ନିଜ ସ୍ୱାର୍ଥ ଭୁଲିଗଲେ
ବାର ବରଷର ବାଳୁତ ବାଜିଆ
ଦେଶ ପାଇଁ ପ୍ରାଣ ଦେଲେ ।
ଭାରତ ଆମର ଜନମ ଭୂଇଁରେ
ଜଗନ୍ନାଥ ଆମ ଠାକୁର
ଖାରବେଳଙ୍କର ଦାୟାଦ ଆମେରେ
ଆମ ଐତିହ୍ୟ ଗୌରବ
ଦେଶପ୍ରେମ ଆମ ମନ୍ଦାକିନୀ ଧାରା
ଗୌରବମୟ ବିସ୍ମୃତି
ରକତ ମାଉଁସ ଢାଳିଦେଇ ଅଛୁ
ଏଇ ଆମ ଯଶକୀର୍ତ୍ତି ।

ଉତ୍ତାରଣ, କସର୍ଦ୍ଦା, କଟକ





# ସିଂହଭୂମିର ଓଡ଼ିଆ ଜାଗରଣ ଓ ଗୋଦାବରୀଶ ମିଶ୍ର

ଡକ୍ଟର ସର୍ବେଶ୍ୱର ସେଣ

୧୯୧୯ ମସିହା ଫେବୃଆରୀ ୮ ତାରିଖ, ଉପରଓଳି। ବମ୍ବେଇ ଗାଡ଼ି ଲାଗିଲା ଚକ୍ରଧରପୁର ରେଳ ଷ୍ଟେସନରେ। ଓହ୍ଲାଇଲେ ଗୋପବନ୍ଧୁ ଦାସ, ପଛେପଛେ ଗୋଦାବରୀଶ ମିଶ୍ର। ନୂଆ ଜାଗା, ନୂଆ ପରିବେଶ। ପଛରେ ପଡ଼ିରହିଲା ସତ୍ୟବାଦୀ ବନବିଦ୍ୟାଳୟ। ଏଣିକି ନୂତନ କର୍ମକ୍ଷେତ୍ର। ସେତେବେଳକୁ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱରେ ସେଠିକା ବାସିନ୍ଦା ଗଭୀର ଭାବେ ପ୍ରଭାବିତ ହୋଇ ସାରିଥିଲେ। କେବଳ ଓଡ଼ିଆ ନୁହନ୍ତି, ହିନ୍ଦୁସ୍ଥାନୀ, ମାରୁଆଡ଼ି, ବଙ୍ଗାଳୀ – ଏମିତି ମିଶାମିଶି ଅନେକ ଆସିଲେ ଷ୍ଟେସନକୁ। ଗୋପବନ୍ଧୁଙ୍କୁ ପାଛୋଟି ନେଲେ ଗୋଟିଏ ସଭାକୁ। ସଭାରେ ହିନ୍ଦୀ ଓ ବଙ୍ଗଳାରେ ବକ୍ତୃତା ଚାଲିଲା। ଗୋପବନ୍ଧୁ କହିଲେ ଓଡ଼ିଆରେ। ତାଙ୍କ ଭାଷଣରେ କି ଯାଦୁଥାଏ କେଜାଣି, ସଭାସ୍ଥ ଜନତା ମନ୍ତ୍ରମୁଗ୍ଧ ହୋଇଯାଆନ୍ତି। ସେଦିନ ବି ସେୟା ହେଲା। ଗୋପବନ୍ଧୁ ଯାହା କହିଲେ, ଖରା ଦିନର ନଈପାଣି ପରି ଛୋଟ ବଡ଼ ସବୁ ଫାଟ ଭିତରେ ପଶିଲା, ଏପରିକି ପଥର ସନ୍ଧିକି ମଧ୍ୟ ଚାଲିଗଲା। ସଭାରେ ବେଶ୍ ଉତ୍ସାହ ବଢ଼ିଲା। ପ୍ରବଳ କରତାଳି ପଡ଼ିଲା। ଏଇଟି ଥିଲା ଚକ୍ରଧରପୁର ସଭାସ୍ଥଳରେ ଗୋଟେ ଅଭୁଲା ସ୍ମୃତି। ଗୋଦାବରୀଶ ତାହା ଭୁଲି ପାରିନଥିଲେ। ଗୋପବନ୍ଧୁ ସେଠାରେ ନବଚେତନା ଖେଳାଇ ସାରିଥିଲେ। ଜାତୀୟତାବାଦୀ ଅବହାୱାକ୍ରମେ ଜୋର୍ ଧରୁଥିଲା। ଏହାକୁ ଅଧିକ ବେଗଗାମୀ କରିବା ଦାୟିତ୍ୱ ଏଣିକି ଗୋଦାବରୀଶଙ୍କ ଉପରେ। ସେଇ କାର୍ଯ୍ୟକୁ ସେ ଯଥାସାଧ୍ୟ ତୁଲାଇଲେ। ସିଂହଭୂମିରେ ଚାରିବର୍ଷ କଟାଇଲେ। ସେଠାରେ ବିଦ୍ୟାଳୟ ସ୍ଥାପନ ଅବା କଂଗ୍ରେସର ପ୍ରଚାରଭାର ନେଇ ନ ଥିଲେ। ଏକମାତ୍ର ଲକ୍ଷ୍ୟ ତାଙ୍କର ଓଡ଼ିଆ ଜାଗରଣ। ସେଇ ସମୟର ଅନୁଭୂତିକୁ ଗୋଦାବରୀଶ ଲେଖିଛନ୍ତି, 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ' ଆତ୍ମଜୀବନୀରେ।

ଚକ୍ରଧରପୁରରେ ଦ୍ୱିତୀୟ ଦିନ। ରଘୁରାମ ମାରୁଆଡ଼ିଙ୍କ ଧର୍ମଶାଳା। ଢିଙ୍କି ସ୍ୱର୍ଗକୁ ଗଲେ ଧାନ କୁଟିବ। ପୁଣି ସେହି ପିଲା, ସେହି କଳାପଟା, ସେହି ଦୁଧଖଡ଼ି। କିନ୍ତୁ ସ୍ଥିତି ସମ୍ପୂର୍ଣ୍ଣ ଭିନ୍ନ, ସବୁ ନୂଆ ମୁହଁ, ନାହିଁ ବକୁଳ ବନର ଛୁରିଅନା କୁଞ୍ଜ। ହାତ ବଢ଼ାଇଲେ ଚାରିଆଡ଼େ ଇଟା ଚୂନ ତିଆରି କାନ୍ଥ। ଆଖି ଅନୁଭୂତି ସହ କାନ ଅନୁଭୂତି ମିଶିଗଲା। ପିଲେ ପ୍ରଶ୍ନ ପଚାରିଲେ, ସବୁ ପ୍ରଶ୍ନ ହିନ୍ଦୀ ଭାଷାରେ। ଗୋଦାବରୀଶ କିଛି କିଛି ବଙ୍ଗଳା ଜାଣିଥିଲେ, କିନ୍ତୁ ହିନ୍ଦୀରେ ପୂରା ଅନଭିଜ୍ଞ। ଏଥିପାଇଁ ତାଙ୍କୁ ଭାରି ହଟହଟା ହେବାକୁ ପଡ଼ିଲା। ଥରେ ଜଣେ ହିନ୍ଦୁସ୍ଥାନୀ ପିଲା ପଚାରିଲା, ଲଡ଼କୀ କ୍ୟୋଁ ଜାତି ହୈ ? ଗୋଦାବରୀଶ ଥଙ୍ଗେଇ ଥଙ୍ଗେଇ କହିଲେ, ଲଡ଼କୀ ଖ୍ରୀଷ୍ଟିଆନ୍ ଜାତି। ପିଲେ ତ କିଛି ବୁଝିଲେନି, ଖାଲି ତାଙ୍କ ମୁହଁକୁ ଆବାକାବା ହୋଇ ଚାହିଁଲେ। ଶ୍ରେଣୀର ଓଡ଼ିଆ ପିଲେ ପରସ୍ପର ଚାହାଁଚୁହିଁ ହୋଇ ହସିଲେ। ଏତ ଗୋଟିଏ ଦିନର କଥା। ଥରେ ଜଣେ ବେପାରୀ ଟେଲିଗ୍ରାମ୍ ଫରମଟିଏ ଭରି ଦେବାକୁ ଗୋଦାବରୀଶଙ୍କୁ କହିଲେ। ଲେଖିବାର କଥା ଥିଲା, ଗୌଁକା ଭାଉ ସାଢ଼େ ସାତ ରୂପୟା ହୈ। ଗୋଦାବରୀଶ ଲେଖିଦେଲେ, ତାର ଚାଲିଗଲା। ତା' ପରଦିନ ବେପାରୀ ଜଣକ ଆସି କହିଲେ, ବାବୁ କାଲି କ'ଣ ଟେଲିଗ୍ରାମ୍ ଲେଖିଲ କି ? ମୋତେ ହଜାର ମହଣ ଘିଅ କିଣିବାକୁ ବରାଦ ଆସିଛି। କଥାବାର୍ତ୍ତାରୁ ଗୋଦାବରୀଶ ଜାଣିଲେ 'ଗୌଁ' ଓଡ଼ିଆରେ ଘିଅ ନୁହେଁ, ଗହମ୍। ଯେଉଁଠି ପିଲା ହିନ୍ଦୀରେ ଅଭ୍ୟସ୍ତ, ଓଡ଼ିଆରେ ପାଠପଢ଼ାର ନାଁ ଗନ୍ଧ ନାହିଁ, ସେଠି ହିନ୍ଦୀ





ଜାଣିନଥିବା ମାଷ୍ଟ୍ରେ ବେଶ୍ ହଇରାଣ ହରକତ ହୁଅନ୍ତି। ଗୋଦାବରୀଶ ବି ଅପଦସ୍ତ ହେଲେ। କିନ୍ତୁ ସବୁ ପ୍ରତିକୂଳ ସ୍ଥିତିରେ ସେ ନିଜକୁ ଖାପ ଖୁଆଇଲେ। ଶେଷରେ ଓଡ଼ିଆ ଜାଗରଣରେ ସକ୍ଷମ ହେଲେ।

ନ ଜାଣିଥିବା ଲୋକ ଛୋଟବଡ଼ ଭୁଲ କରେ। ଗୋଦାବରୀଶଙ୍କ ପକ୍ଷେ ତାହା ହିଁ ହେଲା। 'ଦେଉଳ ନ ତୋଳି' ଚାରିଆଡ଼େ ନାଁ ପଡ଼ିଗଲା। ପୁନଶ୍ଚ ଗୋଟେ କଉତୁକିଆ ଘଟଣା ଘଟିଲା। ରାସ୍ତାରେ ଜଣେ ବାଇଗଣ ବେପାରୀ କୁଆଡ଼େ ଯାଉଛି ବୋଲି ପଚାରନ୍ତେ, ସେ କହିଲା 'କ'ଣ ହେଡ୍ ମାଷ୍ଟର ଘରକୁ'। କ'ଣ ହେଡ୍ ମାଷ୍ଟର ତ କେହି ନଥିଲେ। ଶେଷରେ କଥାଟା ଜଣା ପଡ଼ିଲା। ଗୋଦାବରୀଶ ହିଁ 'କ'ଣ ହେଡ୍‌ମାଷ୍ଟର'। ଚକ୍ରଧରପୁରର ସମସ୍ତ ପାଠୁଆ ତାଙ୍କୁ କ'ଣ ହେଡ୍‌ମାଷ୍ଟର ବୋଲି ଜାଣିଥିଲେ। ଏହାର କାରଣଟା ବି ଜଣାପଡ଼ିଲା। ସେଠାରେ ସବୁ 'କି' ଚଳେ – 'କି ଖାଇଚ', 'କି ପଢୁଛ'। ଗୋଦାବରୀଶ କହନ୍ତି 'କ'ଣ ଖାଉଚ', 'କ'ଣ କହୁଚ', 'କ'ଣ ପଢୁଛ'। ଏପରି ସ୍ଥଳେ ତାଙ୍କ ନାମ 'କ'ଣ ହେଡ଼ମାଷ୍ଟର' ଭଳି ସମର୍ଥ ନାମ ଛଡ଼ା ଆଉ କି ନାମ ବା ପ୍ରୟୋଗ କରାଯାଇପାରନ୍ତା ? ଇତର ଲୋକମାନଙ୍କ ମଧ୍ୟରେ ତାଙ୍କର ଏମିତି ବିଚିକିଚିଆ ନାମ। ଏହା ସତ୍ତ୍ୱେ ଆପଣାର ନିଷ୍ଠା, ଆଦର୍ଶ, କର୍ତ୍ତବ୍ୟପରାୟଣତା ପାଇଁ ସେ ସର୍ବତ୍ର ଆଦରର ପାତ୍ର ହୋଇଥିଲେ।

ସମୟ ଚେହେରା ବଦଳାଇ ଦିଏ। ଚକ୍ରଧରପୁର ଏବେ ବ୍ୟବସାୟୀମାନଙ୍କ ପେଣ୍ଠସ୍ଥଳ। ଦିନେ ତାହା 'ପୋଡ଼ା ହାଟ' ରାଜାଙ୍କ ପୀଠ ଥିଲା। ସେ ରାଜବଂଶ ସମଗ୍ର 'ସିଂହଭୂମି'ର ରାଜା ଥିଲେ। ୧୮୫୭ ମସିହାରେ ସିପାହୀ ବିଦ୍ରୋହରେ ରାଜା 'ଅର୍ଜୁନ ସିଂହ' ଧରାହୋଇ ବନ୍ଦୀ ହେଲେ, ତାଙ୍କ ରାଜ୍ୟ ଖାସ୍ ହୋଇଗଲା। ରାଜା ତ ରହିଲେନି, ଚକ୍ରଧରପୁରର ପ୍ରାଚୀନ ଗରିମା ଲୁପ୍ତ ହେଲା। ଅର୍ଜୁନଙ୍କ ପରେ ତାଙ୍କ ବଂଶଧର 'ନରପତ୍ ସିଂହ' ବାସ କରୁଥିଲେ। ସେ ବାହାରକୁ କ୍ୱଚିତ ବାହାରନ୍ତି। ତାଙ୍କ ପୂର୍ବପୁରୁଷ ସେଠାରେ ରାଜଧାନୀ ଗଢ଼ିଥିଲେ, ବ୍ରାହ୍ମଣ ଶାସନ ବସାଇଥିଲେ। ବର୍ତ୍ତମାନ ତାହା ପୁରୁଣା ବସ୍ତି ଆଖ୍ୟା ପାଇଛି। ସେଠାରେ ସବୁ ଜିନିଷ ପୁରୁଣା। ଘର, ଗାଁ, ଦେଉଳ, ପୋଖରୀ – ଏସବୁ ଗୋଟେ ଗୋଟେ ବିଭବଶାଳୀ ଗୌରବମୟ ରାଜଧାନୀର ଭଗ୍ନାବଶେଷ ପରି ପରିଦୃଷ୍ଟ। ପୁରୁଣା ବସ୍ତିରେ ସବୁ ଲୋକ ଓଡ଼ିଆ। କିନ୍ତୁ ଚକ୍ରଧରପୁର ବଜାରଟି ମାରୁଆଡ଼ି, ହିନ୍ଦୁସ୍ଥାନୀ, ବଙ୍ଗାଳୀଙ୍କର ବାସସ୍ଥଳୀ। 'ପୁରୁଣା ବସ୍ତି', ବଜାର ଭିତରର ବ୍ୟବସାୟୀମାନଙ୍କ ମଧ୍ୟରେ ସମ୍ପର୍କ ଭଲ। କିନ୍ତୁ ମନ ଭିତରେ ଭାରି ଅମେଳ। ତଥାପି ଗୋଦାବରୀଶଙ୍କର ଉଭୟ ଜାଗାରେ ରହିବାରେ କିଛି ଅସୁବିଧା ନ ଥିଲା। ଆଦର, ଅଭ୍ୟର୍ଥନା ବି କିଛି କମ୍ ନୁହେଁ। ପୁନେଇଁ ପରବରେ ହିନ୍ଦୁସ୍ଥାନୀ, ମାରୁଆଡ଼ି ବନ୍ଧୁମାନେ ତାଙ୍କ ଘରକୁ ପିଠାପଣା ପଠାନ୍ତି। ଗଉଡ଼ ଘରୁ ଦୁଧ ଭେଟି ଆସେ। ଦିନେ ଦିନେ ଗୁଡ଼ିଆ ଦୋକାନ ମିଠା ବି। ଗୋଦାବରୀଶଙ୍କ ସ୍ୱଭାବ ଚରିତ୍ର ସେମାନଙ୍କ ଉପରେ ବଡ଼ ପ୍ରଭାବଟାଏ ପକାଇଲା। କେହି କେହି ହିନ୍ଦୁସ୍ଥାନୀ, ମାରୁଆଡ଼ି ତାଙ୍କୁ 'ମହାତ୍ମା' ଡାକିବାକୁ ଆରମ୍ଭ କଲେ। ଗୋଦାବରୀଶ ବି କିଛି କିଛି ହିନ୍ଦୀ ଶିକ୍ଷାକଲେ। ଏଣିକି ବେପାରୀ ଗୋଷ୍ଠୀଙ୍କ ସହ ଭାବ ବିନିମୟରେ ଆଉ କିଛି ବାଧା ଉପୁଜିଲାନି।

ଚକ୍ରଧରପୁରରେ ସ୍କୁଲ୍‌ଟିଏ ବସିଲା। ଏ ସମ୍ପର୍କରେ ସହାନୁଭୂତି ମିଳିଲା। ଚକ୍ରଧରପୁର ରେଳଷ୍ଟେସନ୍‌ରେ ରହୁଥିବା ଗୋରାମାନେ ବି ସାହାଯ୍ୟର ହାତ ବଢ଼ାଇଲେ। ସବୁ ବଦାନ୍ୟ ବ୍ୟକ୍ତିଙ୍କ ମଧ୍ୟରେ ଅର୍ଥ ଦିଗରୁ 'ଦୀନନାଥ ପାଣ୍ଡେ' କର୍ମୀ ହିସାବରୁ 'ଗତିକୃଷ୍ଣ ଷଡ଼ଙ୍ଗୀ'ଙ୍କ ନାମ ସବା ଆଗରେ। ଦୀନନାଥ ଚକ୍ରଧରପୁରର ବଡ଼ ବ୍ୟବସାୟୀ। ସେ ସ୍କୁଲ ତୋଳିଦେଲେ, ମାସକୁ ମାସ ସ୍କୁଲର ଯାବତୀୟ ଖର୍ଚ୍ଚ ବହନ କଲେ। ସେସମୟରେ ତାଙ୍କର ବାର୍ଷିକ ଆୟ ପଚାଶ ହଜାର ଟଙ୍କା। ସେ 'ଚତୁର୍ବେଦୀ' ବ୍ରାହ୍ମଣ। ହାକିମ ହୁକୁମାଙ୍କ ସହ ଖଣ୍ଟି ଇଂରାଜୀରେ କଥାବାର୍ତ୍ତା କରନ୍ତି। ଜାତି, ଧନ, ବିଦ୍ୟା, ବୟସ– ପ୍ରତିଟିରେ ଥିଲା ତାଙ୍କର ଖୁବ୍ ଅଭିମାନ। ତଥାପି ସେ 'ଗୋଦାବରୀଶ'ଙ୍କୁ 'ଗୁରୁଜୀ' ଡାକୁଥିଲେ। ଆଉ ଜଣେ ସଜ୍ଜନ ଗତିକୃଷ୍ଣ, ଓଡ଼ିଆ ଯୁବକ। ଆଇ.ଏ. ପାଶ୍, ଶିକ୍ଷା ବିଭାଗର ସବ୍–ଇନିସ୍‌ପେକ୍ଟର। ଗୋଦାବରୀଶଙ୍କ ବ୍ୟକ୍ତିତ୍ୱରେ ଗତିକୃଷ୍ଣଙ୍କ ହୃଦୟ ଦ୍ରବୀଗଲା। ସରକାରୀ ଚାକିରି ଛାଡ଼ିଲେ। ଶେଷରେ ମାସିକ ତିରିଶି ଟଙ୍କା ଭତ୍ତାରେ ତାଙ୍କ ସହକର୍ମୀ ହେଲେ। ସେତେବେଳେ ଗୋଦାବରୀଶଙ୍କ ଦରମା ପଞ୍ଚସ୍ତରୀ ଟଙ୍କା। ଗତିକୃଷ୍ଣ ସରଳ, ସହିଷ୍ଣୁ, ସ୍ପଷ୍ଟବାଦୀ, ମିତବ୍ୟୟୀ, କର୍ତ୍ତବ୍ୟନିଷ୍ଠ, ନିରଭିମାନ କର୍ମୀ। ଏ ପ୍ରକାର ମଣିଷ ଗୋଦାବରୀଶ ଆଗରୁ



ଦେଖି ନଥିଲେ। ସ୍ୱଳ୍ପ ବୟସରେ ଗତିକୃଷ୍ଣ ବାଟ କାଟିଲେ। ସେ ଯେ ଜାତିଯଜ୍ଞରେ ନିଜର ଜୀବନକୁ ଆହୂତି ଜାଳିଦେଲେ, ତାହା ଅକ୍ଷରେ ଅକ୍ଷରେ ସତ। ତାଙ୍କ ଶେଷ ଜୀବନର ବେଶଭୂଷା ଅତି ସାଧାସିଧା। ଆଣ୍ଠୁ ନ ଡେଇଁବା ଭଳି ଖଦଡ଼ ଲୁଗା, କାନ୍ଧକୁ ଖଣ୍ଡିଏ ଗାମୁଛା। ସେହି ବେଶରେ ସେ ସ୍କୁଲ୍‌କୁ ଯାଉଥିଲେ, ଯିବା ଆସିବା କରୁଥିଲେ, ସଭା ସମିତିରେ ଭାଷଣ ବି ଦେଉଥିଲେ। ସେ ଶୀର୍ଣ୍ଣକାୟ। ତାଙ୍କ ସରଳ ଜୀବନଧାରା ଗୋଦାବରୀଶଙ୍କୁ ବହୁ ଭାବେ ପ୍ରଭାବିତ କରିଥିଲା। ପଚିଶ ବର୍ଷ ପରେ ବି ତାଙ୍କର ସେଇ ଅମାୟିକ ରୂପ ତାଙ୍କ ଆଖି ଆଗରେ ନାଚି ଯାଉଥିଲା। ଚକ୍ରଧରପୁରରେ ଚାରିବର୍ଷ ରହଣି କାଳରେ ଗତିକୃଷ୍ଣ ଥିଲେ ତାଙ୍କର ପରମ ବନ୍ଧୁ – ଏ କଥାଟି ଲେଖକ ମୁକ୍ତକଣ୍ଠରେ ପ୍ରକାଶ କରିଛନ୍ତି।

ପ୍ରଥମ ଦେଢ଼ବର୍ଷ ଉପରେ ସିଂହଭୂମି ଜିଲ୍ଲାରେ ସବୁ ଠିକ୍ ଠାକ୍ ଚାଲିଲା। ସେତେବେଳେ ସିଂହଭୂମିର ଲୋକସଂଖ୍ୟା ୬,୯୪,୩୯୪। ତା' ଭିତରେ ଓଡ଼ିଆ ୧,୨୪,୫୯୩। ଏଇଟି ୧୯୧୧ ମସିହାର ଜନଗଣନା ସରକାରୀ ରିପୋର୍ଟ। ଗୋଦାବରୀଶଙ୍କ ଆସିବା ପରେ ଓଡ଼ିଆ ହାଇସ୍କୁଲ୍ ତ ପ୍ରତିଷ୍ଠା ହେଲା, ଅନେକ ପ୍ରାଥମିକ ସ୍କୁଲ୍ ବି ବସିଲା। ଗୋପବନ୍ଧୁ 'ପଇସିକିଆ ପାଣ୍ଠି' ସଂଗ୍ରହ କଲେ। ମୋଟ୍ ବାରହଜାର ପର୍ଯ୍ୟନ୍ତ ଟଙ୍କା ଉଠାଇଲେ। ପ୍ରଚାରକ ଅନନ୍ତ ମିଶ୍ର ବି ଖୁବ୍ ପରିଶ୍ରମୀ। ସିଂହଭୂମିରେ ଓଡ଼ିଆ ପ୍ରଚାର କଲେ, ପାଣ୍ଠି ସଂଗ୍ରହ କରି ପଠାଇଲେ। ଜିଲ୍ଲାରେ ଅପୂର୍ବ ଉତ୍ସାହ ଦେଖାଗଲା। ଓଡ଼ିଆ ପଢ଼ିବାକୁ ଜିଲ୍ଲାବାସୀଙ୍କ ଆଗ୍ରହ ବହୁଗୁଣିତ ହେଲା। ୧୯୨୧ ମସିହା ଜନଗଣନାରେ ସିଂହଭୂମିରେ ଓଡ଼ିଆଙ୍କ ସଂଖ୍ୟା ୧,୪୦,୮୭୧ ହେଲା। ୧୯୩୧ରେ ତାହା ହେଲା ୧,୭୧,୮୮୭। ତା' ପରେ ୧୯୪୧ ଜନଗଣନା। ଏଥର କିନ୍ତୁ ଭାଷା, ଜାତି ସୂତ୍ରେ ଗଣନା କରାଗଲାନି। ତାହା ହୋଇଥିଲେ ସଂଖ୍ୟା ବହୁ ଅଧିକ ହୋଇଥାନ୍ତା। ଏ ପ୍ରକାର ଓଡ଼ିଆ ଜାଗରଣର ଭିତ୍ତିଭୂମି ପକାଇଥିଲେ ଗୋପବନ୍ଧୁ ଦାସ। ସିଂହଭୂମିର ବନ୍ଧୁମାନଙ୍କ ସାହାଯ୍ୟରେ ତାଙ୍କ ସ୍ୱପ୍ନକୁ ସାକାର କଲେ ଗୋଦାବରୀଶ। ଅନ୍ୟ ଭାଷାଭାଷୀଙ୍କ ପ୍ରାଧାନ୍ୟ ସତ୍ତ୍ୱେ ସେଠାରେ ଓଡ଼ିଆ ଜାଗରଣର ସଫଳତା କିଛି କମ୍ କଥା ନଥିଲା।

ଜଙ୍ଗଲରେ କାଠ ଶୁଖି ପଡ଼ିଥାଏ। ଥରେ ନିଆଁ ଲାଗିଲେ ଶୁଖିଲା କାଠ ଜଳେ। କଞ୍ଚାକାଠଗୁଡ଼ାକ ବି ଠିଆ ଠିଆ ଜଳିବାକୁ ଆରମ୍ଭ କରେ। ସିଂହଭୂମିରେ ଓଡ଼ିଆ ଜାଗରଣ ସେହିପରି ଭାବେ ଗତି କଲା। ସେଠାକାର ମୁଷ୍ଟିମେୟ ବିହାରୀଙ୍କ ଛାତିରେ ଛନକା ପଶିଲା। ସେମାନେ ବିରୋଧର ବାଟ ଉଣ୍ଡିଲେ। ପାଟଣା ଦଉଡ଼ା ଦଉଡ଼ି କଲେ। ଏଣେ ଉପରେ ଉପରେ ଗୋଦାବରୀଶଙ୍କ ସହ ଘନିଷ୍ଠତା ରଖିବାରେ ଊଣା କଲେନି। ୧୯୨୦ ମସିହା ଡିସେମ୍ବର ମାସ ୩୦ ତାରିଖ। ଚକ୍ରଧରପୁରରେ ଉତ୍କଳ ସମ୍ମିଳନୀର ବୈଠକ ବସିଲା। ରାଜନୈତିକ ତିକ୍ତତା ଏଡ଼ାଇବାକୁ ମଧୁସୂଦନ ଦାସ ଏଥିରେ ଯୋଗ ଦେଲେନି। ଗଞ୍ଜାମକୁ ଛାଡ଼ିଦେଲେ ସମ୍ଭବତଃ ଚକ୍ରଧରପୁରରେ ସମ୍ମିଳନୀର ଏଇଟି ପ୍ରଥମ ବୈଠକ। ଚକ୍ରଧରପୁର ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳ। ବଙ୍ଗାଳୀ ଓ ବିହାରୀଙ୍କ ଛାତି ଉପରେ ସମ୍ମିଳନୀ ହେଲା। ସେମାନଙ୍କ ପାଇଁ ତାହା ଅସହ୍ୟବୋଧ ହେଲା। ଏଣିକି ଅନେକ ଗୋଦାବରୀଶଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କଲେ। ତଥାପି କେତେକ ଆସିଲେ ଓ ଅନେକ ଆସିଲେନି ସଭା ସ୍ଥଳକୁ। ଏତିକିବେଳେ ଗୋଟାଏ ରାଜନୀତିକ ହଟଚମଟ ସୃଷ୍ଟି ହେଲା। ଏହାପୂର୍ବରୁ ଗୋପବନ୍ଧୁ କଲିକତାଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ସ୍ୱତନ୍ତ୍ର ଅଧିବେଶନ (ସେପ୍ଟେମ୍ବର, ୧୯୨୦)ରେ ଯୋଗ ଦେଇଥିଲେ। ସେଠାରୁ ଫେରି ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଗଠନ କଲେ। ଏହାର ସଭାପତି ବି ହେଲେ। ଶେଷରେ ଉତ୍କଳ ସମ୍ମିଳନୀରୁ ଓହରି ଗଲେ। ତେଣେ ଭାରତରେ ବିରାଟ ରାଜନୀତିକ ଭୂକମ୍ପଟେ ସୃଷ୍ଟି ହେଲା। ଭାରତୀୟ ଜାତୀୟ କଂଗ୍ରେସ ଅସହଯୋଗ ଆନ୍ଦୋଳନ (୧୯୨୦–୨୧) ଆରମ୍ଭ କଲା। ଗୋପବନ୍ଧୁ ଏଥିରେ ଝାସ ଦେଲେ। ସତ୍ୟବାଦୀ ବନବିଦ୍ୟାଳୟ ଆଗରୁ ତ ପର ହୋଇଯାଇଥିଲା, ଏବେ ଉତ୍କଳ ସମ୍ମିଳନୀ ଗୋପବନ୍ଧୁଙ୍କ ପାଇଁ ଅଲୋଡ଼ା। ଏ ପ୍ରକାର ପରିବର୍ତ୍ତିତ ନିଷ୍ପତ୍ତି ଓଡ଼ିଶାର ଭାଗ୍ୟକୁ କିଛି ପରିମାଣରେ ବିଡ଼ମ୍ବିତ କରିଦେଲା। ଏହାର ମୂକସାକ୍ଷୀ ହିଁ କାଳ ମହାକାଳ।

ଗୋପବନ୍ଧୁ ଦାସ ପୁନଃ ଚକ୍ରଧରପୁର ଆସିଲେ। ସେ ଅସହଯୋଗ ଦୀକ୍ଷାରେ ଏକ ପ୍ରକାର ତନ୍ମୟ ହୋଇ ଯାଇଥିଲେ। ତାଙ୍କ ପାଟିରେ ଖାଲି 'ମହାତ୍ମା ଗାନ୍ଧୀକି ଜୟ ଧ୍ୱନି'। ତାଙ୍କ ପରି





ବିଜ୍ଞ, ଦୂରଦର୍ଶୀ, ସଚ୍ଚୋଟ ରାଜନୀତିଜ୍ଞଙ୍କ ପାଟିରେ ଏ ଶବ୍ଦଗୁଡ଼ାକ ଭଲ ଶୁଭୁନଥିଲା– ଏକଥାକୁ ଗୋଦାବରୀଶ ମର୍ମେମର୍ମେ ବୁଝିଥିଲେ । 'ଅସହଯୋଗ' (୧୯୨୧)ର ୧୨ମାସ ମଧ୍ୟରେ ଦେଶ ସ୍ୱାଧୀନ ହୋଇଯିବ ବୋଲି ଗୋପବନ୍ଧୁଙ୍କ ଅଟଳ ବିଶ୍ୱାସ ଜନ୍ମିଲା । କିନ୍ତୁ ଗୋଦାବରୀଶଙ୍କର ଏକଥାରେ ସେତେ ବିଶ୍ୱାସ ନଥିଲା । ତାଙ୍କର ଜଣେ ଯୁବକ ସହକର୍ମୀ ଗୋପବନ୍ଧୁଙ୍କ କଥାରେ ସନ୍ଦେହ ପ୍ରକାଶ କଲେ । ଗୋପବନ୍ଧୁ କହିଲେ, ତୋର ଗାଲଚିପିଲେ ଦୁଧ ବାହାରିବ – ତୁ ସବୁ ବୁଝିଗଲୁ ଆଉ ଗାନ୍ଧୀ, ନ ବୁଝି ନଶୁଝି ବାହାରିଛି ? ଆରେ ସେ ସାକ୍ଷାତ୍ ଅବତାର । ଆଫଗାନିସ୍ଥାନ, କି ତୁର୍କୀ, କି ଋଷିଆ ସଙ୍ଗେ କ'ଣ କିଛି ବ୍ୟବସ୍ଥା ନକରି ଏତେବଡ଼ କାମରେ ହାତ ଦେଇଛି ? ଗୋପବନ୍ଧୁଙ୍କ ପରି ବହୁ ବୁଦ୍ଧିଜୀବୀଙ୍କର ଏଇ ଧାରଣା ହେଲା । ଗାନ୍ଧୀ ଅବତାର, ଗାନ୍ଧୀ ଦେବଦୂତ – ଏମିତି କଥାଟେ କ୍ରମେ ପ୍ରଚାରିତ ହେଲା । ଶେଷରେ ସାଧାରଣ ଜନତା କହିଲେ ଗାନ୍ଧୀ ଭଗବାନ । କେହିକେହି ମାନସିକ ପୂରଣ ପାଇଁ ନାନାଦି ନୈବେଦ୍ୟ ମନାସିଲେ । ଏକଥାର ସୁଯୋଗ ଉଠାଇଲେ କେତେକ ନକଲି ଚେଲା । ସେମାନେ ଅସହଯୋଗର ମିଛ ଖୋଳପା ପିନ୍ଧିଲେ । 'ତିଳକ ସ୍ୱରାଜ ପାଣ୍ଠି' ସଂଗ୍ରହ ନାମରେ ନିଜ ପକେଟ୍ ଭର୍ତ୍ତି କଲେ । ଗାନ୍ଧିଜୀଙ୍କ ନାଁରେ କଳଙ୍କ ଲଗାଇଲେ ।

ଗୋପବନ୍ଧୁଙ୍କର ବାରମ୍ବାର ନିଷ୍ପତ୍ତି ପରିବର୍ତ୍ତନ 'ସତ୍ୟବାଦୀ ବନ ବିଦ୍ୟାଳୟ'ର ବଡ଼ କ୍ଷତିଟାଏ କରିଥିଲା । ଏବେ ସିଂହଭୂମିରେ ସେଇ କଥା । ସେ ଚକ୍ରଧରପୁର ଆସିଲେ । ଗୋଦାବରୀଶଙ୍କୁ ସ୍କୁଲ୍ ଭାଙ୍ଗି ଦେବାକୁ କହିଲେ । ଅସହଯୋଗ ଆନ୍ଦୋଳନରେ ଯୋଗଦେବାକୁ ମଧ୍ୟ ପରାମର୍ଶ ଦେଲେ । ସେତେବେଳେ ଗୋଦାବାରୀଶ ଗୋପବନ୍ଧୁଙ୍କୁ ନିଜ ଆଦର୍ଶ ଭାବେ ଧରି ନେଇଥିଲେ । ତାଙ୍କ ସହ ଯୁକ୍ତିତର୍କର ପ୍ରଶ୍ନ ନଥିଲା । ସେ ନମ୍ରତାର ସହ କହିଲେ, ଆପଣ ଓଡ଼ିଶାରେ ଅସହଯୋଗର ପ୍ରବର୍ତ୍ତକ ହୁଅନ୍ତୁ ମାତ୍ର ସ୍କୁଲ୍ ଦୁଇଟାକୁ ଛାଡ଼ି ଦିଅନ୍ତୁ । ଅସହଯୋଗ ଆନ୍ଦୋଳନ ଚଳାଇଲେ ସିଂହଭୂମିର ଓଡ଼ିଆ ଜାଗରଣ ବାଧାପ୍ରାପ୍ତ ହେବ– ଏକଥା ମଧ୍ୟ କହିଲେ । ସତ୍ୟବାଦୀ ବିଦ୍ୟାଳୟ, ଚକ୍ରଧରପୁର ବିଦ୍ୟାଳୟ ଉଭୟ ଜାତୀୟ ବିଦ୍ୟାଳୟ ହେଉ କିନ୍ତୁ ଶିକ୍ଷକମାନେ କଂଗ୍ରେସ କାର୍ଯ୍ୟକୁ ଯାଆନ୍ତୁ – ଏ ପ୍ରକାର ଗୋଠଛଡ଼ା ହୋଇ ରହିବାକୁ ଗୋଦାବରୀଶ ନାପସନ୍ଦ କଲେ । ଶେଷରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ସତ୍ୟବାଦୀ ସ୍କୁଲ୍ ପରି ଚକ୍ରଧରପୁର ସ୍କୁଲର ଯେଉଁ ବିରାଟ ଭବିଷ୍ୟତଟି ଥିଲା, ତାହା ଖାଲି କଳ୍ପନାରେ ରହିଗଲା ।

ପୂର୍ବରୁ ଚକ୍ରଧରପୁର ସ୍କୁଲ ମଞ୍ଜୁରି ପାଇଁ ଦରଖାସ୍ତ ପଡ଼ିଥିଲା । ସେତେବେଳକୁ ପାଟଣା ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇସାରିଥିଲା । ଗୋଦାବରୀଶ ବିଶ୍ୱବିଦ୍ୟାଳୟ ପରିଷଦରର ସଦସ୍ୟ । ଛୋଟନାଗପୁର ବିଭାଗର ଶିକ୍ଷାବିଭାଗୀୟ ଇନିସ୍ପେକ୍ଟର 'ହୁଇଟ୍‌ମୋର' ସାହେବ । ବିଦ୍ୟାଳୟର ମଞ୍ଜୁରି ପ୍ରଦାନ ସମ୍ପର୍କରେ ତଦାରଖ ପାଇଁ ରାଞ୍ଚିରୁ ବାହାରିଲେ । ସାଇକେଲ୍‌ରେ ଦୀର୍ଘ ବାସ୍ତରୀ ମାଇଲ୍ ବାଟ ଅତିକ୍ରମ କରି ଚକ୍ରଧରପୁର ଡାକବଙ୍ଗଳାରେ ପହଞ୍ଚିଲେ । ଏକେ ତ ଶିରପୀଡ଼ା, ତା' ସାଙ୍ଗକୁ ପାଇଲେ ଗୋଦାବରୀଶଙ୍କଠାରୁ ଚିଠିଟି । ଏଥିରେ ଲେଖାଥିଲା– 'ଆଉ ସ୍କୁଲ୍ ଦେଖିବାକୁ ଆସିବା ଦରକାର ନାହିଁ' । ଚକ୍ରଧରପୁର ସ୍କୁଲକୁ ଜାତୀୟ ବିଦ୍ୟାଳୟରେ ପରିଣତ କରିବା ନିଷ୍ପତ୍ତି ହୋଇଥିଲା । ତାହା ଏପରି ଚିଠି ଲେଖିବାର କାରଣ ଥିଲା । ହୁଇଟ୍‌ମୋର ରାଗରେ ନିଆଁବାଣ ହୋଇଗଲେ । ଚିଠିପଢ଼ି କହିଲେ, ମୁଁ ଏ ଗୋଦାବରୀଶ ମିଶ୍ରର ଚିକ୍‌କଣ ମୁହଁ ଦେଖି ତାକୁ ଶାନ୍ତଶିଷ୍ଟ ଲୋକ ମଣିଥିଲି ମୁଁ ଦେଖୁଛି ଏଇଟା ତ ଗୋଟାଏ ନିଆଁ ହୁଳା । ଏଡ଼େ ସୁନ୍ଦର ଜିଲ୍ଲାଟାକୁ ଛାରଖାର କରିଦେବ ନା କ'ଣ ? ଶେଷରେ ଚକ୍ରଧରପୁର ସ୍କୁଲ୍ ଜାତୀୟ ବିଦ୍ୟାଳୟ ହେଲା । ଗୋଦାବରୀଶ ପାଟଣା ବିଶ୍ୱବିଦ୍ୟାଳୟ ସଦସ୍ୟ ପଦରୁ ଇସ୍ତଫା ଦେଲେ ।

ଅସହଯୋଗ ଆନ୍ଦୋଳନ ଚାଲିଲା । ଗାନ୍ଧୀ କହିଲେ ଇଂରେଜଙ୍କ ଅଧୀନରେ ଚାକିରି ଗୋଲାମଗିରି ଅନେକ ଉଚ୍ଚପଦସ୍ଥ କର୍ମଚାରୀ ସରକାରୀ ପଦପଦବୀ ଛାଡ଼ିଦେଲେ । ଏଇ ସମୟରେ ଗୋଦାବରୀଶଙ୍କ ପାଇଁ ଆସିଲା ନିଯୁକ୍ତି ପତ୍ରଟିଏ । ଚାଇଁବାସା ସେସନ୍‌ସ କୋର୍ଟରେ 'ଆସେସର' ନିଯୁକ୍ତି । ଗୋଦାବରୀଶ ସମନ ପାଇ ସାଙ୍ଗେସାଙ୍ଗେ ଫେରସ୍ତ କରିଦେଲେ । ସିଂହଭୂମିର ଡେପୁଟି କମିଶନର ସ୍କଟ ସାହେବ, ଭାରି ଜବରଦସ୍ତ ହାକିମ । ସେ କଥାଟାକୁ ଟକ୍‌କର ଉପରକୁ ନେଲେ । ସଫାସଫା କହିଲେ, ମୁଁ ଦେଖିବି ବଡ଼ଲାଟ୍ ବଡ଼ କି ଗାନ୍ଧୀ ବଡ଼ ? ସେ ଗୋଦାବରୀଶ ମିଶ୍ରଙ୍କୁ ଟାଣିଆଣି ଏଠି





ଇଜଲାସରେ ହାଜର କରାଇଲା ପର୍ଯ୍ୟନ୍ତ ମୋର କଷ୍ଟ। ସେ ନେବେ, ଗୋଦାବରୀଶ ଯିବେନି – ଏମିତି ପରସ୍ପର ଜିଦ୍‌ରେ ଅଟଳ। ସ୍କଟ୍ ସାହେବ ଜବରଦସ୍ତ ଧରିନେବାକୁ ଉପରୁ ଅନୁମତି ପାଇଲେନି। ବିହାର-ଓଡ଼ିଶା ପ୍ରାଦେଶିକ ସରକାର ଚମତ୍କାର ମତଟିଏ ଦେଲେ। ଗୋଦାବରୀଶ ନୁହନ୍ତି, ସ୍କଟ୍ ସାହେବଙ୍କ ଆଡୁ ସିଂହଭୂମିରେ ନିଆଁ ଲାଗିବାର ଉପକ୍ରମ ହେଉଛି। ସ୍କଟ୍ ସାହେବଙ୍କ ବଦଳି ହୋଇଗଲା। ଆଉ ଜଣେ ଗୋରା କମିଶନ୍‌ର ଆସିଲେ। ଧୀରସ୍ଥିର ଲୋକ। କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଏମ୍.ଏ. ଉପାଧିଧାରୀ। ସେ ଭାରତରେ ଜନ୍ମିତ। ତାଙ୍କ ପିତା ଯୁକ୍ତପ୍ରଦେଶ ଶିକ୍ଷାବିଭାଗର ଡିରେକ୍ଟର ଥିଲେ। ଦୀର୍ଘ କୋଡ଼ିଏ ବର୍ଷ ପରେ ପାଞ୍ଚବର୍ଷ ଓଡ଼ିଶାର ରାଜନୀତିକ ବାଗ ତାଙ୍କ ହାତରେ ପଡ଼ିଲା। ୧୯୨୧ରେ ସେ ସିଂହଭୂମିରେ ବାଗ ଛାଡ଼ିଦେଲେ। ଏହା ବୋଧହୁଏ ଇଂରେଜ ସରକାରଙ୍କ 'ଚାଣକ୍ୟନୀତି'। କେତେକାଳ ବାଗଛାଡ଼ି ଜଗିଲେ। ଲମ୍ବା ବାଟ ପାଇଲେ କୌଣସି ଖାଲ ପାଖେ ପହଞ୍ଚନ୍ତି। ଘାଉଁକିନା ମାଡ଼ିବସନ୍ତି। ସେବେକା ହାକିମ ହୁକୁମାଙ୍କ ଏ ଗୋଟେ କୂଟନୀତି।

ଗୋଦାବରୀଶ ଅସହଯୋଗ ଦୀକ୍ଷା ଗ୍ରହଣ କଲେ। ସଭାସମିତି ହେଲା, ବକ୍ତୃତା ଚାଲିଲା। ଲୋକେ ମାତିଲେ, ତାତିଲେ। ଗାନ୍ଧିଜୀଙ୍କ ଆଡ଼େ ଜନସମର୍ଥନ ବଢ଼ିଲା। ଅସହଯୋଗ ସହିତ ସେ ଜାତୀୟ ବନବିଦ୍ୟାଳୟ ଚଳାଇଲେ। ସେବେକା ପୁଲିସଙ୍କ ମତିଗତି ବଡ଼ ବିଚିତ୍ର। ଏକ ପ୍ରକାର ଇଂରେଜଙ୍କ ପୋଷାମନା ଭୃତ୍ୟ। ସତ୍ୟାଗ୍ରହୀଙ୍କ ଉପରେ ସେମାନଙ୍କ କଡ଼ା ନଜର। ସେମାନଙ୍କୁ ବଡ଼ ହଇରାଣ, ହରକତ କରୁଥିଲେ। ସତମିଛ କହି ବାନ୍ଧି ଆଣୁଥିଲେ। ଉତ୍କୋଚ ବି ନେଉଥିଲେ। ଯିଏ ଅଣ୍ଟାଗୁଞ୍ଜା ଦେଲା, ତା' ପାଇଁ ମାଡ଼ କୋହଳ। କିନ୍ତୁ ନେତାଙ୍କ କଥା ଅଲଗା। ବେଳେବେଳେ ପୁଲିସ ଦାରୋଗା ହାତରୁ ଟଙ୍କା ଦିଅନ୍ତି। ସଭା କରିବାକୁ ନେତାଙ୍କୁ ଉତ୍ସାହିତ କରୁଥାନ୍ତି। ଗୋଦାବରୀଶଙ୍କୁ ଥରେ ପଚିଶ ଟଙ୍କା ଦେଇ କହିଲେ, ଚାରିଆଡ଼େ ବୁଲି ସଭାସମିତି କରନ୍ତୁ, ଖବରକାଗଜରେ ବାହାରୁ। ଆମକୁ ରିପୋର୍ଟ କରିବାକୁ ସୁବିଧା ମିଳୁ। ପୁଲିସବାଲା ଇଂରେଜଙ୍କୁ ଭାର୍ଯ୍ୟାର ଭାଇ ଆଖ୍ୟାରେ ବର୍ଣ୍ଣନା କରନ୍ତି। ସେମାନେ ଦେଶଟାକୁ ଖାଲି ଲୁଟି ଖାଇଲେ। ଯାଆନ୍ତୁ, ଗଲେ ରକ୍ଷା। ଗାନ୍ଧିକି ନମସ୍କାର, ଆପଣଙ୍କୁ ନମସ୍କାର – ଏ ପ୍ରକାର କଥା ବି କହନ୍ତି। ସିଂହଭୂମିର ପୁଲିସ ଗୋଦାବରୀଶଙ୍କୁ ଭଲ ପାଉଥିଲେ। 'ତିଳକ ସ୍ୱରାଜ ପାଣ୍ଠି' ପାଇଁ ଚାନ୍ଦା ମାଗିଲେ, କୌଣସି ହାତ ଉଠେନାହିଁ। ଅଥଚ ଅଣ୍ଟାରେ ଟଙ୍କା ଥାଏ। ପ୍ରଥମେ ଟଙ୍କା ପଡ଼େ ବକ୍ତୃତା ଟିପିବାକୁ ଆସିଥିବା ପୁଲିସ ହାତରୁ। ତା' ପରେ ଟଣ୍‌ଟଣ୍ ହୋଇ ପଇସା ଖସେ ଚାରିଆଡୁ। ଥରେ ଡେପୁଟି କମିସନର 'ଲେଉସ୍' ସାହେବ ଗୋଦାବରୀଶଙ୍କୁ ଡାକିଲେ। ଗୋଦାବରୀଶଙ୍କ ଭାଷଣ ଟିପାଯାଇ ତାଙ୍କୁ ଦିଆଯାଇଥାଏ। ସେଥିରୁ ଛ'ଖଣ୍ଡ ବାଛି ପଢ଼ିବାକୁ ଦେଲେ। ଗୋଦାବରୀଶ ଜଣେ ବିଜ୍ଞ ଲୋକ, ଇଂରେଜ ସରକାରଙ୍କୁ ଏପରି ଗାଳିଗୁଲଜ କରିବାକୁ ସେ ବାରଣ କଲେ। କଡ଼ା ବକ୍ତୃତା ନ ଦେବା ପାଇଁ ପ୍ରସ୍ତାବ ମଧ୍ୟ ରଖିଲେ। ଅସହଯୋଗକାଳୀନ ଗୋଦାବରୀଶଙ୍କର ଏଇସବୁ ଅଭୁଲା ସ୍ମୃତି।

୧୯୨୧ ମସିହା ଚାଲିଗଲା। ଲୋକେ ଚାତକ ଭଳି ଚାହିଁଥାନ୍ତି 'ସ୍ୱରାଜ' ଆସିବ। କିନ୍ତୁ ମିଳିଲା ନାହିଁ। ବହୁ ଲୋକ ନିରାଶ ହେଲେ। ଏଇଟି ଥିଲା ସେମାନଙ୍କର ମୂର୍ଖତା। ଗାନ୍ଧିଜୀଙ୍କ ଭବିଷ୍ୟତ ବାଣୀରେ ଗୋଦାବରୀଶ ତିଳେମାତ୍ର ବିଶ୍ୱାସ କରିନଥିଲେ। ସେଇ କଥା ମଧ୍ୟ ସେ ଲେଖିଛନ୍ତି, ମହାତ୍ମା ଗାନ୍ଧୀ ଜ୍ୟୋତିଷ ନୁହନ୍ତି ଯେ ଭାରତର ଭାଗ୍ୟ ଗଣନା କରି କଥାଟା କହିଥିଲେ କିମ୍ବା ଖ୍ରୀଷ୍ଟିୟାନ୍-ଧର୍ମ-ଗ୍ରନ୍ଥ-କଳ୍ପିତ ଈଶ୍ୱର ନୁହନ୍ତି ଯେ ଭାରତ ସ୍ୱାଧୀନ ହେଉ କହିବା ମାତ୍ରେ ସ୍ୱାଧୀନତା ମିଳିଯାଆନ୍ତା। ତାଙ୍କ କଥା ଭିତରେ ଗୋଟିଏ ମସ୍ତବଡ଼ 'ଯଦ୍ୟପି' ଥିଲା। ଭାରତଲୋକେ ଯଦି ପୂର୍ଣ୍ଣମାତ୍ରାରେ ଅସହଯୋଗ ପାଳନ କରନ୍ତି, ତେବେ ୧୯୨୧ ମସିହା ଭିତରେ ସ୍ୱରାଜ ମିଳିବା ଅବଶ୍ୟମ୍ଭାବୀ। ମହାତ୍ମା ଗାନ୍ଧୀ ଜୋର୍ ଦେଲେ 'ଯଦ୍ୟପି' ଉପରେ। ଲୋକେ ଏଇଟାକୁ ଛାଡ଼ି ସ୍ୱରାଜକୁ ଜାବୁଡ଼ି ଧରିଲେ। ଫଳ ଯାହା ହେବାର କଥା ହେଲା। ଷାଠିଏ ମହଣ ଘିଅ ଆସିଲା ନା ରାଧା ନାଚିଲା। ସ୍ୱରାଜ ରହିଲା କଥା କଥାରେ।

ସିଂହଭୂମିରେ ମାତ୍ରାଧିକ ବ୍ୟବସାୟୀ। ସେମାନଙ୍କର ବି ସ୍ୱରାଜ ପ୍ରାପ୍ତି ନିଶା ବଢ଼ିଲା। ଦଶଦ୍ୱାର ରୁନ୍ଧି କୌଣସି ପ୍ରକାରେ ଲାଗିଲେ। ୧୯୨୨ ବେଳକୁ କେଁ ଟାଏ ପହଞ୍ଚିଲା। ଇଂରେଜ ଭାରି ଛକାଛକିରେ ଚଳିବା ଜନ୍ତୁ। ମହାତ୍ମାଙ୍କ ସ୍ୱରାଜ ମିଳିବା ଧମକରେ ଡରି ଯାଇଥିଲେ। ଅନେକ ଗୋରା ହାକିମଙ୍କୁ ରାତିରେ





ନିଦ ହେଉନଥିଲା । କେହିକେହି ନିଦରେ ଗାନ୍ଧୀଙ୍କ ନାଁ ଧରି ବିଳି ବିଳଉ ଥିଲେ । କିନ୍ତୁ ଅସହଯୋଗରେ ଇଂରେଜ ଶାସନ ବିଶେଷ ଦୋହଲିଲାନି । ୧୯୨୨କୁ ସେମାନେ ପୁନଃ କଠୋର ନୀତି ଗ୍ରହଣ କଲେ । ବିହାରୀ ବେପାରୀ ଗୋଦାବରୀଶଙ୍କ ଆଡୁ ମୁହଁ ଫେରାଇଲେ, ଏବେ ଓଡ଼ିଆଏ ଯାହା ସାଥିରେ, ଚତୁର୍ଦ୍ଦିଗ ବ୍ୟାପି ନୈରାଶ୍ୟ । ସମସ୍ତ ବିଫଳତା ସତ୍ତ୍ୱେ ଅସହଯୋଗ ମୁକ୍ତିଯୁଦ୍ଧର ମୂଳଦୁଆକୁ ସୁଦୃଢ଼ କଲା । ତଥାପି ଇଂରେଜ ସରକାର ଏ ଦେଶଟାକୁ ଭୋଗକଲେ ଆହୁରି ତେଇଶି ବର୍ଷ । ସେମାନଙ୍କ ବୋକାମି ବି କିଛି କମ୍ ନଥିଲା । ଅସହଯୋଗ ଆନ୍ଦୋଳନ ବିଫଳତା ତାଙ୍କୁ ଉତ୍ସାହିତ କଲା । ମୁକ୍ତିଯୁଦ୍ଧରେ ଗାନ୍ଧିଜୀ ଜିତିଲେ, ଇଂରେଜ ହଟିଲେ । ବୋଧହୁଏ, ବିଧାତା ଯେଡ଼ିକି ବାଉଁଶକୁ ସେଡ଼ିକି ପୋଲ ଖଞ୍ଜିଛନ୍ତି । ଶେଷରେ ଗୋଦାବରୀଶ ଚକ୍ରଧରପୁର ଛାଡ଼ିବାକୁ ବାଧ୍ୟ ହେଲେ ।

ସା/ପୋ: ପୁରୁଷୋତ୍ତମପୁର, କେନ୍ଦ୍ରାପଡ଼ା

# ସଦ୍‌ଭାବନା

**କୁନଲତା ତ୍ରିପାଠୀ**

ଏଇ ଦେଶ ଆମ ମାଆ
ଆମେ ତା' ସନ୍ତାନ
ରଖିବା ଆମେ ତାହାର ଟେକ
ତା'ମାନ ସମ୍ମାନ ।
ତା' ସେବା ହେଉ ଆମରି ଧର୍ମ
ତା' ପାଇଁ ସଦା କରିବା କର୍ମ
ଲୁହ ଲହୁରେ ଚରଣ ଧୋଇ
ଜାତୀୟ ଧ୍ୱଜା ଉଡାଇ ଦେଇ
ଜାତୀୟ ସଙ୍ଗୀତ ଆନନ୍ଦେ ଗାଇ
ଆଶିଷ ବାରି ଝରିବା ପାଇଁ
ବିନୀତେ କର ଅଞ୍ଜଳି ଯୋଡି
ଭାବେ କରୁଥିବା ଜଣାଣ ।
ଜାତୀୟ ସ୍ୱାର୍ଥ ଆମରି କାମ୍ୟ
ଆମେରେ ହିନ୍ଦୁ ମୁସଲମାନ
କିବା ବୌଦ୍ଧ, ଜୈନ, ଖ୍ରୀଷ୍ଟିୟାନ
ଆମେ ଭାରତୀୟ ଅଟୁ ମହାନ
ବିଭିନ୍ନତା ମଧ୍ୟେ ଆମରି ଏକତା
ପ୍ରତିଜ୍ଞା ରକ୍ଷା ତା' ଅଖଣ୍ଡତା
ଦରକାର ହେଲେ ତା' ସୁରକ୍ଷା ପାଇଁ
ପଛାଇବା ନାହିଁ ଦେବାକୁ
ଆମ ଏ ଜୀବନ ।
ତା' ଛତ୍ରଛାୟା ତଳେ ଆଶ୍ରୟ
ତା' ପାଣି, ପବନ ଆମରି ପ୍ରିୟ
ତା' ମଙ୍ଗଳ ବାଞ୍ଛା ସଦା ହିଁ ଧ୍ୟେୟ
ତା' ସଫଳତା ଆମରି ଲକ୍ଷ୍ୟ
ଶପଥ ଆମର ଏ ପୁଣ୍ୟ ଭୂମିକୁ
ସଦା ରଖିଥିବା ସ୍ୱାଧୀନ ।
ବିଶ୍ୱର କୋଣ ଅନୁକୋଣରେ
ତା' ମହାନତା ସ୍ୱର ଝଙ୍କାରେ
ଅହିଂସା ସତ୍ୟ ଭୟ ବର୍ଜନ
ତା' ପାଖେ ସର୍ବଧର୍ମ ସମାନ
ସିଦ୍ଧ, ବୁଦ୍ଧ, ସ୍କନ୍ଦ, ବିନାୟକ, ଆଲ୍ଲା, ଯୀଶୁ
ସବୁ ଧର୍ମ ଏଠି ହୁଏ ପାଳନ ।
ମନ୍ଦିର, ଗୀର୍ଜା, ମସ୍‌ଜିଦ୍, ଗୁରୁଦ୍ୱାର
ସର୍ବ ପ୍ରାର୍ଥନା କରି ଆଧାର
ଅଦ୍ୱିତୀୟ ସେଇ ଏକ ଈଶ୍ୱର
ସରବ ମଙ୍ଗଳ ବିଧାନ କରନ୍ତୁ
ସଦା ଭରି ସଦ୍ ଭାବନା
ପ୍ରତି ପ୍ରାଣେ ବିରାଜିତ ହେଉ
ଶାନ୍ତି ଓ ପ୍ରେମ ।

ଦୁର୍ନୀତି ନିବାରଣ ନିର୍ଦ୍ଦେଶାଳୟ, କଟକ-୧




# ପାଇକ ବିଦ୍ରୋହର ଦ୍ୱିଶତବାର୍ଷିକୀ ପାଳନ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଅଭିଭାଷଣ

ବ୍ରିଟିଶ୍ ଶାସନ ବିରୁଦ୍ଧରେ ଖୋର୍ଦ୍ଧାରେ ସଂଗଠିତ ପାଇକ ବିଦ୍ରୋହର ଦ୍ୱିଶତବାର୍ଷିକୀ ପାଳନ ଅବସରରେ ଆପଣମାନଙ୍କ ଗହଣରେ ଉପସ୍ଥିତ ରହି ମୁଁ ଗର୍ବ ଅନୁଭବ କରୁଛି । ଏହା ଏକ ଖୁସିର ବିଷୟ ଯେ, ଏଥିରେ ଯୋଗ ଦେବା ନିମନ୍ତେ ଭାରତର ମାନ୍ୟବର ରାଷ୍ଟ୍ରପତି ଶ୍ରୀ ପ୍ରଣବ ମୁଖାର୍ଜୀ ମହୋଦୟ ତାଙ୍କର ସଦୟ ସ୍ୱୀକୃତି ପ୍ରଦାନ କରିଛନ୍ତି । ମାନ୍ୟବର ଶ୍ରୀ ମୁଖାର୍ଜୀଙ୍କର ଓଡିଶା ଏବଂ ଏହାର ଜନସାଧାରଣଙ୍କ ସହ ଏକ ଭାବଗତ ସଂପର୍କ ରହିଛି । ତାଙ୍କର ରାଷ୍ଟ୍ରପତିତ୍ୱ କାଳରେ ସେ ଅନେକ ଥର ଓଡିଶା ଆସି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିଛନ୍ତି । ତାଙ୍କର ସଦୟ ଉପସ୍ଥିତି ଏହି ଉତ୍ସବକୁ ଆହୁରି ଅଧିକ ଆକର୍ଷଣୀୟ କରିପାରିଛି ।

ଖୁସିର କଥା, ଆଜିର ଏହି କାର୍ଯ୍ୟକ୍ରମରେ ଦିଲ୍ଲୀରେ ରହୁଥିବା ଓଡ଼ିଆ ବନ୍ଧୁମାନଙ୍କ ସହିତ ଓଡ଼ିଶାରୁ ଆସିଥିବା ପାଇକ ଭାଇମାନେ ବହୁ ସଂଖ୍ୟାରେ ଯୋଗ ଦେଇଛନ୍ତି । ସମସ୍ତଙ୍କୁ ମୋର ନମସ୍କାର ଓ ଅଭିନନ୍ଦନ । ଏହି ପବିତ୍ର ଅବସରରେ ବକ୍ସି ଜଗବନ୍ଧୁ, ଜୟୀ ରାଜଗୁରୁ ଏବଂ ଆମର ବୀର ପାଇକମାନଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଆମର ପାଇକମାନଙ୍କର ସାହସ, ବୀରତ୍ୱ ଓ ଯୁଦ୍ଧ କୌଶଳର ତୁଳନା ନାହିଁ । ୧୮୧୭ରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ପାଇକ ବିଦ୍ରୋହ ଭାରତ ଇତିହାସର ଏକ ସୁବର୍ଣ୍ଣ ଅଧ୍ୟାୟ । ପାଇକ ବିଦ୍ରୋହ ଥିଲା ଓଡ଼ିଆ ଜାତିର ସ୍ୱାଭିମାନର ସ୍ୱର । ଏ ସଂଗ୍ରାମ ଓଡ଼ିଆ ଜାତୀୟତାବାଦ ଓ ଐକ୍ୟର ବାର୍ତ୍ତା ଦେଇଥିଲା । ପାଇକ ବିଦ୍ରୋହ ଏକ ଗଣ ଜାଗରଣରେ ପରିଣତ ହୋଇଥିଲା । ଏହି ସଂଗ୍ରାମରେ ପାଇକମାନଙ୍କ ସହିତ ଆଦିବାସୀ, ଚାଷୀ, ଜମିଦାରମାନେ ସାମିଲ ହୋଇ ଏହାକୁ ମଜବୁତ କରିଥିଲେ । ସାମରିକ ଶକ୍ତି କେବେହେଲେ ଗୋଟିଏ ସ୍ୱାଭିମାନୀ ଜାତିର ଚେତନାକୁ ପରାଜିତ କରିପାରିବ ନାହିଁ । ଓଡ଼ିଆ ଜାତିର ସଂଗ୍ରାମୀ ଓ ସ୍ୱାଭିମାନୀ ଚେତନା ଆଜି ମଧ୍ୟ ଜାଗ୍ରତ ରହିଛି ଏବଂ ତା'ର ହକ୍ ପାଇଁ ଲଢେଇ ଜାରି ରଖିଛି ।

ପାଇକ ବିଦ୍ରୋହ ଭାବେ ଜଣାଶୁଣା ଏହି ପାଇକ ବିପ୍ଳବ ୧୮୫୭ ସିପାହୀ ବିଦ୍ରୋହର ୪୦ ବର୍ଷ ପୂର୍ବରୁ ସଂଗଠିତ ହୋଇଥିଲା । ଜାତି, ବର୍ଣ୍ଣ ଓ ବର୍ଗଭିତ୍ତିକ ପ୍ରତିବନ୍ଧକ ସୃଷ୍ଟି କରିଥିବା ବ୍ରିଟିଶ୍ ଇଷ୍ଟ ଇଣ୍ଡିଆ କଂପାନୀର ଦମନମୂଳକ ଶାସନ ବିରୁଦ୍ଧରେ ବାସ୍ତବିକ୍ ଏହା ଏକ ବ୍ୟାପକ, ସୁସଂଗଠିତ ତଥା ଗଣ ଆନ୍ଦୋଳନ ଥିଲା । ପ୍ରତିରୋଧାତ୍ମକ ଏକ ଗଣ ଆନ୍ଦୋଳନକୁ



ରୂପ ଦେବାରେ ଏହା ଲକ୍ଷ୍ୟଭିତ୍ତିକ ପ୍ରମୁଖ ଭୂମିକା ନିର୍ବାହ କରିଥିଲା ଯାହା କି, ପରବର୍ତ୍ତୀ ସମୟରେ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ପରିବର୍ତ୍ତିତ ହୋଇଥିଲା । ଏହାର ପ୍ରକୃତିଗତ ତଥା ଚାରିତ୍ରିକ ବୈଶିଷ୍ଟ୍ୟ ଯୋଗୁଁ ବାସ୍ତବ ପକ୍ଷେ ଏହା ପ୍ରଥମ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଥିଲା । ଏପରି ଐତିହାସିକ ସଂଗ୍ରାମର ଗୁରୁତ୍ୱ ଉପଲବ୍ଧି କରି ଓଡିଶା ସରକାରଙ୍କ କ୍ୟାବିନେଟ୍ ଏହି ପାଇକ ବିଦ୍ରୋହକୁ ପ୍ରଥମ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଭାବେ ସ୍ୱୀକୃତି ଦେବା ନିମନ୍ତେ କେନ୍ଦ୍ର ସରକାରଙ୍କୁ ସୁପାରିଶ୍ କରିଛନ୍ତି । ମୋର ବିଶ୍ୱାସ ଯେ, ଭାରତ ସରକାର ଏହି ଐତିହାସିକ ଘଟଣାକୁ ସ୍ୱୀକୃତି ପ୍ରଦାନ କରିବା ସହ ଭାରତ ଇତିହାସରେ ଏହାକୁ ଉପଯୁକ୍ତ ସ୍ଥାନ ଦେବେ । ମୁଁ ଭାବୁଛି ଯେ, ଏହା ପାଇକ ବିଦ୍ରୋହର ଦୁଇ ଶହ ବର୍ଷ ପୂର୍ତ୍ତି ପାଳନ ପ୍ରତି ଯଥାର୍ଥ ସମ୍ମାନ ହେବ ।

ଏହି ଦ୍ୱିଶତବାର୍ଷିକୀ ବର୍ଷ ପାଳନ ପରିପ୍ରେକ୍ଷୀରେ ରାଜ୍ୟ ସରକାର ଏହାର ପ୍ରଚାର ପ୍ରସାର ଉଦ୍ଦେଶ୍ୟରେ ବ୍ୟାପକ ପଦକ୍ଷେପ ହାତକୁ ନେଇଛନ୍ତି । ୧୮୧୭ ମସିହାରେ ସଂଗଠିତ ପାଇକ ବିଦ୍ରୋହର ନାୟକ ବକ୍ସି ଜଗବନ୍ଧୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ଓଡିଶା ସରକାର ଚଳିତ ଆର୍ଥିକ ବର୍ଷରେ ୧ ହଜାର କୋଟି ଟଙ୍କା ବିନିଯୋଗରେ 'ବସୁଧା' ନାମକ ଏକ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି, ଯାହାକି ଉଭୟ ସହରାଞ୍ଚଳ ଓ ଗ୍ରାମାଞ୍ଚଳରେ ପାନୀୟ ଜଳ ଯୋଗାଣ ନିମନ୍ତେ ଉଦ୍ଦିଷ୍ଟ । ଓଡିଶା ରାଜ୍ୟ ସଂଗ୍ରହାଳୟଠାରେ ଶବ୍ଦ ଓ ଆଲୋକ ବ୍ୟବସ୍ଥା ସହ ଏକ ପାଇକ ଗ୍ୟାଲେରୀ ପ୍ରତିଷ୍ଠା ହୋଇଛି । ରାଜ୍ୟ ସରକାର ପାଇକ ବିଦ୍ରୋହ ସଂପର୍କରେ ଏକ ତଥ୍ୟଭିତ୍ତିକ ପ୍ରକାଶନ ସହ ବିଭିନ୍ନ ପ୍ରଦର୍ଶନୀ ଏବଂ କର୍ମଶାଳା ଆୟୋଜନ କରିଛନ୍ତି । ଏହାର ଐତିହାସିକ ଗୁରୁତ୍ୱର ପ୍ରଚାରପ୍ରସାର ନିମନ୍ତେ ନୂଆଦିଲ୍ଲୀଠାରେ ପାଇକ ବିଦ୍ରୋହ ଉପରେ ଏକ ଜାତୀୟ ଆଲୋଚନାଚକ୍ର ଆୟୋଜନ କରିବା ନିମନ୍ତେ ଏକ ପ୍ରସ୍ତାବ ମଧ୍ୟ ରହିଛି । ଆମର ଏହି ବୀର ପାଇକମାନଙ୍କ ବଳିଦାନ ପ୍ରତି ସମ୍ମାନ ପ୍ରଦର୍ଶନ ପୂର୍ବକ ରାଜ୍ୟ ସରକାର 'ପାଇକ ଅମର ଜ୍ୟୋତି ସ୍ତମ୍ଭ' ପ୍ରତିଷ୍ଠା କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

ଏହି ପାଇକ ବିଦ୍ରୋହର ମୁଖ୍ୟ ନାୟକ ବକ୍ସି ଜଗବନ୍ଧୁଙ୍କ ନାମରେ ଖୋର୍ଦ୍ଧାରୋଡ୍‌ଠାରୁ ସମ୍ବଲପୁର ଦେଇ ମୁମ୍ବାଇ ପର୍ଯ୍ୟନ୍ତ ହମ୍‌ସଫର୍ ଭଳି ଏକ ନୂତନ ବାତାନୁକୂଳ ଏକ୍ସପ୍ରେସ୍ ଟ୍ରେନ୍ ଚଳାଚଳ ପାଇଁ ପୂର୍ବରୁ ମୁଁ ଭାରତ ସରକାରଙ୍କୁ ଅନୁରୋଧ କରିଥିଲି । ମୁଁ ଆଶା କରେ ଯେ, ସଂଗଠିତ ଏହି ଐତିହାସିକ ଘଟଣାର ମହାନ୍ ନାୟକଙ୍କ ସମ୍ମାନାର୍ଥେ କେନ୍ଦ୍ର ସରକାର ଉକ୍ତ ଦାବୀକୁ ଅଗ୍ରାଧିକାରଭିତ୍ତିରେ ବିଚାର କରିବେ । ଏତଦ୍‌ବ୍ୟତୀତ, ଏହି ଐତିହାସିକ ପାଇକ ବିଦ୍ରୋହର ଦ୍ୱିଶତବାର୍ଷିକୀ ବର୍ଷ ପାଳନ ଉପଲକ୍ଷେ ଏକ ସ୍ମାରକୀ ଡାକ ଟିକଟ ପ୍ରଚଳନ କରିବା ପାଇଁ ମୁଁ ଭାରତ ସରକାରଙ୍କୁ ମଧ୍ୟ ଅନୁରୋଧ କରୁଛି ।

ଆଜିର ଏହି ସୁନ୍ଦର କାର୍ଯ୍ୟକ୍ରମ ପାଇଁ ମୁଁ ଭାରତ ସରକାରଙ୍କ ସଂସ୍କୃତି ବିଭାଗ ଓ ମାନ୍ୟବର ମନ୍ତ୍ରୀ ଶ୍ରୀ ମହେଶ ଶର୍ମାଙ୍କୁ ଧନ୍ୟବାଦ ଜଣାଉଛି । ମୁଁ ଆଶା କରୁଛି, ପାଇକ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ମାନ୍ୟତା ଦେବା ପାଇଁ ଓଡ଼ିଶାବାସୀଙ୍କ ଦାବିକୁ କେନ୍ଦ୍ର ସରକାର ଗୁରୁତ୍ୱର ସହ ଗ୍ରହଣ କରିବେ ।

ବନ୍ଦେ ଉତ୍କଳ ଜନନୀ ।

